# ପୁରାତନ କଳିଙ୍ଗର ସାମାଜିକ ଇତିବୃତ୍ତ

ଡକ୍ଟର ବେଣୀମାଧବ ପାଢ଼ୀ

ଗ୍ରନ୍ଥମନ୍ଦିର

ପ୍ରକାଶକ :
ମନୋଜ କୁମାର ମହାପାତ୍ର
ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨

ମୁଦ୍ରକ :
ଗ୍ରାମସେବକ ସମବାୟ ପ୍ରକାଶନ ଲି:, କଟକ-୨

ପ୍ରଥମ ମୁଦ୍ରଣ : ଅଗଷ୍ଟ, ୧୯୯୨

ମୂଲ୍ୟ : ଟ ୪୫-୦୦
ସାଧା ବନ୍ଧେଇ : ଟ ୪୦-୦୦

# ଆଦ୍ୟ-କଥନିକା

ସ୍ୱସ୍ତି ସ୍ୱସ୍ତି ଶ୍ରୀଜଗନ୍ନାଥ-
ସ୍ତ୍ରିକଲିଙ୍ଗ ପତେ ର୍ଗତଃ ।

ସ୍ୱଜାଧିସ୍ୱଜ ଶ୍ରୀ ଦେବ
ଦେହି ଶ୍ରୀ ବିଜୟଂ ସଦା ॥

ମୁଁ ଐତିହାସିକ ନୁହେଁ କିମ୍ବା ଏ ଇତିହାସ ନୁହେଁ । ଏହା ଏକ ଇତିବୃତ୍ତ । ବିଭିନ୍ନ ଗ୍ରନ୍ଥାବଳୀରୁ କଳିଙ୍ଗର ପ୍ରାକ୍ତନ ସାମାଜିକ ଓ ସାଂସ୍କୃତିକ କାର୍ଯ୍ୟକଳାପ ବିଷୟରେ ଯେଉଁ କ୍ଷୀଣ ସଙ୍କେତମାନ ମିଳେ ତା'ର ସାହାଯ୍ୟରେ ଏ ଗ୍ରନ୍ଥ ରଚିତ । ଏ ଯାବତ୍ କଳିଙ୍ଗ-ସମ୍ବନ୍ଧୀ ଯେତେ ଇତିହାସ ଲେଖାଯାଇଛି ତାହା ପ୍ରାଚୀନ କଳିଙ୍ଗର ସ୍ୱଜନୈତିକ ନତୁବା ଧାର୍ମିକ ଇତିହାସ ମାତ୍ର । ସେଥିରେ ସମାଜ ଓ ସଂସ୍କୃତିର ସୂଚନା କ୍ୱଚିତ୍ ଦେଖିବାକୁ ମିଳେ । କିନ୍ତୁ ବାସ୍ତବିକ ଦୃଷ୍ଟିରୁ ବିଚାରକଲେ ଅନୁଭୂତ ହୁଏ, ତତ୍କାଳ କଳିଙ୍ଗର ସାମାଜିକ ଓ ସାଂସ୍କୃତିକ ଐତିହ୍ୟ ଅତି ଶୃଙ୍ଖଳିତ ଓ ଉଚ୍ଚକୋଟୀର ଥିଲା—ଯଦିଚ ସେ ସମ୍ବନ୍ଧରେ ପ୍ରତ୍ୟକ୍ଷ ପ୍ରମାଣ ମିଳେ ନାହିଁ । ଇତିହାସ ପାଇଁ ପ୍ରତ୍ୟକ୍ଷ ପ୍ରମାଣର ଆବଶ୍ୟକତା ଅନସ୍ୱୀକାର୍ଯ୍ୟ । ଏ ସ୍ଥଳରେ କିନ୍ତୁ ତାହାର ଅଭାବ ବିଶେଷ ଅନୁଭୂତ, ତେଣୁ ଏହାକୁ ଇତିବୃତ୍ତ ଆଖ୍ୟା ଦିଆଯାଇଅଛି । ଇତିବୃତ୍ତ ସକାଶେ ସର୍ବତ୍ର ପ୍ରତ୍ୟକ୍ଷ ପ୍ରମାଣ ଅନିବାର୍ଯ୍ୟ ନୁହେଁ । ପ୍ରତ୍ୟକ୍ଷ, ଅନୁମାନ ଓ ଆପ୍ତବାକ୍ୟ ମଧ୍ୟରୁ ଯେ କୌଣସି ପ୍ରମାଣ ବଳରେ ତାହା ଲେଖାଯାଇପାରେ । ଅନୁମାନରେ ମଧ୍ୟ 'ହେତୁ' ପ୍ରତ୍ୟକ୍ଷ ହେବା ଆବଶ୍ୟକ । ଇନ୍ଦ୍ରିୟଗ୍ରାହ୍ୟ ହେତୁ ନଥିଲେ ଅନୁମାନ ଐକାନ୍ତିକ ହୁଏ ନାହିଁ । ଏଣୁ ପ୍ରତ୍ୟକ୍ଷ ହେତୁ ସୁଲଭ ନହେବା ସ୍ଥଳେ ଶାବ୍ଦବୋଧ ବା ଆପ୍ତବାକ୍ୟ ପ୍ରମାଣରୂପେ ଗୃହୀତ ହୋଇଥାଏ । ଯେଉଁଠାରେ ଉକ୍ତ ତିନୋଟିଯାକ ପ୍ରମାଣର ଅଭାବ ଅଥଚ ବସ୍ତୁ-ସତ୍ତା ସ୍ପଷ୍ଟ ଅନୁଭୂତ, ସେପରି ସ୍ଥଳେ ଅବରୋହ କ୍ରମେ ତାହା ପ୍ରମାଣସିଦ୍ଧ କରିବାକୁ ପଡ଼େ । ଅର୍ଥାତ୍ ବୀଜରୁ ବୃକ୍ଷର ଉତ୍ପତ୍ତି କ୍ରମ ଦର୍ଶାଇବା ପରିବର୍ତ୍ତେ ବୃକ୍ଷରୁ ବୀଜର ସନ୍ଧାନ ନେବାକୁ ହୁଏ । ଏହାର ନାଁ ଅବରୂଢ଼ ପ୍ରମାଣ ବା ଅଧ୍ୟାହାର । ଯଦି ଚ ଏହା ଶାସ୍ତ୍ରୀୟ ପ୍ରମାଣ ରୂପେ ସ୍ୱୀକୃତ ନୁହେଁ , ତଥାପି ଲୁପ୍ତ ତଥ୍ୟର ଅନୁସନ୍ଧାନ କାର୍ଯ୍ୟରେ ଏହାର ଗୁରୁତ୍ୱ କମ୍ ଉପଲବ୍ଧ ହୁଏନାହିଁ । ପ୍ରସ୍ତୁତ ପ୍ରବନ୍ଧର ବହୁ ସ୍ଥଳରେ ଏହାର ଆଶ୍ରୟ ନେବାକୁ ପଡ଼ିଛି । କାରଣ, ବୈଦାନ୍ତିକ ମାୟା ଦ୍ୱାରା ଜୀବ ଆଚ୍ଛାଦିତ ଥିଲା ପରି ଯୁକ୍ତପୂର୍ବ କଳିଙ୍ଗର ସାମାଜିକ ସଂସ୍କୃତି କାଳର ଅଭେଦ୍ୟ ଆବରଣ

ମଧ୍ୟରେ ଲୁକ୍‌କାୟିତ ହୋଇ ରହିଛି । ଏହା ଯଦି ଚ ଅନୁଭବଗମ୍ୟ ତଥାପି ପ୍ରତ୍ୟକ୍ଷୀଭୂତ ନୁହେଁ । ଏଣୁ କଳିଙ୍ଗର ପାଣି-ପବନରେ ନ ବଢ଼ିଥିଲେ ତା'ର ଆତ୍ମାକୁ ଚହ୍ନି ଚହ୍ନାଇବା ସହଜସାଧ୍ୟ ନୁହେଁ । ଅଥଚ ସେହି ଅସାଧ୍ୟ କର୍ମରେ ମୁଁ ହସ୍ତକ୍ଷେପ କରିବାର ସାହସ କରିଛି । କେତେଦୂର ସଫଳ ହୋଇଛି ଜାଣେନାହିଁ; କିନ୍ତୁ ଯଥାଶକ୍ତି ଉଦ୍ୟମରେ ଅବହେଳା କରି ନାହିଁ । ସବୁ ନିଷ୍ପତ୍ତି ଯେ ତ୍ରୁଟିଶୂନ୍ୟ ଏ କଥା କହିବାର ଦୁଃସାହସ ମୋର ନାହିଁ । କିନ୍ତୁ ଆଶା, କାଳାନ୍ତରେ ବିଧିବଦ୍ଧ ଗବେଷଣା ଦ୍ୱାରା ତ୍ରୁଟିମାନ ସଂଶୋଧିତହୋଇ ଅଧିକ ଯୁକ୍ତିଯୁକ୍ତ ପ୍ରମାଣ ବଳରେ କଳିଙ୍ଗର ବାସ୍ତବରୂପ ଲୋକଲୋଚନକୁ ଆସିଗଲେ ସ୍ୱପ୍ନ ସାର୍ଥକ ହେଲା ମନେକରିବି । କାରଣ—

"ଗଚ୍ଛତଃ ସ୍ଖଳନଂ କ୍ୱାପି ଭବତ୍ୟେବ ପ୍ରମାଦତଃ,
ହସନ୍ତି ଦୁର୍ଜନାସ୍ତତ୍ର ସମାଦଧତି ସଜ୍ଜନାଃ" ।

ବେଣୀମାଧବ ପାଢ଼ୀ

# ବିଷୟ ସୂଚୀ

# ପ୍ରଥମ ପ୍ରକାଶ :
# କଳିଙ୍ଗ ସମ୍ବନ୍ଧୀ ପ୍ରାଚୀନ ବିବରଣୀ

ଏହିର ପୃଥିବୀ ପାଞ୍ଚଟି ମହାଦେଶରେ ବିଭକ୍ତ ହେଲାପରି ପ୍ରାଚୀନ ଯୁଗରେ ଏହାକୁ ସାତଭାଗରେ ବିଭକ୍ତ କରାଯାଇଥିଲା ଏବଂ ପ୍ରତ୍ୟେକ ଗୋଟିଏ ଗୋଟିଏ ଦ୍ୱୀପବୋଲି ଅଭିହିତ ହେଉଥିଲା । ତେଣୁ ଏହାକୁ 'ସପ୍ତଦ୍ୱୀପା ମହୀ' କୁହାଯାଉଥିଲା । ଦ୍ୱୀପର ଅଞ୍ଚଳ ବିଶେଷକୁ ନେଇ 'ବର୍ଷ'ର କଳ୍ପନା କରାହୋଇଥିଲା । ପୁରାଣମାନଙ୍କରେ କିନ୍ନର ବର୍ଷ, ହରିବର୍ଷ,ରମ୍ୟକ ବର୍ଷ,ଇଳାବୃତ ବର୍ଷ, ଭାରତବର୍ଷ ପ୍ରଭୃତି ବିଭିନ୍ନ ବର୍ଷର ନାମ ଦେଖିବାକୁ ମିଳେ । ସେ ଅନୁସାରେ ଭାରତବର୍ଷ ହେଉଛି ଜମ୍ବୁଦ୍ୱୀପ ମଧ୍ୟସ୍ଥ ଏକ ଜନବସତିପୂର୍ଣ୍ଣ ବିରାଟ ଭୂଖଣ୍ଡ । ଏହା କେତେକ ଗ୍ରନ୍ଥରେ 'ଶକଟାକାର' ବୋଲି ବର୍ଣ୍ଣିତ ହେଲାବେଳେ ଆଉ କେତେକରେ 'ଧନୁରାକାର' । କିନ୍ତୁ ପ୍ରକୃତପକ୍ଷେ ଏହା ଶକଟାକାର ଅଟେ । ଏହାର ଦକ୍ଷିଣଭାଗ କ୍ରମେ ସୂକ୍ଷ୍ମ ହେଲାବେଳେ ଉତ୍ତରଭାଗ କ୍ରମବିସ୍ତୃତ । ଏହାର ପୂର୍ବ, ଦକ୍ଷିଣ ଓ ପଶ୍ଚିମରେ ମହାସାଗର ଏବଂ ଉତ୍ତର ଦିଗରେ ବିଶାଳ ହିମାଳୟ ପର୍ବତମାଳା ସୀମାରୂପେ ଅବସ୍ଥିତ ।

ପ୍ରାଚୀନ ପୁରାଣ ଓ ଶାସ୍ତ୍ରମାନଙ୍କରେ ଏଥିରେ ନାନାବିଧ ରାଜ୍ୟ ରହିଥିବା ବର୍ଣ୍ଣନା ପରିଦୃଷ୍ଟ ହୁଏ । ମହାଭାରତ, ବାୟୁ ପୁରାଣ, ବିଷ୍ଣୁପୁରାଣ, ଅଗ୍ନି ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ଗରୁଡ଼ ପୁରାଣ ପ୍ରଭୃତିରେ ବିଭିନ୍ନ ପ୍ରକାର ବିଭାଗ ତତ୍କାଳୀନ ଭାରତବର୍ଷରେ ବିଦ୍ୟମାନ ଥିବା ବିସ୍ତୃତ ଭାବେ ବର୍ଣ୍ଣିତ । ପାଣିନିଙ୍କ 'ଅଷ୍ଟାଧ୍ୟାୟୀ ସୂତ୍ର' ଓ ବରାହମିହିରଙ୍କ 'ବୃହତ୍ ସଂହିତା' ଗ୍ରନ୍ଥରେ ମଧ୍ୟ ଭାରତବର୍ଷସ୍ଥ ବିଭିନ୍ନ ରାଜ୍ୟ, ନଦନଦୀ ଓ ପର୍ବତାଦିର ନାମୋଲ୍ଲେଖ ରହିଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ତେସ୍ତରିଟି ରାଜ୍ୟର ନାମ ଉଲ୍ଲିଖିତ । ସେଗୁଡ଼ିକ ବିଭିନ୍ନ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ଅବଶ୍ୟ ପୁରାଣମାନଙ୍କରେ ବର୍ଣ୍ଣିତ ଦୈଶିକ ନାମକରଣରେ କେତେକ ଆଖିଦୃଶିଆ ପାର୍ଥକ୍ୟ ପରିଲକ୍ଷିତ ହେଲେ ସୁଦ୍ଧା ଏମିତି ବହୁ ରାଜ୍ୟ ରହିଛି ଯାହା ସବୁ ପୁରାଣ, ଶାସ୍ତ୍ର ଓ ଅନ୍ୟାନ୍ୟ ଭାଷାର ଗ୍ରନ୍ଥାବଳୀ ଭିତରେ ସମାନ ଭାବେ ସ୍ଥାନ ପାଇଆସିଛି । ସେ ମଧ୍ୟରୁ 'କଳିଙ୍ଗ' ନାମଟି ଅନ୍ୟତମ ।

'କଳିଙ୍ଗ' ଭାରତର ଅଗ୍ନି କୋଣରେ ଅବସ୍ଥିତ । ଏହାର ସ୍ଥଳଭାଗ ପ୍ରାୟ ଦୁଇଲକ୍ଷ ବର୍ଗ କି.ମି. । ସେ ମଧ୍ୟରେ ଲକ୍ଷେ ବର୍ଗ କି.ମି. ଅରଣ୍ୟାନୀ ଓ ପାଞ୍ଚଶ ବର୍ଗ କି.ମି. ସାମୁଦ୍ରିକ

ବେଳାଭୂମି । ଏହା ବଙ୍ଗ, ମଗଧ, କୋଶଳ ଓ ଦକ୍ଷିଣାପଥ ମଧ୍ୟରେ ଏକ ବିଶାଳ ଭୂଖଣ୍ଡ- ଯାହାର ପୂର୍ବ ଓ ଦକ୍ଷିଣଭାଗ ସମୁଦ୍ରକୁ ସ୍ପର୍ଶ କରି ରହିଛି । ଏହା କେତେବେଳେ ଓଡ୍ର, କେତେବେଳେ ଉତ୍କଳ, ପୁଣି କେତେବେଳେ ତୋଷଳୀ ନାମରେ ନାମିତ ହୋଇ ଆସିଥିଲା । ପୁଣି ମଧ୍ୟ କେତେକ ସମୟରେ ଏହାର କିଛି ଅଂଶ କଳିଙ୍ଗ ନାମରେ ଅଭିହିତ ହେଲାବେଳେ ଆଉ କିଛି ଅଂଶ ଉତ୍କଳ ନାମରେ ପରିଚିତ ଥିଲା । ହରିବଂଶ, ବାୟୁପୁରାଣ, ମତ୍ସ୍ୟପୁରାଣ, ଅଗ୍ନି ପୁରାଣାଦି ଏବଂ ମହାଭାରତ ଓ କାଳିଦାସଙ୍କ ରଘୁବଂଶରେ ଏହା ଉତ୍କଳ ଓ କଳିଙ୍ଗ ଉଭୟ ଭାଗରେ ବିଭକ୍ତ ଥିବା ଜଣାପଡ଼େ । ସ୍କନ୍ଦ ପୁରାଣ ଓ କାଳିକା ପୁରାଣରେ ଏହାକୁ ଓଡ୍ଡିୟାନ ରୂପେ ମଧ୍ୟ ବର୍ଣ୍ଣନା କରାଯାଇଛି । ପଦ୍ମପୁରାଣ ଓ ବିଷ୍ଣୁଧର୍ମୋତ୍ତର ପୁରାଣରେ ଏହା 'ଓଡ୍ର'ରୂପେ ବର୍ଣ୍ଣିତ । ଏସବୁରୁ ଅନୁମାନ ହୁଏ, କଳିଙ୍ଗ, ଓଡ୍ର, ଉତ୍କଳ ସବୁ ନାମତଃ ଭିନ୍ନ ବୋଲି ଜଣାପଡୁଥିଲେ ସୁଦ୍ଧା ବସ୍ତୁତଃ ଏକ ଥିଲା । ବିଭିନ୍ନ ସମୟରେ ବିଭିନ୍ନ କାରଣରୁ ଏହା କେତେବେଳେ ଅଲଗା ହୋଇ ରହୁଥିଲା ତ ପୁଣି କେତେବେଳେ ଏକ ସୀମା-ସରହଦ ମଧ୍ୟରେ ରହି ଆସିଥିଲା । କିନ୍ତୁ ଯେତେ ଯାହା ଘଟିଥିଲେ ବି କଳିଙ୍ଗର ପ୍ରତିପତ୍ତି ଆବହମାନ କାଳରୁ କୌଣସି ପୁରାଣଲେଖକ ବା ଗ୍ରନ୍ଥକର୍ତ୍ତାଙ୍କ ଚକ୍ଷୁକୁ ଏଡ଼ାଇ ପାରି ନଥିଲା । ଏଣୁ ସବୁକାଳରେ ସବୁ ଗ୍ରନ୍ଥରେ 'କଳିଙ୍ଗ'ର ନାମ ଦେଖିବାକୁ ମିଳେ । ପ୍ରଥମେ ଦେଖିବା ଏହି 'କଳିଙ୍ଗ' ନାମକରଣର ମୂଳ ବୀଜ କେଉଁଠି ଓ ଏହା କେବେଠାରୁ ପ୍ରସିଦ୍ଧି ଲାଭ କରିଆସିଛି ।

'କଳିଙ୍ଗ' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ କେଉଁଠାରେ ମିଳେ ନାହିଁ । ଯେତିକି ମିଳେ ସେଥିରୁ ଜଣାପଡ଼େ ତାହା ଗୋଟିଏ ରାଜ୍ୟର ନାମ । ଏହା କେବେଠାରୁ ପ୍ରସିଦ୍ଧି ଲାଭ କରିଛି, କିଏ ଏପରି ପ୍ରଥମେ ନାମକରଣ କଲା ଏବଂ କାହିଁକି—ତାହାର କୁତ୍ରାପି ଉଲ୍ଲେଖ ନାହିଁ । ମହାଭାରତ ମଧ୍ୟରୁ କଳିଙ୍ଗର ଉତ୍ପତ୍ତି ସମ୍ବନ୍ଧରେ ଯେଉଁ ଟିକିଏ ଖିଅ ମିଳେ ସେଥିରୁ ବୁଝାପଡ଼େ "ପୂର୍ବକାଳରେ ଭାରତବର୍ଷର ପୂର୍ବ ଭୂଖଣ୍ଡକୁ 'ବାଳୀ' ନାମକ ଜଣେ ରାଜା ଶାସନ କରୁଥିଲେ । ଧନ-ଜନ-ଗୋପ-ଲକ୍ଷ୍ମୀ ସବୁରେ ସେ ପରିପୂର୍ଣ୍ଣ ଥିଲେ । ତାଙ୍କର 'ସୁଦେଷ୍ଣା' ନାମରେ ଜଣେ ପଟ୍ଟମହିଷୀ ଥାଆନ୍ତି । ସେ ଦେଖିବାକୁ ଯେପରି ସୁନ୍ଦରୀ ଗୁଣରେ ମଧ୍ୟ ସେହିପରି ଆଦର୍ଶସ୍ଥାନୀୟା । କିନ୍ତୁ ଦୁଃଖର ବିଷୟ ତାଙ୍କର କୌଣସି ସନ୍ତାନସନ୍ତତି ନଥିଲେ । ରାଜା ସେଥିଯୋଗୁ ଋଷିମୁନିମାନଙ୍କ ପ୍ରତି ଗଭୀର ଭକ୍ତି ପ୍ରଦର୍ଶନ ପୂର୍ବକ ସ୍ୱ ନବରରେ ଆଶ୍ରୟ ଦେଇ ସେବାଦ୍ୱାରା ସେମାନଙ୍କୁ ଆପ୍ୟାୟିତ କରୁଥିଲେ । ଆଶ୍ରୟପ୍ରାପ୍ତ ବ୍ୟକ୍ତିଙ୍କ ମଧ୍ୟରେ 'ଦୀର୍ଘତମା' ନାମକ ଜଣେ ଋଷି ଥିଲେ । ସେ ଜନ୍ମାନ୍ଧ ଥିବାରୁ ତାଙ୍କର ପିତା 'ଉତଥ୍ୟ' ତାଙ୍କୁ ପରିତ୍ୟାଗ କରିଦେଇଥିଲେ । ଏଣୁ ଦୀର୍ଘତମା ବାଳୀରାଜାଙ୍କ ନବରରେ ଅତିଥି ଭାବେ ବହୁକାଳ ଅତିବାହିତ କରିଥିଲେ । ସେ ନବରରେ ଥିବାବେଳେ ସ୍ୱୟଂ ସୁଦେଷ୍ଣା ତାଙ୍କ ସେବାରେ ନିଜକୁ ନିୟୋଜିତ କରିଥିଲେ । କାଳକ୍ରମେ ସେହି ଦୀର୍ଘତମା ଋଷିଙ୍କ ଔରସରେ ସୁଦେଷ୍ଣାଙ୍କ ଗର୍ଭରୁ ପାଞ୍ଚୋଟି ପୁତ୍ର ଜାତ ହେଲେ । ସେହି

ପାଞ୍ଚଜଣଙ୍କ ନାମ ହେଉଛି ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ । ସେମାନେ ଉତ୍ତରାଧିକାରୀ ଭାବେ ପିତୃଶାସିତ ପୂର୍ବ ଖଣ୍ଡ ରାଜ୍ୟକୁ ଭାଗଭାଗ କରି ସ୍ୱ ସ୍ୱ ନାମରେ ନାମିତ କଲେ ।" ଏଥିରୁ ଜଣାପଡ଼େ 'କଳିଙ୍ଗ' ମୂଳତଃ ଜଣେ ରାଜାଙ୍କ ନାମ ଓ ସେ ଅନୁସାରେ ତାଙ୍କ ଦ୍ୱାରା ଶାସିତ ରାଜ୍ୟର ନାମ ମଧ୍ୟ 'କଳିଙ୍ଗ' । ଏତିକ ଛଡ଼ା କଳିଙ୍ଗର ନାମକରଣ ସମ୍ବନ୍ଧରେ ଆଉ କୌଣସି ବିବରଣୀ ମିଳେନାହିଁ ।

କିନ୍ତୁ 'କଳିଙ୍ଗ' ଶବ୍ଦ ପ୍ରାଚୀନ ପୁରାଣ ଓ ଶାସ୍ତ୍ରାଦିରେ ସ୍ୱାଭମତ ପ୍ରୟୋଗ ହୋଇ-ଆସିଥିବା ଦେଖାଯାଏ । ବୌଦ୍ଧ ସାହିତ୍ୟ, ଜୈନ ଧର୍ମଗ୍ରନ୍ଥ ଏପରିକି ପାଣିନିଙ୍କ 'ଅଷ୍ଟାଧ୍ୟାୟୀ ସୂତ୍ର' ଓ 'ଶତପଥ ବ୍ରାହ୍ମଣ'ରେ ମଧ୍ୟ ଏହାର ନାମୋଲ୍ଲେଖ ରହିଛି । ଏଣୁ ମନେହୁଏ ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀ ପୂର୍ବରୁ କଳିଙ୍ଗ ଭାରତବର୍ଷରେ ଖ୍ୟାତିଲାଭ କରିସାରିଥିଲା ଏବଂ ଭାରତର ଏ ପ୍ରାନ୍ତରୁ ସେ ପ୍ରାନ୍ତ ପର୍ଯ୍ୟନ୍ତ ଲିଖିତ ଧର୍ମଶାସ୍ତ୍ର, ପୁରାଣ, ଆଖ୍ୟାନ, ଆଖ୍ୟାୟିକା ସବୁରେ ସ୍ଥାନ ପାଇ ଆସିଥିଲା । ପ୍ରଥମେ ଏହା ଏକ ଅପାଂକ୍ତେୟ ଦେଶ ରୂପେ ପରିଚିତ ଥିବା ଅନୁମିତ ହୁଏ । ଖ୍ରୀ.ପୂ. ପଞ୍ଚମ ଶତାବ୍ଦୀ ଆଗରୁ ଲିଖିତ ଶତପଥ ବ୍ରାହ୍ମଣ, ବାଗୁରି ସଂହିତା ଓ ବୌଧାୟନ ଧର୍ମସୂତ୍ରରେ ନିର୍ଦ୍ଦେଶ ରହିଛି—ଯଦି କେହି କୌଣସି କାରଣରୁ କଳିଙ୍ଗ ଦେଶରେ ପଦାର୍ପଣ କରେ ସେ ପୁନଃ ସଂସ୍କାରର ଯୋଗ୍ୟ ଏବଂ ସେଥିପାଇଁ ଯଥାବିଧି ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ—ଯେହେତୁ ସେ ଦେଶରେ ଚାତୁର୍ବର୍ଣ୍ଣ୍ୟ ବିଧାନ ନାହିଁ, ଶାଶ୍ୱତ ଧର୍ମ ପାଳନ କରାଯାଏ ନାହିଁ, ବେଦବିହିତ ଦେବତାଙ୍କ ଉପାସନା କରାଯାଏ ନାହିଁ ଓ ଶୁଦ୍ଧଭାଷା ଉଚ୍ଚାରଣ ହୁଏ ନାହିଁ । କିନ୍ତୁ ପରବର୍ତ୍ତୀ କାଳର ବିଷ୍ଣୁ-ପୁରାଣରେ କଳିଙ୍ଗରେ ଦ୍ୱିଜମାନେ ବାସକରୁଥିବା କଥାର ଉଲ୍ଲେଖ ଅଛି । ଏଥିରୁ ଅଧ୍ୟାହାର କରାଯାଇପାରେ ଯେ ପ୍ରଥମେ କଳିଙ୍ଗ ଶାଶ୍ୱତ ଧର୍ମ ପାଳନ କରୁନଥିବା କୌଣସି ଏକ 'ଜାତି'ର ବାସସ୍ଥଳୀ ଥିଲା । ପରେ ସେଠାକୁ ଦ୍ୱିଜମାନେ ଯାଇ ବାସ କରିବାକୁ ଲାଗିଲେ । ଫଳରେ ତଥାକଥିତ ଅପବିତ୍ର କଳିଙ୍ଗଦେଶ ଧର୍ମଶାସ୍ତ୍ରୀୟ ସ୍ୱୀକୃତ ଲାଭକରି ଆଉ ଅପବିତ୍ର ହୋଇ ରହିଲା ନାହିଁ । ଏହି କଥାକୁ ପ୍ରସିଦ୍ଧ ଗ୍ରୀକ୍ ଐତିହାସିକ 'ପ୍ଲିନି' ସାହେବ ଓ ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର ଭୌଗୋଳିକ 'ଟଲେମି'ଙ୍କ ଉକ୍ତି ମଧ୍ୟ ସମର୍ଥନ କରେ । ପ୍ଲିନି କହନ୍ତି, "ଗଙ୍ଗାନଦୀର ଏ ପଟକୁ 'କଳିଙ୍ଗ' ନାମକ ଏକ ଆଦିବାସୀ ଗୋଷ୍ଠୀ ବାସ କରି ଆସିଥିଲେ । ସେମାନେ ଆର୍ଯ୍ୟ ଗୋଷ୍ଠୀର ବିରୋଧୀ ଥିଲେ ।" ସେହିପରି ଟଲେମିଙ୍କ କଥାରୁ ଜଣାପଡ଼େ, ବୈଦିକ-ଆର୍ଯ୍ୟ ଓ ସିନ୍ଧୁତଟ ନିବାସୀ ଦ୍ରାବିଡ଼ଙ୍କ ସଭ୍ୟତା ମଧ୍ୟରେ ଆଉ ଏକ ଆଦିବାସୀ ସଭ୍ୟତା ସେକାଳ ଭାରତବର୍ଷରେ ବିସ୍ତୃତି ଲାଭ କରିଥିଲା, ଯାହା ଆଦିମ ଶବର ଗୋଷ୍ଠୀ ଛଡ଼ା ଅନ୍ୟ କାହାରି ବୋଲି ବୁଝାଯାଇ ନ ପାରେ । ଏମାନେ ଗଙ୍ଗାନଦୀର ଦକ୍ଷିଣ ପଟେ ପରିବ୍ୟାପ୍ତ ହୋଇ ରହିଥିଲେ । ତାଙ୍କ ଭାଷାରେ କହିଲେ ସେମାନେ "କଳିଙ୍ଗିର—ଗଙ୍ଗାରିଡ଼"—ଅର୍ଥାତ୍ ଗଙ୍ଗାତଟବାସୀ କଳିଙ୍ଗ ମୁଣ୍ଡାରି ଶ୍ରେଣୀର । ସଂସ୍କୃତ ପୁରାଣ-ମାନଙ୍କରେ ମଧ୍ୟ ଏହାର କ୍ଷୀଣ ସଙ୍କେତ ରହିଛି । ସେଥିରେ ବର୍ଣ୍ଣିତ ଅଛି, "କଳିଙ୍ଗ ବଂଶୀ

ଶବର ରାଜା 'ପୁଣ୍ଡ୍ରଚନ୍ଦ୍ର' କୀକଟ (ମଗଧ) ରାଜ୍ୟର ଶାସକ ଥିଲାବେଳେ ଭୋଜବଂଶୀ ଜଣେ ରାଜା ତାଙ୍କୁ ପରାଜିତ କରି ସେଠାରୁ ବିତାଡ଼ିତ କରିଥିଲେ ।" କଥାରେ ସତ୍ୟତା ଯାହା ଥାଉ ପଛେ, ଏହା କିନ୍ତୁ ସତ୍ୟ ଯେ ଦିନେ ମଗଧରାଜ୍ୟ ଶବର ଗୋଷ୍ଠୀର ଶାସନାଧୀନ ଥିଲା । ଗଙ୍ଗାର ଦକ୍ଷିଣପଟକୁ 'କଳିଙ୍ଗ'ମାନେ ବାସକରୁଥିଲେ ଓ ସେମାନଙ୍କ ଅଧ୍ୟୁଷିତ ରାଜ୍ୟ 'କଳିଙ୍ଗ' ନାମରେ ନାମିତ ଥିଲା । ସେମାନେ ଆଦିବାସୀ ଓ ବର୍ଣ୍ଣ୍ୟଜାତିର ଥିବାହେତୁ ସେମାନଙ୍କ ଧର୍ମଧାରଣା, ସଂସ୍କୃତି ଓ ଜୀବନଯାତ୍ରା ବୈଦିକ ସମାଜଠାରୁ ପୃଥକ୍ ରହିବା ସ୍ୱାଭାବିକ । ସେହି କାରଣରୁ ବୋଧହୁଏ 'କଳିଙ୍ଗ' ଅପବିତ୍ର ରାଜ୍ୟ ରୂପେ ପରିଗଣିତ ହୋଇଆସିଥିଲା ।

କଳିଙ୍ଗରେ ଯେଉଁମାନେ ବସତି ସ୍ଥାପନ କରି ରହିଥିଲେ ସେମାନେ ପ୍ରସ୍ତରଯୁଗୀୟ ଆଦିମତମ ଅଧିବାସୀ ବୋଲି ଐତିହାସିକମାନଙ୍କ ମତ । ସେମାନଙ୍କୁ 'ବିନ୍ଧ୍ୟ ମୌଳିକ' ଗୋଷ୍ଠୀ ବୋଲି କହନ୍ତି । ଏମାନେ ଅନନ୍ତକାଳରୁ ବିନ୍ଧ୍ୟଗିରି ମାଳଅଞ୍ଚଳରେ ରହି ଆସିଛନ୍ତି । ଅଷ୍ଟ୍ରିକ୍ ଗୋଷ୍ଠୀ ସହିତ ଏମାନଙ୍କର ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଏମାନଙ୍କ ଦେହର ବର୍ଣ୍ଣ ଥିଲା କଳା ଏବଂ ମୁହଁ ଗୋଲାକାର, ବୃତ୍ତି ଶିକାର କରିବା ଓ ବଣରୁ କନ୍ଦମୂଳ ପ୍ରଭୃତି ଖୋଜି ଖାଇବା । ପଥରକୁ ଘଷିମାଜି ସେମାନେ ଅସ୍ତ୍ର ନିର୍ମାଣ କରୁଥିଲେ ଓ ତା ସାହାଯ୍ୟରେ ବିପଦରୁ ରକ୍ଷାପାଉଥିଲେ । ପୂରାପୂରି ଉଲଗ୍ନ ରହୁଥିଲେ କିମ୍ବା ପତ୍ର ବା ବକ୍‌କଲ ଦ୍ୱାରା ଲଜ୍ଜା ନିବାରଣ କରୁଥିଲେ । ସେ ମଧ୍ୟରୁ ଏବେ ମଧ୍ୟ କେତେକ ନଗ୍ନଶରୀରରେ କାଳ ଯାପନ କରୁଥିବା ଦେଖାଯାଏ । ସେମାନଙ୍କ ବଂଶ ଏ ପର୍ଯ୍ୟନ୍ତ ଲୋପପାଇ ନାହିଁ । କଳିଙ୍ଗ (ବର୍ତ୍ତମାନର ଓଡ଼ିଶା)ର କେତେକ ଉଚ୍ଚ ପାର୍ବତ୍ୟ ଅଞ୍ଚଳରେ ଏମାନେ ଉଲଗ୍ନଭାବେ ରହିଥିବା ସର୍ଭେରୁ ଜଣାପଡ଼େ । ଆଧୁନିକ ସଭ୍ୟତାଠାରୁ ସର୍ବଦା ଦୂରରେ ରହିବା ପାଇଁ ସେମାନେ ଇଚ୍ଛୁକ । ମନେହୁଏ ସେହି ଆଦିମଯୁଗର ବିନ୍ଧ୍ୟାଟବୀ ମଧ୍ୟସ୍ଥ ଘନଜଙ୍ଗଲ ଭିତରେ ଏମାନଙ୍କ ପୂର୍ବପୁରୁଷଗଣ ପ୍ରଥମେ ସେହିପରି ଏକ କିମ୍ଭୂତକିମାକାର ଜୀବନଯାତ୍ରା ମଧ୍ୟରେ ଗତି କରି ଆସୁଥିଲେ । ସେମାନଙ୍କ ଜୀବନଦର୍ଶନ ଥିଲା ନିର୍ଭୟରେ ବଞ୍ଚିରହିବା । ଏଣୁ ଭୟରୁ ରକ୍ଷାପାଇବାକୁ ଯେପରି ଅଲୌକିକ ଶକ୍ତିର ସହାୟତା ଲୋଡ଼ାଥିଲା ସେହିପରି ବଞ୍ଚି ରହିବାକୁ ପ୍ରକୃତିର ପ୍ରୟୋଜନୀୟତା ଅନୁଭୂତ ହୋଇଥିଲା । ବଞ୍ଚି ରହିବା ଅର୍ଥ ଜୀବନକୁ ଉପଭୋଗ କରିବା । ଏଣୁ ଅପ୍ରତ୍ୟାଶିତ ବିପଦରୁ ରକ୍ଷା ପାଇବା ପାଇଁ ଅଦୃଶ୍ୟ ଶକ୍ତିର ମାଧ୍ୟମ ରୂପେ ପର୍ବତ, ଝରଣା, ମାଟି, ପଥର, ବୃକ୍ଷାଦିକୁ ଦେବତା ଜ୍ଞାନରେ ଉପାସନା କରୁଥିଲେ ; ତାଙ୍କର ଶରଣାପନ୍ନ ହେଉଥିଲେ । ଏହା ଥିଲା ସେମାନଙ୍କ ସାମାଜିକ ଜୀବନଚର୍ଯ୍ୟା । ଏଥି ସକାଶେ ସେମାନଙ୍କୁ ହେତୁ ଖୋଜିବା ଆବଶ୍ୟକ ନଥିଲା କିମ୍ବା ନିଷ୍ଠୁର ହିଂସ୍ରା କର୍ମ କରିବାକୁ ପଡୁନଥିଲା । ମୋଟ ଉପରେ ସେମାନେ ଥିଲେ ଅହେତୁବାଦୀ ଓ ଅହିଂସାବାଦୀ । ସେମାନେ ହିଁ ଥିଲେ ଭାରତର ମୂଳ ଅଧିବାସୀ—ଆଦିବାସୀ ।

ଉତ୍ତରକାଳରେ ବୈଦିକ ସଭ୍ୟତାର ପରିପ୍ରସାର ପୂର୍ବରୁ ଯେଉଁ ଇତର ସଭ୍ୟତା ସମ୍ପନ୍ନ ଗୋଷ୍ଠୀ ସ୍ୱକୀୟ ସାମ୍ରାଜ୍ୟ ସ୍ଥାପନ ଲାଳସା ରଖି ମୂଳ ଆଦିବାସୀ ଗୋଷ୍ଠୀକୁ ସ୍ଥାନାନ୍ତରିତ କରିବାରେ ସଫଳକାମ ହୋଇଥିଲେ ସେମାନେ ଏମାନଙ୍କଠାରୁ ଅପେକ୍ଷାକୃତ ଶିକ୍ଷିତ ଥିବାର ସମ୍ଭାବନା । ଆଦିମ ଅଧିବାସୀ ଗୋଷ୍ଠୀର ଉଚ୍ଛେଦ ସାଧନକରି ସେମାନେ ଯେଉଁ କଳା, ସ୍ଥାପତ୍ୟ, ନଗର ନିର୍ମାଣ କୌଶଳର ନମୁନା ଦେଇଯାଇଛନ୍ତି ତାହା ଭୂଖନନ ଫଳରେ ଆବିଷ୍କୃତ ମହେଞ୍ଜୋଦାରୋ ଓ ହରପ୍ପାରୁ ମିଳିଥିବା ଉପାଦାନମାନଙ୍କରୁ ସ୍ପଷ୍ଟ ହୁଏ । ତା' ସଙ୍ଗେ ସଙ୍ଗେ ପରବର୍ତ୍ତୀ ଯୁଗରେ ଘଟିଥିବା ଗୋଷ୍ଠୀ ସଂଘର୍ଷକାଳୀନ ଋକ ବେଦମନ୍ତ୍ରମାନଙ୍କରୁ ମଧ୍ୟ ଜଣାପଡ଼େ । ଏଣୁ କହିପାରୁ ଆଦିବାସୀ ଗୋଷ୍ଠୀକୁ ସ୍ଥାନଚ୍ୟୁତ କରାଇ ଯେଉଁମାନେ ସ୍ୱକୀୟ ସଭ୍ୟତା, ସଂସ୍କୃତି ଓ କୃଷ୍ଟିର ପ୍ରସାର କରିଥିଲେ ସେମାନଙ୍କୁ ଆର୍ଯ୍ୟ ଋଷିଙ୍କ ଭାଷାରେ ଦ୍ରମିଳ କୁହାଯାଉଥିଲା । ସେମାନଙ୍କ ଜୀବନଚର୍ଯ୍ୟା କେତେକାଂଶରେ ଆଦିବାସୀଙ୍କ ପରି ଥିଲାବେଳେ ଆଉ କେତେକ ଆର୍ଯ୍ୟସମାଜ ସହିତ ସମତା ରକ୍ଷାକରୁଥିଲା । ଆଦିବାସୀଙ୍କ ପରି ସେମାନେ ନଗ୍ନଶରୀର ନହେଲେ ସୁଦ୍ଧା ଆର୍ଯ୍ୟମାନଙ୍କ ପରି ନିକଚ୍ଛ ପରିଧାନ କରୁନଥିଲେ । ଲଜ୍ଜା ନିବାରଣ ପାଇଁ ଲେଙ୍ଗୁଟି ବା କଚ୍ଛା ବନ୍ଧନ କରୁଥିଲେ, ଯାହାର ପଛଭାଗ ପୁଚ୍ଛ ଭଳି ଲମ୍ବ ଥିଲା । ଏମାନେ ପରିଧାନ ସକାଶେ ପଟ୍ଟ କମ୍ବା ବକ୍‌କଲ ବ୍ୟବହାର କରୁଥିଲେ । ସ୍ଥଳବିଶେଷରେ କାର୍ପାସ ନିର୍ମିତ କ୍ଷୁଦ୍ର ଲେଙ୍ଗୁଟିଦ୍ୱାରା ପରିଧାନ କର୍ମ ସମାପନ କରୁଥିଲେ । ଏବେ ସୁଦ୍ଧା ଦକ୍ଷିଣଭାରତୀୟ କେତେକ ଗୋଷ୍ଠୀରେ ଏହାର ଅବଶେଷ ପରିଦୃଷ୍ଟ ହୁଏ । ସ୍ନାନକର୍ମ ସାରି ଦେବତାଙ୍କୁ ପ୍ରଣତି ଜଣାଇଲାବେଳେ ଲେଙ୍ଗୁଟି ପିନ୍ଧିବା ପ୍ରଥା ଏବେ ବି ସେମାନଙ୍କ ମଧ୍ୟରେ ପ୍ରଚଳିତ ଅଛି । ଯାହାହେଉ ଏମାନେ 'ବିନ୍ଧ୍ୟ ମୌଳିକ'ଙ୍କ ଠାରୁ ଅପେକ୍ଷାକୃତ ସଭ୍ୟ ଓ ଶିକ୍ଷିତ ଥିବା ଯୋଗୁ ସେମାନଙ୍କୁ ବିତାଡ଼ିତ କରି ତାଙ୍କ ସ୍ଥାନରେ ଆପଣା ସାମ୍ରାଜ୍ୟ ସ୍ଥାପନ କରିପାରିଥିଲେ । କିନ୍ତୁ ତାହା ଚିରକାଳ ତିଷ୍ଠି ରହି ପାରିଲା ନାହିଁ । ବଳାତ୍କାର ପ୍ରତିଷ୍ଠିତ ରାଜ୍ୟର ପତନ ବଳାତ୍କାର ଯୋଗୁଁ ହିଁ ଘଟିଥାଏ । ତେଣୁ ଉତ୍ତରକାଳରେ ତଦପେକ୍ଷା ଅଧିକ ଶିକ୍ଷିତ ଓ ସଭ୍ୟତାସଂପନ୍ନ ଆର୍ଯ୍ୟସମାଜଦ୍ୱାରା ତାହା ଅଧିକୃତ ହୋଇପଡ଼ିଲା । ଫଳରେ ସେମାନେ ମଧ୍ୟଭାରତ ମାର୍ଗରେ ଦକ୍ଷିଣାପଥ ଆଡ଼କୁ ପଳାୟନ କରି ଏକ ସ୍ୱତନ୍ତ୍ର ସଭ୍ୟତାର ଭିତ୍ତି ସ୍ଥାପନ କଲେ ।

ଏଣେ ଦ୍ରମିଳଙ୍କ ଦ୍ୱାରା ପରାଜିତ ଆଦିବାସୀ ଗୋଷ୍ଠୀ ଜୀବିକା ନିର୍ବାହ ଅଭିପ୍ରାୟରେ ଉତ୍ତରଖଣ୍ଡ ଛାଡ଼ି ପୂର୍ବଭାରତୀୟ ଭୂଖଣ୍ଡକୁ ନିଜର ବସତି ସ୍ଥାପନ ପାଇଁ ଉପଯୁକ୍ତ ବିବେଚନା କରିଥିଲେ । ଏଠା ଗିରିସଙ୍କଟ, ନଦୀ ପର୍ବତ, ବିବିଧ ଜନ୍ତୁ ସଙ୍କୁଳ ବନ ଜଙ୍ଗଲ ଓ ସମଧର୍ମୀ ବନବାସୀଙ୍କ ଅନ୍ତରଙ୍ଗ ସାହଚର୍ଯ୍ୟ ସେମାନଙ୍କୁ ଆକୃଷ୍ଟ କରିଥିଲା । ତେଣୁ ନୂତନ ବାସସ୍ଥାନକୁ ପୂର୍ବ ଅପେକ୍ଷା ଅଧିକ ଉତ୍କୃଷ୍ଟ ମନେକରି ସ୍ଥାୟୀ ଭାବେ ରହିବାକୁ ପସନ୍ଦ କରିଥିଲେ । ବୋଧହୁଏ ସେମାନଙ୍କ ମଧ୍ୟରେ ଏକ ଶାଖା ଗୋଷ୍ଠୀ 'କଳି' ନାମରେ

ପରିଚିତ ଥିଲେ , ଯେଉଁମାନଙ୍କ ନାମାନୁସାରେ ଅଧ୍ୟୁଷିତ ଅଞ୍ଚଳ 'କଳିଙ୍ଗ' ବୋଲି ଅଭିହିତ ହୋଇଥିଲା । ଶବ୍ଦଦୃଷ୍ଟିରୁ ବିଚାରକଲେ ମଧ୍ୟ ସେ କଥା ସୂଚିତ ହୁଏ ।

ଆଗରୁ କୁହାଯାଇଛି ଆର୍ଯ୍ୟ ଦ୍ରମିଳ ସଭ୍ୟତାରୁ ଭିନ୍ନ ଏକ ସଭ୍ୟତା ସଂପନ୍ନ ଆଦିବାସୀ ଗୋଷ୍ଠୀ ବିନ୍ଧ୍ୟାଞ୍ଚଳରେ ବହୁ ପୂର୍ବରୁ ବସବାସ କରି ଆସୁଥିଲେ । ସେମାନଙ୍କ ଆଚାରବିଚାର; ଜୀବନଯାପନ ପ୍ରଣାଳୀ, ଭାବ ପ୍ରକାଶକ ଭାଷା, ଭୋଜନ ସାମଗ୍ରୀ, ଅଙ୍ଗାବରଣ ପ୍ରଭୃତି ଭିନ୍ନ ପ୍ରକାର ଥିଲା । ବର୍ଷା ଶୀତରୁ ରକ୍ଷା ପାଇବାକୁ ଯେପରି ସେମାନେ ପ୍ରସ୍ତର ଓ ଗିରି ଗୁହାର ଆଶ୍ରୟ ନେଉଥିଲେ, ସେହିପରି ଖାଦ୍ୟାଭାବରୁ ଉଦ୍ଧାର ପାଇବା ଲାଗି ବୃକ୍ଷଲତାଦିର ଗୁଳ୍ମ ଓ ଝରଣା ଜଳର ନିକଟବର୍ତ୍ତୀ ହେଉଥିଲେ । ସୀମିତ ଶବ୍ଦ ସମ୍ଭାର ମଧ୍ୟରେ ପରସ୍ପର ଭାବ ବିନିମୟ ପୂର୍ବକ ସକଳ ପ୍ରକାର ଆବଶ୍ୟକତା ପୂରଣ କରୁଥିଲେ । ସ୍ଥୂଳତଃ କହିବାକୁ ଗଲେ ଗୋଟିଏ ଜାତିକୁ ବଞ୍ଚିରହିବାକୁ ହେଲେ ଯାହା ନିତାନ୍ତ ପ୍ରୟୋଜନ ତାଙ୍କର ସେ ସବୁ ବିଭବର ରହିଥିଲା । ତାଦୃଶ ଅବସ୍ଥାରେ ସେମାନଙ୍କ ଉପରେ ଯେଉଁ ଅପ୍ରତ୍ୟାଶିତ ବିପଦ ସୃଷ୍ଟି ହେଲା , ତାର ସ୍ରଷ୍ଟା ଥିଲେ ଅନ୍ୟ ଏକ ଗୋଷ୍ଠୀ—ଦ୍ରମିଳ ଗୋଷ୍ଠୀ । ସେମାନଙ୍କ ସଭ୍ୟତା, କୃଷ୍ଟି, ଐତିହ୍ୟ, ଜୀବନଯାତ୍ରା ବେଶଭୂଷା ସବୁ ଆଦିବାସୀଙ୍କଠାରୁ ଭିନ୍ନ ଥିଲା । ସେହିମାନେ ଏମାନଙ୍କୁ ପରାଜିତ କରି ତାଙ୍କ ଆସ୍ଥାନ ଅଧିକାର କରନେଲେ । କିନ୍ତୁ ପରେ ପରେ ତଥାକଥିତ ଆର୍ଯ୍ୟ ସମାଜର ପ୍ରଚଣ୍ଡ ଆକ୍ରମଣ ଧକ୍କା ସହି ନପାରି ଦ୍ରମିଳ ଗୋଷ୍ଠୀ ଉତ୍ତରଖଣ୍ଡ ଛାଡ଼ି ଦକ୍ଷିଣ ଭାରତ ଆଡ଼େ ପଳାୟନ କରନ୍ତି ଓ ସେହି ସ୍ଥାନକୁ ବିଜେତା ଗୋଷ୍ଠୀ 'ଆର୍ଯ୍ୟାବର୍ତ୍ତ' ନାମରେ ଅଭିହିତ କରି ସ୍ୱକୀୟ ସଭ୍ୟତା ବିସ୍ତାର କରନ୍ତି । କହିବା ଅନାବଶ୍ୟକ, ଏମାନଙ୍କ ବେଶ ଭୂଷା, ଭାଷା, ଖାଦ୍ୟପେୟାଦି ପୂର୍ବୋକ୍ତ ଉଭୟ ଗୋଷ୍ଠୀଠାରୁ ସ୍ୱତନ୍ତ୍ର ଥିଲା । ଫଳରେ ସେକାଳ ଭାରତବର୍ଷରେ ବିବିଧ ସଭ୍ୟତା, ବିବିଧ ସଂସ୍କୃତି; ବିବିଧ ଭାଷାର ପ୍ରସାର ଘଟିଥିଲା । ପ୍ରସଙ୍ଗତଃ ଏଠାରେ ଭାଷା ସମ୍ବନ୍ଧରେ କିଂଚିତ୍ ଆଲୋଚନା କରାଯାଉଛି ।

ଭାଷା ସବୁଦିନେ ସମାନ ରହେ ନାହିଁ ବିଶେଷତଃ ବହୁ ଭାଷାଭାଷୀ ସମାଜରେ ଭାଷା ସମୂହ ମତ୍ସ୍ୟ ନ୍ୟାୟରେ ସ୍ୱ ସ୍ୱ ଅଭିବୃଦ୍ଧି ସାଧନ କରନ୍ତି । ବୃହତ୍କାୟ ମତ୍ସ୍ୟ କ୍ଷୁଦ୍ର ମୀନକୁ କବଳିତ କଲାପରି ଅପେକ୍ଷାକୃତ ସମୃଦ୍ଧ ଭାଷା ଅପର ଭାଷା ଉପରେ ପ୍ରଭାବ ବିସ୍ତାରି ତାହାକୁ ଆପଣାର କରିନିଅନ୍ତି କିମ୍ବା ଅପର ମଧ୍ୟରେ ପ୍ରବେଶ କରି ତାହାର ସତ୍ତା ଲୋପ କରିପକାନ୍ତି । ଉପସ୍ଥିତ କ୍ଷେତ୍ରରେ ତାହାହିଁ ଘଟିଥିବା ଜଣାପଡ଼େ । ଭାଷାତତ୍ତ୍ୱବିତ୍ମାନଙ୍କ ମତରେ ସମଗ୍ର ଭାରତୀୟ ଭାଷା ତିନୋଟି ପରିବାରରେ ବିଭକ୍ତ—ମୁଣ୍ଡାରି, ଦ୍ରାବିଡ଼, ଆର୍ଯ୍ୟ । ଏ ତିନୋଟିର ପାରସ୍ପରିକ ସମ୍ମିଶ୍ରଣ ଯୋଗୁ ପରବର୍ତ୍ତୀକାଳରେ ବିଭିନ୍ନ ଭାଷା ଓ ଉପ-ଭାଷାର ସୃଷ୍ଟି ଘଟିଛି । କିନ୍ତୁ ଭାଷା ବିଭାଗ ଦର୍ଶାଇଲାବେଳେ ଆର୍ଯ୍ୟ ଓ ଦ୍ରାବିଡ଼ ପରିବାର ମଧ୍ୟରେ ସମସ୍ତ ଭାଷାକୁ ଅନ୍ତର୍ଭୁକ୍ତ କରାଇ 'ମୁଣ୍ଡାରି'କୁ ଉପେକ୍ଷିତ ଅବସ୍ଥାରେ ଛାଡ଼ି ଦିଆ-ଯାଇଛି । ପଞ୍ଜାବୀ, ହିନ୍ଦୀ, ବିହାରୀ, ରାଜସ୍ଥାନୀ, ଗୁଜୁରାଟି, ମରାଠୀ, ଆସାମୀ, ବଙ୍ଗାଳୀ,

କାଶ୍ମୀରୀ ପ୍ରଭୃତିକୁ ଆର୍ଯ୍ୟ ପରିବାରଭୁକ୍ତ କରି ଦ୍ରାବିଡ଼ ପରିବାର ମଧ୍ୟରେ ଅବଶିଷ୍ଟ ତେଲୁଗୁ, ତାମିଲ, କନ୍ନଡ଼, ମାଲୟାଲଂ, ତୁଲୁ, ବଡ଼ଗା, ତୋଡ଼ା, କୋଟା, କୋଡ଼ୁକୁ ସହିତ କୁଇ, କନ୍ଧ, ଗଣ୍ଡ, ନାଇକୀ, ପରଜା, ସୌରା, କୋୟା, କୋହ୍ଲ ପ୍ରଭୃତି ଭାଷାକୁ ମଧ୍ୟ ପରିଗଣିତ କରାହୋଇଛି । ଏଣୁ ମନେହୁଏ ଆଦିମତମ ଅଧିବାସୀଙ୍କ ଭାଷା ଅପେକ୍ଷାକୃତ ଦୁର୍ବଳ ଥିବାଯୋଗୁ ଉତ୍ତରକାଳୀନ ଦ୍ରାବିଡ଼ ଓ ଆର୍ଯ୍ୟ ଗୋଷ୍ଠୀର ଭାଷା ପ୍ରଭାବ ବିସ୍ତାର କରି ତାକୁ ଅନ୍ତର୍ଦ୍ଧାନ କରିଦେଇଛନ୍ତି; ଯଦିଓ ସେ ଭାଷା ଭାରତବର୍ଷରୁ ଏଯାବତ୍ ପୂରାପୂରି ନିଶ୍ଚିହ୍ନ ହୋଇନାହିଁ । ଅଦ୍ୟାପି ବିଭିନ୍ନ ବଣ ଜଙ୍ଗଲରେ ବସବାସ କରି ରହିଥିବା ଆଦିବାସୀମାନେ ନିଜ ଭାଷାରେ ଭାବର ଆଦାନ ପ୍ରଦାନ କରନ୍ତି, ପ୍ରୟୋଜନ ମେଣ୍ଟାନ୍ତି । ଅବଶ୍ୟ ପରବର୍ତ୍ତୀ ସଭ୍ୟତାର ସଂସ୍ପର୍ଶରେ କେତେକ ନୂତନ ଶବ୍ଦର ବ୍ୟବହାର ସେ ମଧ୍ୟରେ ଦେଖିବାକୁ ମିଳିଲେ ସୁଦ୍ଧା ମୂଳ ଭାଷା ତାର ନିଜତ୍ୱ ହରାଇ ନାହିଁ । ଏବେ ସୁଦ୍ଧା ପ୍ରାଚୀନ ଯୁଗରୁ ରହିଆସିଥିବା ନଦୀ, ପର୍ବତ, ସ୍ଥାନ, ଗ୍ରାମ ପ୍ରଭୃତି ସୂଚକ ଶବ୍ଦମାନ ସେ ଭାଷାରେ ଅତୁଟ ରହିଛି । ସେହି ଶ୍ରେଣୀର ଶବ୍ଦ ମଧ୍ୟରୁ 'କଳିଙ୍ଗ' ହେଉଛି ଅନ୍ୟତମ ।

ଦ୍ରାବିଡ଼ୀୟ କିମ୍ବା ଆର୍ଯ୍ୟ ପରିବାର ଭାଷା ବିସ୍ତରରେ କୁତ୍ରାପି 'କଳିଙ୍ଗ' ଶବ୍ଦର ବ୍ୟୁତ୍ପତ୍ତି ଦେଖିବାକୁ ମିଳେ ନାହିଁ । ଅଥଚ ସୂତ୍ର ଯୁଗରୁ ଆରମ୍ଭ କରି ଏ ଯାବତ୍ ତାହା ବହୁତ୍ର ପ୍ରଯୁକ୍ତ ହୋଇ ଆସିଛି । ଭାଷା ବିଶ୍ଳେଷଣବେଳେ ତତ୍‌ବିଦ୍‌ମାନେ ଚାରିପ୍ରକାର ଶବ୍ଦ ଥିବା କଥା କହିଥାନ୍ତି—ତତ୍ସମ, ତଦ୍‌ଭବ, ବୈଦେଶିକ ଓ ଦେଶ୍ୟ । ଯାହା ମୂଳଭାଷାର ଶବ୍ଦ ସହିତ ସମତା ରକ୍ଷାକରି ଉଚ୍ଚାରିତ ତାହା ତତ୍ସମ; ମୂଳ ଶବ୍ଦରୁ ଅପଭ୍ରଷ୍ଟ ଶବ୍ଦ ତଦ୍‌ଭବ; ବିଦେଶୀ ଭାଷାରୁ ଆହୃତ ଶବ୍ଦ ବୈଦେଶିକ; କିନ୍ତୁ ଦେଶ୍ୟ ଶବ୍ଦର ବିଶ୍ଳେଷଣ ବେଳେ କୁହାଯାଏ—ଯାହା ଆରମ୍ଭରୁ ଦେଶରେ ବ୍ୟବହୃତ ହୋଇଆସିଛି ତାହା ଦେଶ୍ୟ । ଏଥିରୁ ଜଣାପଡ଼େ, ଏଭଳି କେତେକ ଶବ୍ଦ ଭାଷାରେ ରହିଛି ଯାହା ସମାଜ ସୃଷ୍ଟି ହେବା ଦିନରୁ ଦେଶରେ ପ୍ରଚଳିତ । ସେଗୁଡ଼ିକ ଆଦିବାସୀ ଶବ୍ଦଛଡ଼ା ଅନ୍ୟ କିଛି ହୋଇନପାରେ । ସେ ଦୃଷ୍ଟିରୁ 'କଳିଙ୍ଗ' ନିଶ୍ଚିତ ଭାବେ ଏକ ଆଦିବାସୀ ଶବ୍ଦ ଏଥିରେ ସନ୍ଦେହ ନାହିଁ । ଏହାର ଗଠନ ପ୍ରଣାଳୀ ଅନୁଧ୍ୟାନ କଲେ ସୁଦ୍ଧା ସେହିକଥା ଜଣାପଡ଼େ । ଆଦିବାସୀ ବିଶେଷତଃ ଶବର ଭାଷାର ଶବ୍ଦ ଗୁଡ଼ିକ ପ୍ରାୟ ଅନୁନାସିକାନ୍ତ । ଶବ୍ଦ ଉଚ୍ଚାରଣ କାଳରେ 'ଙ' ଧ୍ୱନି ପଦାନ୍ତ ଭାବେ ସର୍ବତ୍ର ଉଚ୍ଚାରିତ ହେଉଥିବା ଦେଖାଯାଏ । ସୌରା ଭାଷାରେ 'ମାରଙ୍‌=ପୁରୁଷ ବ୍ୟକ୍ତି', 'ଟଂଲଙ୍‌=ଗାଈ', 'କୁରଙ୍‌=ଶ୍ୱଶୁର', 'ତୋଂରଙ୍‌=ରାସ୍ତା' ଇତ୍ୟାଦି ପ୍ରକୃଷ୍ଟ ଦୃଷ୍ଟାନ୍ତ । ତଦନୁସାରେ 'କଳିଙ୍ଗ' ଶବ୍ଦର ଉତ୍ପତ୍ତି ଘଟିଥିବା ସମ୍ଭବ ।

ଏ ପ୍ରସଙ୍ଗରେ ଆଧୁନିକ ଓଡ଼ିଶାରେ (କଳିଙ୍ଗ) ପରିଦୃଷ୍ଟ କେତେକ ଗ୍ରାମ ଓ ଅଞ୍ଚଳର ନାମ ବିସ୍ତୃତିଯୋଗ୍ୟ ମନେହୁଏ । ସ୍ମରଣାତୀତ କାଳରୁ ସେହି ନାଁଗୁଡ଼ିକ ଏବେ ସୁଦ୍ଧା

ଅପରିବର୍ତ୍ତିତ ଭାବେ ଲୋକମୁଖରେ ଉଚ୍ଚାରିତ ହୋଇଆସୁଛି । ସେ ମଧ୍ୟରୁ କେତୋଟି ହେଉଛି—ତେଲାଙ୍ଗ, ଛାପଙ୍ଗ, ରେଡଙ୍ଗ, ସେରଙ୍ଗ, ନର୍ତ୍ତାଙ୍ଗ, ସର୍ଙ୍ଗ, ବାରଙ୍ଗ ଇତ୍ୟାଦି । ଏଗୁଡ଼ିକର ଉତ୍ପତ୍ତି ମୂଳ କେଉଁଠି ? କାହିଁକି ଏପରି ନାମକରଣ ହୋଇଛି—ସେଥିପ୍ରତି ଏ ପର୍ଯ୍ୟନ୍ତ କାହାରି ଦୃଷ୍ଟି ଆକୃଷ୍ଟ ହୋଇନାହିଁ । ଅଥଚ ସେକାଳ କଳିଙ୍ଗର ଗଙ୍ଗାନଦୀ ପ୍ରାନ୍ତରୁ ଗୋଦାବରୀ ସୀମାରେଖା ମଧ୍ୟରେ ବହୁ ଅନୁନାସିକାନ୍ତ ଗ୍ରାମ ଓ ପ୍ରାନ୍ତର ନାମମାନ ପରିଲକ୍ଷିତ ହୁଏ । ଅନୁମାନ ହୁଏ, ଯେତେବେଳେ ଏ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ 'କଲିଙ୍ଗ୍-ଶବର'ର ଶାସନାଧୀନ ଥିଲା ସେତେବେଳର ପ୍ରତିଷ୍ଠିତ ଗ୍ରାମମାନ ସାର୍ଥକ ଆଦିବାସୀ ନାମରେ ନାମିତ ହୋଇଥିଲା । ଏ ଅନୁମାନର ଅନ୍ୟ ଏକ କାରଣ ହେଉଛି—ଆଜିର ଓଡ଼ିଶାରେ ଆବହମାନ କାଳରୁ ଚାଲିଆସୁଥିବା ବିଭିନ୍ନ ଗ୍ରାମ ଓ ଅଞ୍ଚଳମାନଙ୍କର ଅବ୍ୟୁତ୍ପନ୍ନ ନାମ ସମୂହ । ଦକ୍ଷିଣପଟେ ଆସ୍କା, ସୋରଡ଼ା, ଗୁମ୍ମା, କୁଡ଼ଙ୍ଗା, ଜରଡ଼ା, ବୃକଟି, କୋରପୁଟ୍, ବଜପୁଟ୍, ମିଳାଆପୁଟ୍, ଗୁମ୍ପା, ବରିଗୁମ୍ମା, କାକରିଗୁମ୍ମା ପରି ଉତ୍ତର ଓଡ଼ିଶାରେ ଖୁର୍ଦ୍ଧା, ଅମର୍ଦା, ଦେହୁର୍ଦ୍ଦା, କୁଜଙ୍ଗ, କୁରୁଜଙ୍ଗ, ପରଜଙ୍ଗ ପ୍ରଭୃତି ଶବ୍ଦ ଲକ୍ଷ୍ୟ କରିବାର କଥା । ଏହା ବୋଧହୁଏ ଯେତେବେଳେ ଏ ଅଞ୍ଚଳମାନ ଆଦିବାସୀ ସମ୍ପ୍ରଦାୟଭୁକ୍ତ ସୌରା, କନ୍ଧ, ପରଜା, କୋହ୍ଲ, ଗାଦବା, ହୋ ପ୍ରଭୃତି ଶାଖା ଗୋଷ୍ଠୀର ଶାସନାଧୀନ ଥିଲା ସେତେବେଳର ତଦନ୍ତ ଭାଷାଭାଷୀଙ୍କ ଦ୍ୱାରା ପ୍ରଦତ୍ତ ନାମ । ଇତର ଭାଷାଭାଷୀ ଶାସକ ହୋଇଥିଲେ ଆଦିବାସୀ ଭାଷାରେ ନାମକରଣ ସମ୍ଭବ ହୁଅନ୍ତା ନାହିଁ । ଏ ଅନୁମାନକୁ ପ୍ଲିନି ସାହେବଙ୍କ ଉକ୍ତି ମଧ୍ୟ ସମର୍ଥନ କରେ । ସେ ଲେଖିଛନ୍ତି-ଗଙ୍ଗାନଦୀର ଗୋଟିଏ ପାର୍ଶ୍ୱରେ 'କଲିଙ୍ଗ୍' ନାମରେ ଆଦିବାସୀ ଗୋଷ୍ଠୀ ବାସକରୁଥିଲେ । ଏଣୁ ଜାତିର ବାସସ୍ଥଳୀ ଜାତିର ନାମାନୁସାରେ ନାମିତ ହେବା ଅସମ୍ଭବ ନୁହେଁ । କାରଣ, ଦେଶ ହେଉ ବା ଗ୍ରାମ ହେଉ ତଦ୍‌ଦେଶ୍ୟ ଅଧିବାସୀଙ୍କୁ ନେଇ ନାମକରଣ ହୋଇ-ଥାଏ । ଏକଥା ବୈଦିକ ସାହିତ୍ୟରୁ ବି ଅଧ୍ୟାହାର କରିହୁଏ । ବେଦମନ୍ତ୍ରମାନଙ୍କରେ 'କଲିଙ୍ଗ' ଶବ୍ଦର ପ୍ରୟୋଗ ଯଦିଚ ଦେଖିବାକୁ ମିଳେନାହିଁ, ତଥାପି 'କଲି' ନାମକ ବନବାସୀ ଗୋଷ୍ଠୀ ଥିବାର ଉଲ୍ଲେଖ ଅଛି । ଅହି, ବଲି, ପଣି, ବୃତ୍ର, କଲି, ବଳୁ, ବନଗୁ ପ୍ରଭୃତି ଆର୍ଯ୍ୟେତର ଓ ବନବାସୀ ଶ୍ରେଣୀର ଅନ୍ତର୍ଗତ । ସେମାନଙ୍କୁ 'ଅସୁର' ଶ୍ରେଣୀର ବୋଲି କୁହାଯାଉଥିଲା । ବୋଧହୁଏ, ସେହି 'କଲି'ଶବ୍ଦ ଶବରଗୋଷ୍ଠୀର ଉଚ୍ଚାରଣ ଅନୁଯାୟୀ 'କଲିଙ୍ଗ' ରୂପେ ପରିଣତ ହୋଇପଡ଼ିଛି । ଏହି 'କଲି' ଶାଖାର କିଛିଅଂଶ ଭାରତର ପଶ୍ଚିମ ଭୂଖଣ୍ଡକୁ ପଳାଇଥିବା ମଧ୍ୟ ଅସମ୍ଭବ ନୁହେଁ । ସେଠାରେ ସେମାନେ ସ୍ଥାୟୀ ଭାବେ ବସତି ସ୍ଥାପନ କରି 'ମହାଦେବ କଲି' ନାମରେ ପରିଚିତ ହୋଇଆସୁଛନ୍ତି । ଏବେ ମହାରାଷ୍ଟ୍ର ପ୍ରଦେଶରେ ଏମାନେ ବହୁ ସଂଖ୍ୟାରେ ବସବାସ କରି ରହିଥିବା ଦେଖାଯାଏ । ଉପକୂଳବାସୀ 'କଲିଙ୍ଗ' ଶବରଙ୍କ ଭଳି ଏମାନଙ୍କ ପ୍ରଧାନ ସାଧନ ହେଉଛି ନୌକା । ନୌକା ଯୋଗେ ଏମାନେ ମତ୍ସ୍ୟ ଶିକାର କରି ଜୀବିକା ନିର୍ବାହ କରନ୍ତି । କୁହାଯାଏ, ମୂଳତଃ ସେମାନେ

କୈବର୍ତ୍ତ ବା କେଉଟ ଥିଲେ । ପରେ କିନ୍ତୁ ଇତର ସଭ୍ୟତାର ସଂସର୍ଗରେ ଆସି ବୃତ୍ତି ପରିବର୍ତ୍ତନ କରିଦେଇଛନ୍ତି । କେଉଟମାନେ କଳିଙ୍ଗର ପ୍ରାଚୀନ ଅଧିବାସୀ—ଛତିଶ ପାଟକ କୁଳ ଭିତରୁ ଅନ୍ୟତମ । ଏହା ପ୍ରସଙ୍ଗକ୍ରମେ ସ୍ପଷ୍ଟ କରାଯିବ । ସେ ଯାହାହେଉ, ଏମାନଙ୍କ ମୌଳିକ ପରଂପରା ସହିତ ଦକ୍ଷିଣ-ପୂର୍ବ-ଭାରତସ୍ଥ 'କଳିଙ୍ଗ' ଗୋଷ୍ଠୀର ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହେଉଥିବା ଯୋଗୁ ନିର୍ବିବାଦରେ କୁହାଯାଇପାରେ ଯେ ବେଦୋକ୍ତ 'କଳି'ଗୋଷ୍ଠୀ ହିଁ 'କଳିଙ୍ଗ' ନାମରେ ପରିଚିତ ହୋଇ ଆସିଛନ୍ତି ଏବଂ ତାଙ୍କରି ନାମାନୁସାରେ ଦେଶର ନାଁ ବି 'କଳିଙ୍ଗ' ହୋଇଯାଇଛି ।

ଏ ଅବସରରେ 'ଉଡ୍ର' ଶବ୍ଦ ମଧ୍ୟ ବିଚାର ପରିସରକୁ ଆସିଥାଏ । କାରଣ କଳିଙ୍ଗ, ଉଡ୍ର ଓ ଉତ୍କଳ ତିନୋଟିଯାକ ଶବ୍ଦ ସମାନ ବୋଲି ଇତିହାସ ଓ ପୁରାଣରୁ ଜଣାପଡ଼େ । ଏକା ଭୂଖଣ୍ଡ କେତେବେଳେ କଳିଙ୍ଗ, କେତେବେଳେ ଉଡ୍ର ଓ ଆଉ କେତେବେଳେ ଉତ୍କଳ ବୋଲି ନାମିତ ହୋଇଆସିଥିଲା । ପୁଣି କେତେବେଳେ କଳିଙ୍ଗ ଓ ଉତ୍କଳ କିମ୍ବା କଳିଙ୍ଗ ଉଡ୍ର ରୂପେ ବିଭକ୍ତ ହୋଇ ଦ୍ୱିବିଧ ରାଜବଂଶୀଙ୍କଦ୍ୱାରା ଶାସିତ ହେଉଥିଲା । ଏଣୁ 'ଉଡ୍ର' ଶବ୍ଦଟି କଳିଙ୍ଗର ନାମାନ୍ତର କହିବାରେ ଅସଙ୍ଗତି ନାହିଁ । 'କଳିଙ୍' ଶବ୍ଦ 'କଳିଙ୍ଗ' ରୂପେ ଉଚ୍ଚାରିତ ହେଲାପରି 'ଓଡ୍' (ଅର୍ଥ ବୃକ୍ଷ) ଶବ୍ଦ 'ଉଡ୍ର' ଭାବେ ପରିଣତ ହୋଇ-ପଡ଼ିଥିବା ମନେହୁଏ । କିନ୍ତୁ କେତେକ ଐତିହାସିକ କହନ୍ତି, 'ଉଡ୍ର' ଶବ୍ଦର ଅର୍ଥ 'ଜଳ ବହୁଳ ବା ସନ୍ତସନ୍ତିଆ ଭୂ-ଭାଗ' । ସମ୍ଭବତଃ ଏହା ନଦୀବହୁଳ ଭୂଖଣ୍ଡ ହେବାଯୋଗୁ ଉଡ୍ର ବୋଲି ପରିଚିତ ଏବଂ ସେଠାର ଅଧିବାସୀ ସେହି ନାମରେ ନାମିତ ହୋଇ-ପଡ଼ିଛନ୍ତି । ପ୍ରକୃତ ପକ୍ଷେ ଏହା ଭୂଖଣ୍ଡ ସୂଚକ ଶବ୍ଦ ପରିବର୍ତ୍ତେ ବୃତ୍ତି ସୂଚକ ବୋଲି କହିବାରେ ଅଧିକ ଯୁକ୍ତି ନହିଁ । ସେହିପରି 'ଉତ୍କଳ' ଶବ୍ଦ ମଧ୍ୟ । ଏହାର ବ୍ୟୁତ୍ପତ୍ତିଲଭ୍ୟ ଅର୍ଥ ହେଉଛି—ଉନ୍ନତ କଳାଯୁକ୍ତ । ଏ ଆଦିବାସୀ ଶବ୍ଦ ନୁହେଁ । ଏହା କେବେ କିପରି ଭାବେ 'କଳିଙ୍ଗ'ର ସମାର୍ଥବାଚୀ ଶବ୍ଦ ହେଲା ଏବଂ କେତେବେଳେ କଳିଙ୍ଗଠାରୁ ଅଲଗା ହୋଇ ସ୍ୱତନ୍ତ୍ର ରାଜ୍ୟ ରୂପେ ପରିଚିତ ହେଲା ଏବଂ ଉଡ୍ର ନାମ ଧାରଣ କଲା ତାହା ଯଥା ସ୍ଥାନରେ ବିଚାର କରାଯିବ । କିନ୍ତୁ ଏଠାରେ ଏତିକି କହିବାର କଥା, ଏ ଭୂଖଣ୍ଡ ଉଡ୍ର ଓ ଉତ୍କଳ ନାମରେ ପରିଚିତ ହେବା ବହୁପୂର୍ବରୁ 'କଳିଙ୍ଗ' ନାମରେ ପ୍ରସିଦ୍ଧି ଲାଭ କରିଥିଲା । ସଂସ୍କୃତ ପୁରାଣମାନଙ୍କରୁ ମଧ୍ୟ ଏ କଥାର ସୂଚନା ମିଳେ ।

"ଗୋଦାବର୍ଯ୍ୟାଂ ସମାରଭ୍ୟ ଯାବତ୍ ବଂଶଧରା ସରିତ୍
ମୁଖଃ କଳିଙ୍ଗଃ ଖ୍ୟାତୋଽସୌ ତୃତୀୟୋବାଽଥ ଦକ୍ଷିଣଃ ।
ବଂଶଧାରାଂ ସମାରଭ୍ୟ ଚନ୍ଦ୍ରୋପଲା (ଋଷିକୁଲ୍ୟା) ମଧ୍ୟଗିତଃ
ସତୁ ମଧ୍ୟକଳିଙ୍ଗଃ ସ୍ୟାତ୍ ବେଦ୍ୟୋବନ୍ଧୁବସୁପ୍ରଭୂ ।

ଚନ୍ଦ୍ରୋତ୍ପଲା ମୁପକ୍ରମ୍ୟ ଯାବତ୍ ଭାଗୀରଥୀ ସରତ୍
ଉତ୍କଳିଙ୍ଗଃ ସ ବଙ୍କେସ୍ତୁଃ ଯଜ୍ଞଦାନାର୍ଚ୍ଚନା କସ୍ତଃ ।"

ଏକା କଳିଙ୍ଗ ଭାଗଭାଗ ହୋଇ ଦକ୍ଷିଣ କଳିଙ୍ଗ ବା ତୃତୀୟ କଳିଙ୍ଗ, ମଧ୍ୟକଳିଙ୍ଗ ଓ ଉତ୍କଳିଙ୍ଗ ନାମରେ ପରିଚିତ ଥିବା କଥା ଏଥିରେ କୁହାଯାଇଛି । ଅନୁମାନ ହୁଏ, ପରବର୍ତ୍ତୀ କାଳରେ ତାହା ତ୍ରି-କଳିଙ୍ଗ ବା ତ୍ରି-କଳିଙ୍ଗ, ମ-କଳିଙ୍ଗ ବା ମଖଲିଙ୍ଗ ଏବଂ ଉତ୍କଳିଙ୍ଗ ବା ଉତ୍କଳଭାବେ ପରିବର୍ତ୍ତିତ ହୋଇପଡ଼ିଛି । କିନ୍ତୁ ଏହି ପରିବର୍ତ୍ତନ ପ୍ରତି ବିଶେଷ ନଜର ନଦେଇ କେତେକ ଐତିହାସିକ 'ମଖ' ଶବ୍ଦର 'ଲକ୍ଷେ' ଅର୍ଥକରି ଲକ୍ଷେ ଲିଙ୍ଗଥିବା ଯୋଗୁଁ ମଧ୍ୟକଳିଙ୍ଗ ରାଜଧାନୀର ନାମ'ମଖଲିଙ୍ଗ' ଥିଲା ବୋଲି ମନ୍ତବ୍ୟ ଦିଅନ୍ତି । ସେଥିପାଇଁ ସେଠା ମାଟିତଳେ ଇତସ୍ତତଃ ବିକ୍ଷିପ୍ତ ଭାବେ ପୋତିହୋଇ ରହିଥିବା ଶ୍ରେଷ୍ଠ ବଡ଼ ଶିବଲିଙ୍ଗ ଗୁଡ଼ିକୁ ପ୍ରମାଣରୂପେ ଗ୍ରହଣ କରନ୍ତି । କିନ୍ତୁ ବାସ୍ତବ ଦୃଷ୍ଟିରେ ବିଚାର କଲେ ଏ କଥାକୁ ସହଜରେ ବିଶ୍ୱାସ କରିହୁଏ ନାହିଁ, ବରଂ ଶବ୍ଦ ପରିବର୍ତ୍ତନ ସୂତ୍ରଧରି ଯେଉଁ ନିଷ୍ପତ୍ତିରେ ଉପନୀତ ହେବାକୁ ହୁଏ ତାହା ସତ୍ୟର ଅଧିକ ନିକଟବର୍ତ୍ତୀ ମନେହୁଏ ।

ଭାବପ୍ରକାଶନର ବାହନ ହେଉଛି ଭାଷା । ଭାଷାର ସରଳୀକରଣ ବା ସଂକ୍ଷିପ୍ତୀକରଣ ମଣିଷର ସହଜାତ ପ୍ରବୃତ୍ତି । ତେଣୁ ଦୀର୍ଘକୁ ହ୍ରସ୍ୱ, ବିଶ୍ଳିଷ୍ଟକୁ ସଂଶ୍ଳିଷ୍ଟ, କଠିନକୁ କୋମଳ ଭାବେ ଉଚ୍ଚାରଣ କରି ସେ ଭାବ ବ୍ୟକ୍ତ କରିଆସିଥାଏ । ସେହି ନିୟମରେ ତୃତୀୟ କଳିଙ୍ଗ, ମଧ୍ୟକଳିଙ୍ଗ ଓ ଉତ୍ତର କଳିଙ୍ଗର ସଂକ୍ଷିପ୍ତୀକୃତ ରୂପ ତ୍ରିକଳିଙ୍ଗ, ମଖଲିଙ୍ଗ ଓ ଉତ୍କଳିଙ୍ଗ କହିବା ଅନ୍ୟାୟ ନୁହେଁ । ଇଦୃଶ ସଂକ୍ଷିପ୍ତୀକରଣ ପଦ୍ଧତି ପ୍ରାୟ ସର୍ବତ୍ର ଅନୁସୃତ । ପ. ଜର୍ମାନୀ, ଦ. କୋରିଆ, ପୂ. ବଙ୍ଗ, U.N.O., U.S.A. ପରି ପ୍ରାଚୀନ ଭାରତବର୍ଷରେ ମଧ୍ୟ ଏ ପ୍ରଣାଳୀ ଅନୁସୃତ ହେଉଥିଲା । ତା'ନହେଲେ ସଙ୍ଗୀତ ଶାସ୍ତ୍ରର ଷଡ଼ଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ, ଧୈବତ ଓ ନିଷାଦ ସ୍ଥାନରେ ସା, ରି, ଗା, ମା, ପା, ଧା, ନି, ବର୍ତ୍ତମାନ ପ୍ରଯୁକ୍ତ ହୁଅନ୍ତା ନାହିଁ । ଏଣୁ କୁହାଯାଇପାରେ, ତୃତୀୟ-କଳିଙ୍ଗ, ମଧ୍ୟ-କଳିଙ୍ଗ, ଓ ଉତ୍ତର-କଳିଙ୍ଗର ସଂକ୍ଷିପ୍ତୀକୃତ ରୂପ ହେଉଛି ତ୍ରିକଳିଙ୍ଗ, ମଖଲିଙ୍ଗ ଓ ଉତ୍କଳିଙ୍ଗ ବା ଉତ୍କଳ ।

ଆଗରୁ କୁହାଯାଇଛି, ବିନ୍ଧ୍ୟାଚଳ ଆଡ଼ୁ 'କଳିଙ୍ଗ' ନାମକ ଆଦିବାସୀ ଗୋଷ୍ଠୀ ଗଙ୍ଗା-ନଦୀର ଏ ପଟକୁ ଉଠି ଆସିଥିଲେ । ଇତିହାସ କହେ, ସ୍ଥାନାନ୍ତରଗତ ଦ୍ରମିଳ ସମ୍ପ୍ରଦାୟର ବଳପୂର୍ବକ ଆକ୍ରମଣ ଯୋଗୁ ତାହା ସଂଘଟିତ ହୋଇଥିଲା । ଅବଶ୍ୟ ସେତିକ କରିବା ପାଇଁ ସେମାନଙ୍କୁ ଯେ ଦୀର୍ଘ ସମୟ ଲାଗିଥିବ ସେଥିରେ ସନ୍ଦେହ ନାହିଁ । କାରଣ 'କଳିଙ୍ଗ' ପରି ଏକ ଦୁର୍ଦ୍ଧର୍ଷ ଜାତିକୁ ସ୍ଥାନଚ୍ୟୁତ କରାଇବା ସହଜ ବ୍ୟାପାର ନୁହେଁ । ଦୈବଯୋଗରୁ ତାହା ଘଟିଥିଲେ ମଧ୍ୟ ସେମାନଙ୍କ ଉଗ୍ର ସାହସିକତା ଆଦୌ କ୍ଷୁଣ୍ଣ ହୋଇନଥିଲା, ବରଂ ଅଧିକ ଉଚ୍ଛୃଙ୍ଖଳ ହେବାର ମାର୍ଗ ପରିଷ୍କାର କରିଥିଲା । ଯେଉଁ ଜାତି ଶତାବ୍ଦୀ ଶତାବ୍ଦୀ ଧରି ଅପେକ୍ଷାକୃତ ବୁଦ୍ଧିମାନ୍ ଶତ୍ରୁର ପ୍ରବଳ ଆକ୍ରମଣର ସମ୍ମୁଖୀନ ହୋଇ ତାଙ୍କର ଅବାରିତ

ଗତିସ୍ରୋତକୁ ଅବରୁଦ୍ଧ କରିପାରିଥିଲେ, ସେ ଜାତି କୌଣସି କାରଣରୁ ପରାଜିତ ହୋଇ ଆସି ଯେତେବେଳେ ନୂତନ ଅଞ୍ଚଳକୁ ବସତି ସ୍ଥାପନ ଉପଯୋଗୀ ମନେକରିଥିବେ, ସେତେବେଳେ ସେହି ଅଞ୍ଚଳର ବିସ୍ତାର ଓ ପ୍ରସାର ଲାଗି ମନପ୍ରାଣ ଢାଳିଥିବେ, ଏଥିରେ ସନ୍ଦେହ ରହି ନପାରେ । କିନ୍ତୁ ଯାହାହେଲେ ମଧ୍ୟ ଜନ୍ମଭୂମି ଭାରତବର୍ଷରେ ସ୍ଥାୟୀଭାବେ ବସବାସ କରିଆସିଥିବା ଆଦିମ ମଣିଷ ଗୋଷ୍ଠୀ ଘଟଣା ଚକ୍ରରେ ପଡ଼ି ଏକ ଯାଯାବର ଜାତିରେ ପରିଣତ ହୋଇପଡ଼ିଲା ।

ବାସ୍ତବରେ ସେମାନେ ଥିଲେ ଭାରତ ଭୂମିର ପ୍ରଥମ ଅଧିବାସୀ, ଯେଉଁମାନେ ପ୍ରାଚୀନ ପ୍ରସ୍ତରଯୁଗ ଅତିକ୍ରମ କରି ନୂତନ ପ୍ରସ୍ତର ଯୁଗର ଦାୟାଦ ଭାବେ ଆପଣାକୁ ପ୍ରତିଷ୍ଠିତ କରିଥିଲେ । ସେହି ଯୁଗ ଖ୍ରୀଷ୍ଟପୂର୍ବ ପାଞ୍ଚ ହଜାର ବର୍ଷରୁ ତିନି ହଜାର ବର୍ଷ ଭିତରେ ବୋଲି ଇତିହାସ କହେ । ସେ ସମୟରେ ସେମାନେ ଦୈନନ୍ଦିନ ଜୀବନର ପ୍ରୟୋଜନୀୟତା ମେଣ୍ଟାଇବା ପାଇଁ ବିଭିନ୍ନ ପ୍ରକାର ପନ୍ଥା ଉଦ୍ଭାବନପୂର୍ବକ ସଭ୍ୟତା ଦିଗକୁ ଆସ୍ତେ ଆସ୍ତେ ଅଗ୍ରସର ହେଉଥିଲେ । ପ୍ରାକୃତିକ ବୃକ୍ଷଲତାରୁ ଫଳମୂଳ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ଅନ୍ୟ ଉପାୟରେ ମଧ୍ୟ ସେଗୁଡ଼ିକର ଉତ୍ପାଦନ ପାଇଁ ଯତ୍ନର ଅଭାବ ନଥିଲା । କୃଷିଦ୍ୱାରା ଶସ୍ୟ ଉତ୍ପାଦନ, ମାଂସାଦି ଉଦ୍ଦେଶ୍ୟରେ ପଶୁପାଳନ, ଅଗ୍ନିସିଦ୍ଧ ଆହାର ଲକ୍ଷ୍ୟରେ ମୃତ୍ତିକା ପାତ୍ରାଦି ନିର୍ମାଣ ଏବଂ ଝଡ଼ବର୍ଷାରୁ ରକ୍ଷା ପାଇବା ସକାଶେ କୁଟୀର ନିର୍ମାଣ ପ୍ରଭୃତିର କୌଶଳ ଆୟତ୍ତ କରିଥିଲେ । ସ୍ୱା' ବ୍ୟତୀତ ଅପେକ୍ଷାକୃତ ଶିକ୍ଷିତ ବଳଶାଳୀ ଶତ୍ରୁ ସହିତ ଦୀର୍ଘ କାଳର ସଂଘର୍ଷ ଓ ସଂସ୍ପର୍ଶ ନୂତନ କୌଶଳମାନ ଶିକ୍ଷାଦେବାରେ ବିଶେଷ ସହାୟକ ଥିଲା । ଏ ସବୁ ଯୋଗୁ ପରାଜିତ ହେଲେ ସୁଦ୍ଧା 'କଳିଙ୍ଗ' ଜାତିର ମେରୁଦଣ୍ଡ ପୂର୍ବପରି ସୁଦୃଢ଼ ରହିଥିଲା ।

ଶତ୍ରୁଗୋଷ୍ଠୀ ସହିତ ଦୀର୍ଘ ସମୟ ସଂଘର୍ଷ ମଧ୍ୟରେ ଏମାନେ କେତେଥର ଯେ ଜୟ-ପରାଜୟର ସମ୍ମୁଖୀନ ହୋଇଥିବେ କହିହୁଏ ନାହିଁ । ଜାତି-ଜାତି ବା ଦେଶ-ଦେଶ ମଧ୍ୟରେ ସଂଘର୍ଷ ଘଟିଲେ ଆଜି ଗୋଟିଏ ପକ୍ଷ ଜୟ ବା ପରାଜୟ ବରଣ କରେ ତ କାଲି ଅପର ପକ୍ଷ ଅନୁରୂପ ଅବସ୍ଥା ଅନୁଭବ କରେ । ଏଥିଯୋଗୁ ଯୁଦ୍ଧର ମୀମାଂସା ସହଜରେ ହୋଇପାରିନଥାଏ । ଆଲୋଚ୍ୟ ସ୍ଥଳରେ ବି ଏହାର ବ୍ୟତିକ୍ରମ ଘଟିନଥିବ । ଆକ୍ରାନ୍ତ କଳିଙ୍ଗ ଜାତି ବହୁବାର ଜୟ ପରାଜୟର ସୁଖ ଦୁଃଖ ଅଙ୍ଗରେ ଲଭିଥିବେ । କେତେବେଳେ ଘୋର ବିକ୍ରମରେ ଶତ୍ରୁ ଶିବିର ଉପରେ ଆକ୍ରମଣ କରି ପୃଷ୍ଠଭଙ୍ଗ ଦେବାପାଇଁ ବାଧ୍ୟ କରିଥିବେ ତ ପୁଣି କେତେବେଳେ ଶତ୍ରୁର ଅଭିନବ ଆକ୍ରମଣରେ ବ୍ୟତିବ୍ୟସ୍ତ ହୋଇ ପଛଘୁଞ୍ଚା ଦେଇ ଆସିଥିବେ । ଆଜି ଗଙ୍ଗା ପାରିହୋଇ ଏ ପଟକୁ ପଳାଇ ଆସିଲେଣି ତ କାଲି ପୁଣି ସୁଯୋଗ ଉଣ୍ଡି ଶତ୍ରୁ ଛାଉଣୀ ଧ୍ୱଂସ କରୁଥିଲେ । ଦୀର୍ଘକାଳବ୍ୟାପୀ ସମରରେ ଏତାଦୃଶ ଉତ୍ଥାନ-ପତନ ଅବଶ୍ୟମ୍ଭାବୀ । କିନ୍ତୁ ଯାହାହେଉ ଶେଷରେ 'କଳିଙ୍ଗ'ମାନେ ଆଦି

ବାସଭୂମି ବନ୍ଧ୍ୟମାଳ ଅଞ୍ଚଳ ପରିତ୍ୟାଗ କରି ସବୁଜବନ ପାଇଁ ଏ ପଟକୁ ଉଠିଆସିଲେ ଓ ନୂତନ ଜୀବନ ଆରମ୍ଭ କଲେ ।

କଥା ଅଛି ବିପଦ ମଣିଷର ପରମ ଗୁରୁ । 'କଳିଙ୍ଗ' ଆପଣା ଜନ୍ମମାଟି ଛାଡ଼ିବା ପୂର୍ବରୁ ଯେଉଁ ଦାରୁଣ ବିପଦର ସମ୍ମୁଖୀନ ହୋଇଥିଲେ ତାହା ପରୋକ୍ଷରେ ତାଙ୍କୁ ପୂର୍ବାପେକ୍ଷା ଅଧିକ ଶକ୍ତିଶାଳୀ କରି ଗଢ଼ି ତୋଳିବାରେ ସହାୟକ ହେଲା । ଅପରପକ୍ଷରୁ ଘୃଣ୍ୟବୀର୍ଯ୍ୟପୂର୍ଣ୍ଣ ଯୁଦ୍ଧକୌଶଳ ଶିଖି ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବାକୁ ଯେପରି ସାମର୍ଥ୍ୟ ଅର୍ଜନକଲେ, ସେହିପରି ବିଚକ୍ଷଣ ସାହସ ପ୍ରଦର୍ଶନ ପୂର୍ବକ ବୈରିବିନାଶ କରିବାରେ ପାରଙ୍ଗମ ହୋଇ-ପାରିଲେ । ତୃଷ୍ଣାସ୍ତେ, ଗଭୀର ଜଳସ୍ରୋତ ପାର ହେବାପାଇଁ ଯେଉଁ ଭାସମାନ ଉପକରଣ ଆବଶ୍ୟକ ତାହା ଉତ୍ପାଦନ କରିବାର ଜ୍ଞାନ-କୌଶଳ ସଂପାଦନ କରିଥିଲେ । ଅଜ୍ଞାତ ସ୍ଥଳରେ ବସତି ସ୍ଥାପନ ପୂର୍ବକ ଜୀବିକାର୍ଜନ ପାଇଁ ବିଚିତ୍ର ନୂତନ ପନ୍ଥାର ଉଦ୍‌ଭାବନ କରିବାରେ କୁଶଳତା ଅର୍ଜନ କରିଥିଲେ । ପଶ୍ଚମେ, ପରାଭବଜନିତ ଅନୁଭୂତି ଯୋଗୁ ଆପଣାକୁ ଉନ୍ନତତର ଅସ୍ତ୍ରଶସ୍ତ୍ରାଦିରେ ସୁସଜ୍ଜିତ କରି ଗଢ଼ି ତୋଳିଥିଲେ । ଫଳରେ ଉତ୍ତରକାଳୀନ ଭାରତବର୍ଷର ଇତର ପ୍ରାନ୍ତୀୟ ଅଧିବାସୀଙ୍କ ମଧ୍ୟରେ 'କଳିଙ୍ଗାଃ ସାହସିକାଃ' ଭଳି ପ୍ରବାଦର ଯୋଗ୍ୟତମ ଅଧିକାରୀ ହୋଇପାରିଥିଲେ ।

ସ୍ୱଇଚ୍ଛାରେ ହେଉ ବା ଅନିଚ୍ଛାରେ ହେଉ ନୂତନ ସ୍ଥାନକୁ ବାସସ୍ଥାନ ରୂପେ ବାଛି ନେଇଥିବା କଳିଙ୍ଗ-ଶବର କୌଳିକ ପରମ୍ପରା ଓ ସଂସ୍କୃତିକୁ ସଙ୍ଗରେ ଆଣିବାକୁ ଭୁଲି ନଥିଲେ । ଜାତି ସଙ୍ଗେ ଜାତୀୟଭାଷା, ଜାତୀୟସଙ୍ଗୀତ, ଜାତୀୟ ଦେବତା, ଜାତୀୟ ଧର୍ମ, ଆଚାର ବିଚାର ଯେ ସବୁ ଆସିଥିବ, କହିବା ଅନାବଶ୍ୟକ । ତା'ଛଡ଼ା ଯୁଦ୍ଧ ଘନଘଟାରୁ ଉଦ୍ଭୂତ କଷ୍ଟ-ତିକ୍ତ ଅଭିଜ୍ଞତା ତାହାର ଜାତୀୟ ଉନ୍ମାଦନାକୁ ଅଧିକ ତେଜସ୍କର କରିଥିବା ସମ୍ଭାବନା । ଏକ ଦୁର୍ଦ୍ଧର୍ଷ ବୀର ଜାତି କୌଣସି କାରଣରୁ ପରାଜିତ ହୋଇଗଲେ ଶତ୍ରୁର ପଦାନତ ହୋଇ ରହିବା ତା ପକ୍ଷେ ସମ୍ଭବ ନୁହେଁ । ପକ୍ଷାନ୍ତରେ ସେ ନୂତନ ଦିଗନ୍ତର ସନ୍ଧାନରେ ଲାଗିପଡ଼େ । ଜାତିକୁ ପୁନଃ ପ୍ରତିଷ୍ଠିତ କରିବାପାଇଁ ନୂଆ ନୂଆ ମାଗି ଅନୁସରଣ କରେ । ଏହାହିଁ ଘଟିଛି ଆଦିମ କଳିଙ୍ଗ ଶବର ଭାଗ୍ୟରେ ଯାହାଯୋଗୁ ସେ କେବଳ ଗୋଟିଏ ସ୍ଥାନରେ ଆବଦ୍ଧ ନରହି ସଦଳବଳ ଅଭିଯାନ ଚଳାଇଛି ଆଗକୁ ଆଗକୁ—ଗଙ୍ଗା ନଦୀର ସଂକୀର୍ଣ୍ଣ ତଟଭୂମି ଅଞ୍ଚଳରୁ ବଣ ଜଙ୍ଗଲ ଘେରା ଦକ୍ଷିଣ-ପୂର୍ବ ଉପକୂଳ ଆଡ଼କୁ । ସେଥିପାଇଁ କେତେ ନଦୀ, କେତେ ପର୍ବତ, କେତେ ଝରଣା, କେତେ ପ୍ରାନ୍ତର ଅତିକ୍ରମ କରିବାକୁ ପଡ଼ିଥିବ କିଏ କହିବ ! ସେତେବେଳକୁ ସେ ସ୍ଥାନମାନ କ ନାମରେ ନାମିତ ଥିଲେ ତା'ବି ଜଣାନାହିଁ । କାରଣ ଏହା ଶହେ ଦୁଇଶ ନୁହେଁ ଦୀର୍ଘ ସହସ୍ରାଧିକ ବର୍ଷ ତଳର କଥା—ଆର୍ଯ୍ୟାବର୍ତ୍ତ ପ୍ରତିଷ୍ଠାର ବହୁ ପୂର୍ବର କଥା ।

ଯାହାହେଉ ଆଦିବାସୀ 'କଳିଙ୍ଗ'କ୍ରମଶଃ ଦକ୍ଷିଣ ଆଡ଼କୁ ଅଗ୍ରସର ହେଲେବେଳେ ସେଠା ଶ୍ୟାମଳ ଘନବନାନୀ ସଂକୁଳ ବିଶାଳ ସମୁଦ୍ରବେଳା ତାଙ୍କୁ ନିଶ୍ଚିତ ଭାବେ ଆକୃଷ୍ଟ

କରିଥିବ । ଏକେ ପଶୁପକ୍ଷୀ ଶିକାର ଓ ଫଳମୂଳ ସଂଗ୍ରହ ପାଇଁ ବଣଜଙ୍ଗଲ ଯେପରି ସେମାନଙ୍କ ଦୃଷ୍ଟିରେ ଉପଯୁକ୍ତ କ୍ଷେତ୍ର, ଜଳଜାତ ଦ୍ରବ୍ୟ ଓ ମତ୍ସ୍ୟ ସଂଗ୍ରହ ନିମନ୍ତେ ସମୁଦ୍ରବେଳା ସେହିପରି ସୁବିଧାଜନକ । ଏହି ଅଭିପ୍ରାୟରେ ବହୁ ଗଙ୍ଗାତଟବାସୀ 'କଳିଙ୍ଗ' ଏପଟକୁ ମାଡ଼ି ଆସିଥିବାର ସମ୍ଭାବନା । ଯୋଗକୁ ଯେଉଁ ବାଟ ଦେଇ ସେମାନେ ଅଗ୍ରସର ହେଉଥିଲେ ସେଠା ଅଧିବାସୀଙ୍କ ପକ୍ଷରୁ କୌଣସି ପ୍ରତିରୋଧର ସମ୍ମୁଖୀନ ହେଉ ନଥିଲେ, କାରଣ ସେତେବେଳକୁ ଏ ପ୍ରାନ୍ତରେ ସେମାନଙ୍କ ସମଧର୍ମୀ ଶବର ଛଡ଼ା ଅନ୍ୟ କେହି ବାସକରୁ-ନଥିଲେ । କେବଳ ଆଦିବାସୀ ଗୋଷ୍ଠୀ ପ୍ରାଚୀନ ପ୍ରସ୍ତର ଯୁଗରୁ ଆରମ୍ଭ କରି ଏପର୍ଯ୍ୟନ୍ତ ରହିଆସିଥିବା କଥା ପଣ୍ଡିତମାନେ କହନ୍ତି । ଅବଶ୍ୟ ପରଯୁଗରେ ଶବର, କନ୍ଧ, ମୁଣ୍ଡା, ଗଣ୍ଡ, ଗଦବା, କୋହ୍ଲ ପ୍ରଭୃତି ନାମରେ କ୍ଷୁଦ୍ର କ୍ଷୁଦ୍ର ଶାଖାରେ ସେମାନେ ବିଭକ୍ତ ହୋଇପଡ଼ିଥିବା ଦେଖାଯାଏ । ମନେହୁଏ ପୂର୍ବାଧ୍ୟୁଷିତ ଆଦିବାସୀଙ୍କ ମଧ୍ୟରେ ସେତେବେଳକୁ ଦେଶାତ୍ମବୋଧ ଭାବ ସୃଷ୍ଟି ହୋଇନଥିଲା । ସେମାନେ ପାହାଡ଼ ଶିଖର, ଗିରି ଗହ୍ୱର ଏବଂ ପଥରସନ୍ଧିମାନଙ୍କରେ ରହି ପାରମ୍ପରିକ ପଦ୍ଧତିରେ ଜୀବନ ଯାପନ କରୁଥିଲେ । ସେମାନଙ୍କ ସାମାଜିକ ଜୀବନ ଧାରାରେ ତାଦୃଶ ଆଖିଦୃଶିଆ ପାର୍ଥକ୍ୟ ନଥିଲା । କହିବା ଅନାବଶ୍ୟକ, ସୁଦୂର ବ୍ରାଜିଲ ଦେଶର ବନବାସୀ 'ଏନାମେମି'ଙ୍କ ଠାରୁ ଓଡ଼ିଶାର ପର୍ବତ ଶିଖରବାସୀ 'ଲାଞ୍ଜିଆ ସୌରା'ଙ୍କ ପର୍ଯ୍ୟନ୍ତ ପୃଥିବୀର ସମସ୍ତ ପ୍ରସ୍ତରଯୁଗୀୟ ଆଦିବାସୀଙ୍କ ଜୀବନ ଯାତ୍ରା ପ୍ରଣାଳୀ ପ୍ରାୟ ସମାନ ଧରଣର । ଏଣୁ ସେମାନଙ୍କ ସାମାଜିକ ଚଳଣିରେ ସାମଞ୍ଜସ୍ୟ ରହିବା ସ୍ୱାଭାବିକ୍ । ସେଥିଯୋଗୁ ନବ ପ୍ରବିଷ୍ଟ ଯାଯାବର କଳିଙ୍ଗ ଗୋଷ୍ଠୀ ସହିତ ସ୍ଥାନୀୟ ଅଧିବାସୀଙ୍କ ସାଯୁଜ୍ୟ ମିଶ୍ରଣ ଘଟିବାରେ କୌଣସି ପ୍ରତିବନ୍ଧକ ନଥିଲା ।

ଏବେ ଦେଖିବାର କଥା, କଳିଙ୍ଗମାନେ ଏ ଭୂଖଣ୍ଡରେ ଅନୁପ୍ରବେଶ କରି କେଉଁ କେଉଁ ଅଞ୍ଚଳ ପର୍ଯ୍ୟନ୍ତ ଅଗ୍ରସର ହୋଇଥିଲେ ଏବଂ କେଉଁ କେଉଁ ଅଞ୍ଚଳକୁ ଅଧିକାରଭୁକ୍ତ କରି-ରଖିଥିଲେ । ଏ ସମ୍ବନ୍ଧରେ କୌଣସି ବିଧିବଦ୍ଧ ପ୍ରମାଣ ଏପର୍ଯ୍ୟନ୍ତ ହସ୍ତଗତ ହୋଇ ନାହିଁ । ଶିଳାଲେଖ, ତାମ୍ରପଟ୍ଟା, ମୁଦ୍ରା, ଅଭିଲେଖ, ପ୍ରାଚୀନ ମାଟି ପାତ୍ରର ଉପକରଣ ଯେତିକି ଆବିଷ୍କୃତ ହୋଇଛି ସେଥିରେ ଏହାର କୌଣସି ସ୍ପଷ୍ଟ ସଙ୍କେତ ନାହିଁ । ପରବର୍ତ୍ତୀ କେତେକ ଧାର୍ମିକ ଓ ସାହିତ୍ୟିକ କୃତିରେ ଯେଉଁ ଅସ୍ପଷ୍ଟ ବର୍ଣ୍ଣନାମାନ ରହିଛି ତହିଁରୁ ଯାହାକିଛି ଅଧାହାର କରିବାକୁ ହୁଏ । ତାହାହିଁ ସ୍ୱାଭାବିକ । କାରଣ ଯେଉଁ ସମୟରେ କଳିଙ୍ଗ ରାଜ୍ୟର ଭିତ୍ତି ସ୍ଥାପନ ହେଲା ତାହା କେବଳ ଶହେ ଦୁଇଶହ କିମ୍ବା ହଜାରେ ଦୁଇହଜାର ବର୍ଷ ତଳର କଥା ନୁହେଁ । ସିନ୍ଧୁ ଉପତ୍ୟକାରେ ଦ୍ରାବିଡ଼ ସଭ୍ୟତାର ଅଭ୍ୟୁଦୟ ଘଟିଲା-ବେଳକୁ ଦକ୍ଷିଣ-ପୂର୍ବଭାଗ ବିସ୍ତୃତ ମାଳଭୂମିରେ ପ୍ରସ୍ତର ଯୁଗର ଆଦିବାସୀ ସଭ୍ୟତା ପକ୍ଷ ବିସ୍ତାର କରିସାରିଥିଲା । ଆଦିବାସୀ ଗୋଷ୍ଠୀର 'କଳିଙ୍ଗ' ନାମକ ଶାଖାଟିଏ ବିନ୍ଧ୍ୟାଞ୍ଚଳ ଲଗାଏତ ଗଙ୍ଗାନଦୀ କୂଳ ପର୍ଯ୍ୟନ୍ତ ବିସ୍ତୃତ ହୋଇ ରହିଥିଲେ । ସୈନ୍ଧବ ଜାତିର ଉତ୍ପାତ

ସହିନପାରି ସେମାନେ ଗଙ୍ଗାନଦୀର ଏପାଖକୁ ଉଠିଆସି ଶବରାଞ୍ଚଳ ମଧ୍ୟରେ ଅନୁପ୍ରବେଶ କଲେ ଓ ସ୍ଥାନୀୟ ଅଧିବାସୀଙ୍କ ସହ ଏକାକାର ହୋଇ, ଶବର ଭୂମିକୁ କଳିଙ୍ଗ୍ ନାମରେ ନାମିତ କରିଥିଲେ । କେତେଯାଏଁ ଏହାର ସୀମା ସରହଦ ଥିଲା, ଆହାନ୍ତ କଣ ଥିଲା, ଗ୍ରାମ ନଗର ସଂଖ୍ୟା କେତେ ଥିଲା, ତାହା ଅବଶ୍ୟ ସ୍ପଷ୍ଟ ଜଣାପଡ଼େ ନାହିଁ । ତଥାପି ଉପକୂଳର ଆହାନ୍ତ ସ୍ଥଳ-ମାଳର ବିସ୍ତୃତି କମ୍ ନଥିଲା । ଏ ସମ୍ବନ୍ଧରେ ଅଣଭାରତୀୟ ବିଦେଶୀ ଲେଖକମାନେ ଯେଉଁ ସୂଚନା ଦେଇଯାଇଛନ୍ତି ସେଥିରୁ ବେଶ୍ ଅନୁମାନ କରିହୁଏ ।

'ଚୀନ୍'ଦେଶର ଇତିହାସ ଅନୁଧ୍ୟାନ କଲେ ଜଣାପଡ଼େ, ଦକ୍ଷିଣପୂର୍ବ ଏସିଆରେ ଭାରତୀୟ ସଭ୍ୟତାର ବିସ୍ତାର ପାଇଁ କୁଂଲୁଙ୍ଗ୍ (Kunlum) ନାମକ ଏକ ଜାତି ବିଶିଷ୍ଟ ଭୂମିକା ଗ୍ରହଣ କରିଥିଲେ । ସେମାନଙ୍କ ଭାଷା, ସଂସ୍କୃତି, ଆଚାର ବିଚାର ତତ୍କାଳୀନ ଦକ୍ଷିଣ ଏସିଆ ଅଧିବାସୀଙ୍କୁ ଅତ୍ୟନ୍ତ ଆକୃଷ୍ଟ କରିଥିଲା । ସେମାନଙ୍କ ମଧ୍ୟରୁ କେତେକ କୁଆଡ଼େ ଜଳଦସ୍ୟୁରୂପେ ଗଭୀର ସମୁଦ୍ର ମଧ୍ୟରୁ ଅନ୍ୟାନ୍ୟ ଜଳଯାତ୍ରୀଙ୍କ ଧନରତ୍ନାଦି ଲୁଟି ନେଉଥିଲେ, ସେମାନଙ୍କ କବଳରୁ ରକ୍ଷାପାଇବା କଠିନ ବ୍ୟାପାର ଥିଲା । ଅବଶ୍ୟ ସେ ଜାତି ମୂଳତଃ କେଉଁଠିକା ଅଧିବାସୀ ଥିଲେ, ସେ ସମ୍ବନ୍ଧରେ ବହୁଦିନ ପର୍ଯ୍ୟନ୍ତ ଐତିହାସିକମାନେ ସନ୍ଦେହରେ ପଡ଼ିଥିଲେ । କିନ୍ତୁ ବର୍ତ୍ତମାନ ଅଧିକାଂଶଙ୍କ ମତ ହେଉଛି ସେମାନେ 'କଳିଙ୍ଗ୍' ଥିଲେ । ଚୀନା ଉଚ୍ଚାରଣରେ 'କଳିଙ୍ଗ୍' ଶବ୍ଦ 'କୁଂଲୁଂ' ହୋଇଥିବା ବିଚିତ୍ର ନୁହେଁ । ବିଶିଷ୍ଟ ପୁରାତତ୍ତ୍ୱବିତ୍ ଡକ୍ଟର ହିମାଂଶୁଭୂଷଣ ସରକାର ତାଙ୍କର Cultural Relations—"India and South East Asian Culture" ବହିରେ ସେ କଥା ପ୍ରମାଣିତ କରିଛନ୍ତି । ଖାଲି ସେତିକି ନୁହେଁ, ଯବ ଦ୍ୱୀପରେ ବାସକରି ରହିଥିବା ଏକ ସମ୍ପ୍ରଦାୟ ଯେଉଁମାନଙ୍କୁ ଚୀନା ଲେଖକମାନେ 'ହୋଲିଙ୍ଗ୍, (Ho-ling) ବୋଲି କହନ୍ତି ସେମାନେ ବି କଳିଙ୍ଗ ଅଧିବାସୀଛଡ଼ା ଅନ୍ୟ କେହି ନୁହନ୍ତି ବୋଲି ପ୍ରମାଣ କରାହୋଇଛି । ସେମାନେ ହିଁ ଯବ ଦ୍ୱୀପରେ ରହି ଆପଣାର ସଭ୍ୟତା ଓ ସଂସ୍କୃତି ବିସ୍ତାର କରିଥିଲେ । ଏହା ଛଡ଼ା, ଖ୍ରୀଷ୍ଟପର ଦ୍ୱିତୀୟ ଶତାବ୍ଦୀରେ ଇଜିପ୍ଟବାସୀ 'କ୍ଲାଉଡ଼ିଅସ୍ ଟଲେମି' (Cloudios Tolemy) ତାଙ୍କର ବିଶ୍ୱ ପ୍ରସିଦ୍ଧ ପୃଥିବୀ ମାନଚିତ୍ରରେ ଭାରତ ସମୁଦ୍ର ଉପକୂଳ ବନ୍ଦରମାନଙ୍କର ଯେଉଁ ବର୍ଣ୍ଣନା ପ୍ରଦାନ କରିଛନ୍ତି ସେଥିରେ 'କଳିଙ୍ଗ' ରାଜ୍ୟର ଅବସ୍ଥିତି ଓ ସେଠା ବନ୍ଦରଗୁଡ଼ିକର ବାଣିଜ୍ୟପୋତମାନ କିପରି ଅବାଧରେ ଚଳାଚଳ କରୁଥିଲା ତାହାର ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ତାଙ୍କ କହିବାରେ ଭାରତର ଦକ୍ଷିଣପୂର୍ବ ଉପକୂଳରେ ଚଉଦଟି ବ୍ୟବହାରୋପଯୋଗୀ ବନ୍ଦର ବହୁପୂର୍ବରୁ ରହିଆସିଥିଲା । ସେଗୁଡ଼ିକ 'କୋସବା' ଠାରୁ 'ପାଲୁର୍' ମଧ୍ୟରେ ଅବସ୍ଥିତ ଥିଲା । ଏବର ମେଦିନୀପୁର ଜିଲ୍ଲାର ଦକ୍ଷିଣ ଭାଗର ନାମ'କୋଯବା' ଥିଲା ବୋଲି ତତ୍ତ୍ୱବିଦ୍-ମାନେ କହନ୍ତି । ତା' ହେଲେ ମେଦିନୀପୁରଠାରୁ ଗଞ୍ଜାମ ଜିଲ୍ଲାର 'ପାଲୁର୍' ପର୍ଯ୍ୟନ୍ତ

ସୁଦୀର୍ଘ ବେଳା ଭୂମି ମଧ୍ୟରେ ଚଉଦଟି ବନ୍ଦରରୁ ନୌକା ଚଳାଚଳ କରୁଥିଲାବୋଲି କୁହାଯାଇପାରେ । ବନ୍ଦର ଗୁଡ଼ିକର ନାମ ହେଲା, ୧-କୋସବା, ୨-ଆଡ଼ାମସ୍ ୩-କେବଲ୍, ୪-ଦୋସରନ୍, ୫-ମିନାଗ୍ରର, ୬-ମପୋର, ୭-ଭାଇଣ୍ଡିସ୍, ୮-ସିପ୍ପର୍ଗ, ୯-କୋଟବାର ୧୦-ମାନଦା, ୧୧-କନ୍ନାଗର, ୧୨-କଟିକର୍ଦମ୍, ୧୩-ଦନ୍ତଚେନା, ୧୪-ପାଲୁର୍ । ଏ ସବୁ ଯେ ସେତେବେଳର ପ୍ରକୃତ ନାମ ହୋଇଥିବ ସନ୍ଦେହ ନାହିଁ । କାରଣ 'ପାଲୁର୍' ଏବେସୁଦ୍ଧା ପ୍ରାଚୀନ ବନ୍ଦର ରୂପେ ଜନଶ୍ରୁତିରେ ରହି ଆସିଛି । 'ପାଲୁର୍' ବୋଧହୁଏ ସେ କାଳର ଏକ କାଳିଙ୍ଗୀ ଭାଷାର ଶବ୍ଦ ଥିଲା । ବର୍ତ୍ତମାନ ଆମେ ତାର ପ୍ରକୃତ ଅର୍ଥ ନ ବୁଝି 'ଦନ୍ତପୁର' ବୋଲି ଅର୍ଥାନ୍ତର କରିବାକୁ ଯାଉ । ତେଲୁଗୁ ଭାଷାରେ 'ପାଲୁ' ଅର୍ଥ ଦାନ୍ତ ଏବଂ 'ଉରୁ' ଅର୍ଥ ଗ୍ରାମ । ଦୁଇଟିକୁ ମିଶାଇ ଅର୍ଥକଲେ 'ଦନ୍ତପୁର' ହୁଏ । ଏଣୁ 'ପାଲୁର୍' ବୌଦ୍ଧଗ୍ରନ୍ଥ ବର୍ଣ୍ଣିତ 'ଦନ୍ତପୁର' ବୋଲି କିଏ କିଏ କହନ୍ତି । କିନ୍ତୁ ଏ କଥାର ବଳିଷ୍ଠ ଯୁକ୍ତି ଥିଲା ପରି ଲାଗେ ନାହିଁ । ଅବଶ୍ୟ ସ୍ଥାନ ବା ଗ୍ରାମର ନାମ ବଦଳାଇ ନୂଆ ନାମ ଦିଆହେବା ଦୃଷ୍ଟାନ୍ତ ବିରଳ ନୁହେଁ । କିନ୍ତୁ ନିର୍ଦ୍ଦିଷ୍ଟ ଭାଷାରେ ପ୍ରଦତ୍ତ ନାମାର୍ଥକୁ ଭାଷାନ୍ତର କରି ନାମକରଣ କରିହେବା ଦେଖା ନାହିଁ । 'New York' କୁ 'ନୂଆ ନଅର'ର କିମ୍ବା 'ରାଜସ୍ଥାନ' 'King's place' ବୋଲି ଚିହ୍ନିତ ହୁଏ ନାହିଁ । ଅତଏବ 'ପାଲୁର୍'କୁ 'ଦନ୍ତପୁର' ବୋଲି ଗ୍ରହଣ କରିବା କେତେଦୂର ଯୁକ୍ତିଯୁକ୍ତ, ବିଚାରଣୀୟ ।

ବାସ୍ତବିକ୍ ବନ୍ଦରମାନଙ୍କର ଯେଉଁ ନାମଗୁଡ଼ିକ ଟଲେମିଙ୍କ ଦ୍ୱାରା ଲିପିବଦ୍ଧ ତାହା ତତ୍କାଳୀନ କଳିଙ୍ଗର ପ୍ରଚଳିତ ଭାଷାର ଶବ୍ଦ ଛଡ଼ା ଆଉକିଛି ହୋଇନଥିବ ବୋଲି ମନେହୁଏ । ସବୁଗୁଡ଼ିକ କାଳିଙ୍ଗୀ ଶବ୍ଦ ହୋଇଥିବା ହିଁ ସମ୍ଭବ । ଅବଶ୍ୟ ବିଦେଶୀ ଉଚ୍ଚାରଣରେ କିଛିଟା ସ୍ୱର-ବ୍ୟଞ୍ଜନର ପରିବର୍ତ୍ତନ ଘଟିଥାଇପାରେ । ଘଟିବା ମଧ୍ୟ ସ୍ୱାଭାବିକ । କାରଣ ଟଲେମି ହେଉଛନ୍ତି ମିଶର ଦେଶର । ସେ ନାବିକ କିମ୍ବା ନୌଯାତ୍ରୀ ନୁହନ୍ତି । ସେ ଥିଲେ ଜଣେ ବିଖ୍ୟାତ ପଣ୍ଡିତ, ଜ୍ୟୋତିର୍ବିତ୍ ଓ ଭୂବିଜ୍ଞାନୀ ମଧ୍ୟ । କଳିଙ୍ଗକୁ ସେ କେବେ ଆସି ନ ଥିଲେ । ସେ କାଳରେ ଯେଉଁମାନେ ପୃଥିବୀର ବିଭିନ୍ନ ଦେଶକୁ ବାଣିଜ୍ୟ କରିବାକୁ ଯାଆନ୍ତି, ନାବିକ ରୂପେ ଜଳଯାତ୍ରା କରି ପୃଥିବୀ ପର୍ଯ୍ୟଟନ କରନ୍ତି, ବିଭିନ୍ନ ସାଗରବେଳାର ସଂସ୍ପର୍ଶରେ ଆସିଥାନ୍ତି ସେମାନଙ୍କଠାରୁ ନାନାବିଧ ବାର୍ତ୍ତା ସଂଗ୍ରହ କରି ସେ ଏକ ମାନଚିତ୍ର ପ୍ରସ୍ତୁତ କରିଥିଲେ ଓ ସେଥିରେ ବିଭିନ୍ନ ବନ୍ଦର ଓ ସେଠା କାରବାର ସମ୍ବନ୍ଧରେ ବିବରଣୀମାନ ଦେଇଥିଲେ । ଏଣୁ ଲେଖାରେ କିଛି ଦୋଷ ତ୍ରୁଟି ରହିବା ମଧ୍ୟ ଅସମ୍ଭବ ନୁହେଁ । କଳିଙ୍ଗ-ଉପକୂଳ ବର୍ଣ୍ଣନାରେ ସେଭଳି କିଛି ଘଟିଥାଇପାରେ । ହେଲେ ଯେଉଁଗୁଡ଼ିକ ଅନ୍ୟର ପ୍ରତ୍ୟକ୍ଷୀଭୂତ ସେ ସବୁକୁ ଅବିଶ୍ୱାସ କରିବା କାରଣ ନାହିଁ । ହଁ, ଏତିକି କହିପାରୁ, ଯେଉଁ ନାମଗୁଡ଼ିକ ପ୍ରତ୍ୟକ୍ଷଦର୍ଶୀ ନୌଯାତ୍ରୀ ଲୋକମୁଖରୁ ଶୁଣିଯାଇଥିଲେ, ସେ ତାକୁ ଯେଉଁ ଭାବରେ ଉଚ୍ଚାରଣ କରି ଟଲେମିଙ୍କୁ ଶୁଣାଇଥିଲେ ତା ମଧ୍ୟରେ ବି ପାର୍ଥକ୍ୟ ରହିଥାଇ-

ପାରେ, ଯାହା ଯୋଗୁ ସେହି ସେହି ନାମକୁ ଧରି ବର୍ତ୍ତମାନ ବନ୍ଦରସ୍ଥାନ ଜାଣିବା ସମ୍ଭବ ହେଉନାହିଁ । ତଥାପି ବନ୍ଦର ଗୁଡ଼ିକର ଅବସ୍ଥିତି ଯେ ନିଶ୍ଚିତ ଭାବେ ଥିଲା; ଏହା ନିଃସନ୍ଦେହ —ଯେହେତୁ ସେଗୁଡ଼ିକ ଯାତ୍ରୀଙ୍କଦ୍ୱାରା ପ୍ରତ୍ୟକ୍ଷଦୃଷ୍ଟ ।

ଏ ସବୁ ଦେଖିଲେ ମନରେ ପ୍ରଶ୍ନ ଉଠେ ସତେ କଣ କଳିଙ୍ଗ ଉପକୂଳରେ ଏତେ ଗୁଡ଼ାଏ ବନ୍ଦର ରହିଥିଲା ? କେଉଁ ଜାଗାରେ ଥିଲା ସେ ସବୁ ? କି ପ୍ରୟୋଜନୀୟତା ଥିଲା ତାର ? ଏହାର ଉତ୍ତରରେ କୁହାଯାଇପାରେ, 'କଳିଙ୍ଗ'ଜାତି ଶବରାଧ୍ୟୁଷିତ ଦକ୍ଷିଣ-ପୂର୍ବ ଭୂଖଣ୍ଡ ଭିତରେ ପ୍ରବେଶ କରିସାରିଲା ପରେ ସେମାନଙ୍କ ମଧ୍ୟରୁ ଯେଉଁମାନେ ପଶୁପକ୍ଷୀ ଶିକାର ଦ୍ୱାରା ଜୀବିକା ନିର୍ବାହ କରୁଥିଲେ ସେମାନେ ଜଙ୍ଗଲ ସଙ୍କୁଳ ବଣ, ପାହାଡ଼ ଓ ମାଳଭୂମିରେ ବସାବାନ୍ଧି ରହିବାକୁ ପସନ୍ଦ କରିଥିଲେ ଏବଂ ଯେଉଁମାନେ ଜୀବନ ଧାରଣ ପାଇଁ ଫଳମୂଳ କନ୍ଦାଦିକୁ ପ୍ରଧାନ ଉପକରଣ ରୂପେ ବାଛି ନେଇଥିଲେ ସେମାନେ ମଧ୍ୟ ସେ ଅଂଚଳକୁ ଉପଯୁକ୍ତ ଭାବିବା ସ୍ୱାଭାବିକ । ତେଣୁ ଅଭିଯାତ୍ରୀ ଗୋଷ୍ଠୀ ଆସ୍ତେ ଆସ୍ତେ ଉପକୂଳ ସଲଗ୍ନ ସମତଳ ଅଞ୍ଚଳ ସମେତ ଗିରି-ଗୁହା, ପାହାଡ଼-ପର୍ବତ, ସ୍ଥଳ-ମାଳ ସବୁରେ ବିସ୍ତୃତ ହୋଇପଡ଼ୁଥିବା ସମ୍ଭାବନା । ଏ ପ୍ରକ୍ରିୟା ସମ୍ପୂର୍ଣ୍ଣ ହେବାକୁ କେତେଶହ ସମ୍ବତ୍ସର ଲାଗିଥିବ କହିହେବ ନାହିଁ । ଯାହାହେଉ ଦେଶତ୍ୟାଗୀ 'କଳିଙ୍ଗ'ଗୋଷ୍ଠୀ ଶେଷରେ ପୂର୍ବ ଉପକୂଳ ଭୂଖଣ୍ଡରେ ରହି ସୁଖଶାନ୍ତିରେ କାଳାତିପାତ କଲେ ।

ମନୁଷ୍ୟମାନେ ସୁଖପ୍ରିୟ । ଅଭାବବୋଧ ସୁଖର ପ୍ରତିବନ୍ଧକ । ଏଣୁ ଅଭାବ ଦୂର କରିବାରେ ସେ ସର୍ବଦା ଯତ୍ନଶୀଳ । କିନ୍ତୁ ଅଭାବର ଅଭାବରେ ଜୀବନ ସ୍ଥାଣୁ ହୋଇପଡ଼େ । ତେଣୁ କୃତ୍ରିମ ଅଭାବ ସୃଷ୍ଟି କରିବା ଆବଶ୍ୟକ ହୁଏ । ପ୍ରସ୍ତୁତ କ୍ଷେତ୍ରରେ ବି ସେୟା ଘଟିଛି । ବାସ ଗ୍ରାସର ଅଭାବ ନଥାଇ ଦୀର୍ଘଦିନ ନିଶ୍ଚିନ୍ତରେ ଅତିବାହିତ କଲାପରେ କଳିଙ୍ଗ ଜାତି ବିଳାସବ୍ୟସନ ପ୍ରତି ଆକୃଷ୍ଟ ହୋଇ ଧନ-ଜନ-ଗୋପ-ଲକ୍ଷ୍ମୀର ଉତ୍ତରୋତ୍ତର ଅଭିବୃଦ୍ଧି ସାଧନ ପାଇଁ ଶାରୀରିକ ଓ ମାନସିକ ଶକ୍ତିର ଯଥାଯଥ ବିନିଯୋଗ କରିବାକୁ ବାହାରି ପଡ଼ିଛନ୍ତି । ଏକ ଦୁର୍ଦ୍ଧର୍ଷ ଯାଯାବର ଗୋଷ୍ଠୀ ତତ୍କାଳ ଭାରତୀୟ ସମାଜରେ 'ସାହସିକ' ଜାତିରୂପେ ଖ୍ୟାତି ଅର୍ଜନ କରିଥିଲେ ସୁଦ୍ଧା ସର୍ବବିଧ ଐଶ୍ୱର୍ଯ୍ୟର ଅଧିକାରୀ ହୋଇପାରି ନଥିଲା । ତେଣୁ ତାକୁ ନୂଆ ନୂଆ ପନ୍ଥାର ଆଶ୍ରୟ ନେବାକୁ ପଡ଼ିଛି । ସ୍ୱକୀୟ ଦେଶୀୟ ସମ୍ପଦରେ ସନ୍ତୁଷ୍ଟ ନହୋଇ ଧନ-ରତ୍ନ, ମଣି-ମାଣିକ୍ୟ ଅନୁସନ୍ଧାନରେ ମନ ବଳାଇଛି । ସେହି ଲକ୍ଷ୍ୟରେ ଦ୍ୱୀପାନ୍ତର ପ୍ରତି ଆକୃଷ୍ଟ ହୋଇ ବୀର ଦର୍ପରେ ଆଗେଇଯାଇଛି ଦକ୍ଷିଣକୁ—ଆହୁରି ଦକ୍ଷିଣକୁ, ଖାଲି ସ୍ଥଳଭାଗରେ ନୁହେଁ ଦିଗନ୍ତବିସ୍ତାରୀ ଜଳରାଶି ମଧ୍ୟରେ ପାଲ ବିସ୍ତାରି ଭାସିଯାଇଛି ସୁଦୂର ସାଗର ଆରପାରିକି । ସେଥିପାଇଁ ତାକୁ କମ୍ ପରିଶ୍ରମ କରିବାକୁ ପଡ଼ିନାହିଁ—କମ୍ ବିପଦର ସମ୍ମୁଖୀନ ହେବାକୁ ହୋଇନାହିଁ । ସେଥିପାଇଁ ତା'ପକ୍ଷେ ସନ୍ତରଣୋପଯୋଗୀ ଉପାଦାନ ଓ ନୌକାଦି ନିର୍ମାଣ କୌଶଳ ଅଜ୍ଞାତ ନଥିଲା । ଶହ ଶହ ବର୍ଷ ଗାଙ୍ଗେୟ ଉପତ୍ୟକାରେ ରଣବ୍ୟାପୃତ ପୂର୍ବପୁରୁଷଙ୍କ ସନ୍ତରଣ ଦକ୍ଷତା ତା

ମନରୁ ବିସ୍ମୃତ ହୋଇନଥିଲା । ଫଳରେ ସାଗର ଲଙ୍ଘିବା ଭଳି ସାହସର ସହିତ କାମ୍ବୋଡ଼ିଆ, ସୁମାତ୍ରା, ବାଲି, ଯବାଦ୍ଵୀପ ସମେତ ଚମ୍ପା, ବ୍ରହ୍ମଦେଶ, ଥାଇଲାଣ୍ଡ ପ୍ରଭୃତିରେ ଉପନିବେଶ ସ୍ଥାପନ କରିଥିଲେ । ସ୍ୱଦେଶୀ ପଣ୍ୟବସ୍ତୁ ବିନିମୟରେ ବିଦେଶରୁ ଅପରିମିତ ଧନରତ୍ନ ସଂଗ୍ରହକରି ସ୍ୱଦେଶକୁ ଫେରୁଥିଲେ । ସେତିକି ନୁହେଁ, ସେଠାରେ ବାଣିଜ୍ୟ ବନ୍ଦି ମାନ ସ୍ଥାପନକରି ସ୍ୱକୀୟ ସଂସ୍କୃତି ଓ ସଭ୍ୟତା ପ୍ରସାର କରିବାକୁ ଭୁଲି ନଥିଲେ । ସେମାନଙ୍କୁ ଇତର ଦେଶାଗତ ବଣିକ ଓ ବ୍ୟବସାୟିକଙ୍କ ମଧ୍ୟରୁ କିଏ 'କ୍ଲିଂଲିଙ୍ଗ', କିଏ 'ହୋଲିଙ୍ଗ', କିଏ ବା 'କଳିଙ୍ଗ' ବୋଲି ଅଭିହିତ କରୁଥିଲେ । କିନ୍ତୁ ପ୍ରକୃତରେ ସେମାନେ ଥିଲେ ଭାରତରୁ ଯାଇଥିବା 'କାଳିଙ୍ଗୀ' । ମନେହୁଏ, ଖ୍ରୀ: ପୂ: ଯୁଗରେ କଳିଙ୍ଗରେ ଅବସ୍ଥିତ ବନ୍ଦରଗୁଡ଼ିକ, ଯାହାର ଦ୍ରାଘିମା ଓ ଅକ୍ଷାଂଶକୁ ଟଲେମି ଭୁଲଭାବେ ଦର୍ଶାଇଯାଇଛନ୍ତି, ତତ୍କାଳୀନ କଳିଙ୍ଗବାସୀଙ୍କ ଦ୍ୱାରା ଏହି ଉଦ୍ଦେଶ୍ୟରେ ଅବସ୍ଥାପିତ ଓ ବ୍ୟବହୃତ ହୋଇଆସିଥିଲା; ସେ ସବୁ ଦକ୍ଷିଣ ମେଦିନୀପୁରଠାରୁ ଗଞ୍ଜାମ ଜିଲ୍ଲାର ପାଲୁର୍ ପର୍ଯ୍ୟନ୍ତ ବିସ୍ତୃତ ଦୀର୍ଘ ବେଳାଭୂମିରେ ଅବସ୍ଥିତ ଥିଲା ।

ତା' ବ୍ୟତୀତ 'Periplus of the Erythracan Sea' ନାମକ ଗ୍ରୀକ୍ ଭାଷାରେ ଲିଖିତ ଖଣ୍ଡିଏ ଗ୍ରନ୍ଥ, ଯାହାର ଲେଖକ କିଏ ଏ ପର୍ଯ୍ୟନ୍ତ ଜଣାପଡ଼ିନାହିଁ; ଅଥଚ ଯାହା ଏକ ଅଭିଜ୍ଞତା ପ୍ରସୂତ ପ୍ରାମାଣିକ ଗ୍ରନ୍ଥ ରୂପେ ସମଗ୍ର ପୃଥିବୀରେ ଆଦୃତ, ସେଥିରେ କଳିଙ୍ଗର ବନ୍ଦର ଉପରେ ସଂକ୍ଷିପ୍ତ ଟିପ୍ପଣୀ ଦିଆଯାଇଛି । ସେଥିରେ ଠାଏ ଲେଖାଅଛି, "ମସ୍‌ସଲିପଟ୍ଟମ୍ ପୂର୍ବପଟକୁ ନୌକାରେ ଗଲେ ସମୁଦ୍ର କୂଳକୁ ଲାଗି 'Dossaree' ନାମକ ଅଞ୍ଚଳରେ 'Dosaran' ବୋଲି ଏକ ବନ୍ଦର ଅଛି ।" ଏତିକି ଛଡ଼ା ସେଥିରେ ଆଉ ଅଧିକ କିଛି ଲେଖା ନାହିଁ, ଯଦିଚ ଭାରତର ପୂର୍ବ ଓ ପଶ୍ଚିମ ଉପକୂଳସ୍ଥ ବାଣିଜ୍ୟ ବ୍ୟବସାୟ ଚଳୁଥିବା ବନ୍ଦର ଗୁଡ଼ିକ ସଂପର୍କରେ ସୁବିସ୍ତୃତ ବର୍ଣ୍ଣନା ସେଥିରେ ଦେଖିବାକୁ ମିଳେ । କୁହାଯାଏ, 'ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ ଜଣେ ଗ୍ରୀକ୍ ନାବିକ ବାଣିଜ୍ୟ ଉଦ୍ଦେଶ୍ୟରେ ଆସି ଏ ସବୁ ପ୍ରତ୍ୟକ୍ଷରେ ଦେଖି ଲିପିବଦ୍ଧ କରିଯାଇଛନ୍ତି ।' ତା'ହେଲେ ଦେଖିବାର କଥା, 'Dossaree' ପୂର୍ବ ଉପକୂଳର କେଉଁ ସ୍ଥାନକୁ ବୁଝାଉଥିଲା । ଏହା ଯେ ସେ ନିଶ୍ଚିତ ଭାବେ ଶୁଣିକରି ଲେଖିଥିବେ ସନ୍ଦେହ ନାହିଁ । କାରଣ ଯଦି 'Dosaran' ବନ୍ଦରକୁ ଆଖିରେ ଦେଖିଥାନ୍ତେ ବା ତା'ର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥାନ୍ତେ, ତାହେଲେ ଅନ୍ୟାନ୍ୟ ବନ୍ଦର ପରି ଏହାର ମଧ୍ୟ ବିସ୍ତୃତ ବର୍ଣ୍ଣନା ନଲେଖି ଛାଡ଼ି ନଥାନ୍ତେ । ସମ୍ଭବ, ଅନ୍ୟ କାହାର ମୁହଁରୁ ବନ୍ଦରର ସ୍ଥିତିପରିସ୍ଥିତି ଶୁଣି, ତା ସମ୍ବନ୍ଧରେ କ୍ଷୀଣ ଆଭାସ ଦେଇଯାଇଛନ୍ତି । ଐତିହାସିକମାନଙ୍କ ମତରେ 'Dossaree' ହେଉଛି ଏବର 'ଓଡ଼ିଶା' । ଅବଶ୍ୟ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଏହାକୁ 'ଓଡ଼ିଶା' କୁହାଯାଉଥିଲା କି ନାହିଁ ଜଣାନାହିଁ, କିନ୍ତୁ 'କଳିଙ୍ଗ' ନାମ ନିଶ୍ଚୟ ଥିଲା ଏବଂ ତାହାର ରାଜଧାନୀ ଥିଲା 'ତୋଷଳୀ' । 'ତୋଷଳୀ' ଶବ୍ଦ ଗ୍ରୀକ୍ ମୁଖରେ 'ଦୋସର' ରୂପେ ଉଚ୍ଚାରିତ ହେବା

ଅସମ୍ଭବ ନୁହେଁ । ରାଜ୍ୟ ହେଉ ବା ପ୍ରଦେଶ ହେଉ ତାହା ରାଜଧାନୀ ନାମରେ ଅଭିହିତ ହେବା ପରଂପରା ସର୍ବତ୍ର ପରିଲକ୍ଷିତ । ବହୁ ପୂର୍ବରୁ 'ତୋଷଲୀ' କଳିଙ୍ଗର ରାଜଧାନୀ ଥିବା କଥା ଜୈନ ଧର୍ମଗ୍ରନ୍ଥରେ ଉଲ୍ଲେଖ କରାହୋଇଛି । ପୁନଶ୍ଚ, ରାଜଧାନୀକୁ ଲାଗି ବନ୍ଦରଟିଏ ରହିବା ମଧ୍ୟ ସ୍ୱାଭାବିକ । ଏହାଦ୍ୱାରା ଗତାୟତର ସୁବିଧା ଯେପରି ହୁଏ ନୌ-ବାଣିଜ୍ୟ ଓ କ୍ରୟ-ବିକ୍ରୟ ପନ୍ଥା ମଧ୍ୟ ସେହିପରି ସହଜ ହୁଏ । ଫଳରେ ଅନ୍ୟାନ୍ୟ ବନ୍ଦର ଅପେକ୍ଷା ତାହାର ଅଧିକ ପ୍ରାଧାନ୍ୟ ରହିଥାଏ । ସେହି କାରଣରୁ କଳିଙ୍ଗର ପ୍ରଧାନ ବନ୍ଦର ଭାବେ ସୁପରିଚିତ 'ଦୋସରନ୍' ବା 'ତୋଷଲଙ୍ଗ୍' ବିଷୟରେ ପେରିପ୍ଲସ୍ର ଲେଖକ ସ୍ୱୟଂ ନଦେଖିଲେ ସୁଦ୍ଧା କିଛି ନକହି ରହିପାରି ନାହାନ୍ତି । ଏଣୁ ତାଙ୍କ ବର୍ଣ୍ଣିତ 'Dossaree' ହେଉଛି 'ତୋଷଲି' ଏବଂ ତାକୁ ଲାଗି 'Dosaran' ବା 'ତୋଷଳଙ୍ଗ' ନାମରେ ବନ୍ଦର ଥିଲା ବୋଲି ଅନାୟାସରେ କୁହାଯାଇପାରେ ।

'ଟଲେମି'ଙ୍କ ଦ୍ୱାରା ପ୍ରଦତ୍ତ କଳିଙ୍ଗ ଉପକୂଳ ବନ୍ଦର ତାଲିକାରେ ବି 'ଦୋସରନ୍' ନାମ ଦେଖିବାକୁ ମିଳେ । କିନ୍ତୁ ପ୍ରଶ୍ନ ହେଉଛି, ତାହା ଠିକ୍ କେଉଁ ସ୍ଥାନରେ ଥିଲା ? ପାଲୁର୍ ବନ୍ଦରଆଡ଼ୁ ଗଣନା କଲେ 'ଦୋସରନ୍'ର ସ୍ଥାନ ଏକାଦଶରେ । ଏହା 'Minagar' ପରେ ବୋଲି ଦର୍ଶାଯାଇଛି । 'ମିନାଗର୍' କଥା ପରେ ବିଗ୍ଭର କରାଯିବ , ଏଠାରେ କେବଳ ଦୋସରନ୍ ସମ୍ବନ୍ଧରେ କୁହାଯାଉଛି । କେତେକ ଐତିହାସିକଙ୍କ ମତରେ 'ଦୋସରନ୍' ଗୋଟିଏ ନଦୀ ମୁହାଣର ନାମ; ସମ୍ଭବତଃ 'ବୈତରଣୀ' ନଦୀର । କିନ୍ତୁ ଏ କଥାକୁ ସମସ୍ତେ ସ୍ୱୀକାର କରନ୍ତି ନାହିଁ । ସେମାନେ କହନ୍ତି, ଏହା ଗୋଟିଏ ନଦୀର ନାମ ଏବଂ 'ଦୋସରନ୍' ତଟବର୍ତ୍ତୀ ଅଧିବାସୀଙ୍କୁ ବୁଝାଉଥିଲା । ଏ ମତରେ ବ୍ରାହ୍ମଣୀ ନଦୀ ଅବବାହିକାରେ ବାସକରି ରହିଥିବା ଅଧିବାସୀ ସେ ନାମରେ ନାମିତ ହେଉଥିଲେ । କିନ୍ତୁ ସ୍ମରଣ ରଖିବା ଉଚିତ, ଟଲେମି ହୁଅନ୍ତୁ ବା ପେରିପ୍ଲସ୍ର ଅଜ୍ଞାତନାମା ଲେଖକ ହୁଅନ୍ତୁ, ସେମାନେ ଖ୍ରୀଷ୍ଟ ଶତାବ୍ଦୀ ଆରମ୍ଭର ଟିକିଏ ଆଗରୁ ଏକଥା କହିଥିଲେ ବୋଲି ସେସବୁ ତାଙ୍କ ସମକାଳୀନ ଘଟଣା ବୋଲି ଧରାଯାଇନପାରେ । କାରଣ 'ତୋଷଲୀ' ସେତେବେଳକୁ କଳିଙ୍ଗର ରାଜଧାନୀ ରୂପେ ଥାଉ ବା ନଥାଉ ରାଜ୍ୟ ଅର୍ଥରେ 'ତୋଷଲୀ' ଶବ୍ଦର ବ୍ୟବହାର ସମ୍ପୂର୍ଣ୍ଣ ଲୁପ୍ତ ହୋଇନଥିଲା । ଲୋକମୁଖରେ ବହୁ କାଳରୁ ପ୍ରଚଳିତ ନାମବାଚୀ ଶବ୍ଦ ସହଜରେ ଲୁପ୍ତ ହୋଇନଥାଏ । ଏଣୁ ତୋଷଲୀର ଦିଗନ୍ତବ୍ୟାପୀ କୀର୍ତ୍ତିର କାହ୍ନିମାନ ମଧ୍ୟାହ୍ନରେ ଅଙ୍କିତ ହୋଇ ରହିଥିବା ପୂର୍ବସ୍ମୃତି ପ୍ରଜାଙ୍କ ମାନସପଟରୁ ଏକାବେଳେକେ ଲିଭିନଥିଲା । ଆବହମାନ କାଳରୁ ଚଳି ଆସୁଥିବା ସେହି ଶବ୍ଦଗୁଡ଼ିକ ବିଦେଶୀ ନାବିକ, ପର୍ଯ୍ୟଟକ ଓ ଆଗନ୍ତୁକଙ୍କ ମୁହଁରେ ବିକୃତ ଭାବେ ଉଚ୍ଚାରିତ ହେଉ ପଛେ ବିଭିନ୍ନ ଭାଷା ଓ ସାହିତ୍ୟର ପୃଷ୍ଠା ମଣ୍ଡନ କରିଆସିଥିଲା । ତାଦୃଶ ଶବ୍ଦ ହେଉଛି 'ଦୋସରି' ଏବଂ 'ଦୋସରନ୍' ।

ଆଗରୁ କୁହାଯାଇଛି, ଶାବଶୀ ଭାଷାର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ଶବ୍ଦକୁ ଅନୁନାସିକାନ୍ତ କରି ଉଚ୍ଚାରଣ କରିବା । ଏ ବିଧି ଏ ଯାବତ୍ ସୌରା ଭାଷାରେ ଅନୁସୃତ ହୁଏ । ସେ ଅନୁସାରେ 'କଳି'ରୁ 'କଳିଙ୍ଗ୍' ପରି 'ତୋଷଲି'ରୁ 'ତୋଷଲିଙ୍ଗ୍' ଯାହା ଇଜିପ୍ଟ ବାସୀଙ୍କ ଦ୍ୱାରା 'ଦୋସରଂ' ଏବଂ ଗ୍ରୀକ୍ ଭାଷୀଙ୍କ ମୁହଁରେ 'ଦୋର୍‌ସଂ' ରୂପେ ପରିବର୍ତ୍ତିତ ହୋଇପଡ଼ିଛି । ଜଣାପଡ଼େ, ଟଲେମିଙ୍କ ଶହେ ବର୍ଷ (?) ଆଗରୁ ଅଜ୍ଞାତନାମା ଗ୍ରୀକ୍ ନାବିକଙ୍କ ଦ୍ୱାରା ଲିଖିତ ଗ୍ରନ୍ଥ ଅନୁଯାୟୀ ଦକ୍ଷିଣକୁ କଳିଙ୍ଗର ସମୁଦ୍ର ଉପକୂଳ ସୀମାରେଖା ମସଲିପଟ୍ଟମଠାରୁ 'ଦୋସରନ୍' ବନ୍ଦର ପର୍ଯ୍ୟନ୍ତ ଅର୍ଥାତ୍ 'ତୋଷଲୀ' ନିକଟସ୍ଥ ବ୍ରାହ୍ମଣୀ ନଦୀ ମୁହାଣଯାଏ ଥିଲା । ଟଲେମି ଓ ପେରିପ୍ଲସ୍‌ର ଲେଖକଙ୍କୁ ମିଶାଇ ପଢ଼ିଲେ ଏହା ମେଦନୀପୁରଠାରୁ 'ଦୋସରନ୍' ଓ ପାଲୁର୍ ମଧ୍ୟଦେଇ 'ମସଲିପଟ୍ଟମ୍' ପର୍ଯ୍ୟନ୍ତ ବିସ୍ତୃତ ଥିଲା ବୋଲି ଅବଗତ ହୁଏ । ଏ ମଧ୍ୟରେ ଆହୁରି ମଧ୍ୟ କେତେକ ବନ୍ଦର ରହିଥିବ ଯାହାର ନାମୋଲ୍ଲେଖ କରିବା ସମ୍ଭବ ନୁହେଁ । କିନ୍ତୁ 'ପାଲୁର୍' ବନ୍ଦର ଦକ୍ଷିଣକୁ ଏପରି କେତେ ନଦୀ ମୁହାଣ ରହିଛି ଯାହା ବନ୍ଦର ହେବାପାଇଁ ଅତ୍ୟନ୍ତ ଅନୁକୂଳ । ଋଷିକୁଲ୍ୟା, ବାହୁଦା, ବଂଶଧାରା, ନାଗାବଳୀ ପ୍ରଭୃତି ନଦୀ ମୁହାଣମାନ ଏବେ ସୁଦ୍ଧା ବନ୍ଦରୋପଯୋଗୀ ହୋଇ ରହିଥିବା ଦେଖାଯାଏ । ପାଲୁର୍ ପରି ବାଉରୁ, ବଞ୍ଜାର ଗାଁ (ଗୋପାଳପୁର), ସୁନାପୁର, କଳିଙ୍ଗପାଟଣା ପ୍ରଭୃତି ବନ୍ଦରରୁ ଚଳିତ ଶତାବ୍ଦୀର ପ୍ରଥମ ପାଦଯାଏଁ ଯାତ୍ରୀମାନେ ସିଂହଳ ଓ ବର୍ମାକୁ ନୌକାଯୋଗେ ଯିବା ଆସିବା କରିବା ଦେଖିଥିବା କଥା ଶତାୟୁମାନେ କହନ୍ତି । ଏଣୁ ବୋଧହୁଏ ଟଲେମି ନିର୍ଦ୍ଦେଶିତ ବନ୍ଦର ସମେତ ଉପରୋକ୍ତ ବନ୍ଦରମାନଙ୍କରୁ କଳିଙ୍ଗ ଜାତି ଦକ୍ଷିଣପୂର୍ବ ଏସିଆର ଦ୍ୱୀପପୁଞ୍ଜ, ଯଥା—କାମ୍ବୋଡ଼ିଆ, ଚମ୍ପା, ଯବ, ମାଳୟ, ସୁମାତ୍ରା, ବାଲି ପ୍ରଭୃତିକୁ ପଣ୍ୟଦ୍ରବ୍ୟ ନେଇ ବାଣିଜ୍ୟ ବ୍ୟବସାୟରେ ପ୍ରତିଷ୍ଠା ଲାଭ କରିବା ସଙ୍ଗେ ସଙ୍ଗେ ଉପନିବେଶ ସ୍ଥାପନ କରିବାକୁ ସମର୍ଥ ହୋଇଥିଲେ । ଫଳରେ ଏକ ସଚ୍ଚୋଟ ବଣିକ ଜାତିରୂପେ ତତ୍କାଳୀନ ଦେଶାନ୍ତରଗତ ଅନ୍ୟାନ୍ୟ ବ୍ୟବସାୟୀ ଗୋଷ୍ଠୀଦ୍ୱାରା ସମାଦୃତ ହୋଇ 'କୁଂଲୁଙ୍ଗ' 'ହୋଲିଙ୍ଗ୍', 'କଳିଙ୍ଗ୍' ପ୍ରଭୃତି ନାମରେ ଅଭିହିତ ହୋଇଥିଲେ । ତେଣୁ ପରବର୍ତ୍ତୀ ସମୟରେ ଯେଉଁମାନେ ସେହି ସେହି ସ୍ଥାନକୁ କୌଣସି କାରଣରୁ ଯାତାୟାତ କରୁଥିଲେ ସେମାନଙ୍କ ଦୃଷ୍ଟି କଳିଙ୍ଗପ୍ରତି ଆକୃଷ୍ଟ ନହୋଇ ରହିପାରି ନଥିଲା । ବନ୍ଦର ସମ୍ପର୍କିତ ଯେ କୌଣସି ବିଷୟ ଲିପିବଦ୍ଧ କଲାବେଳେ 'କଳିଙ୍ଗ' ନାମଟି ବାଦ ପଡ଼ୁ ନଥିଲା । ସେଥିଯୋଗୁ ଗ୍ରୀକ୍, ଚୀନ୍, କାମ୍ବୋଡ଼ିଆ, ବର୍ମା ପ୍ରଭୃତି ଭାଷାର ପ୍ରାଚୀନ ବିବରଣୀରେ କଳିଙ୍ଗର ବିଷୟ ସ୍ଥାନ ପାଇଆସିଥିବା ଦେଖୁଁ । ଅବଶ୍ୟ ଏ ବିବରଣୀମାନ ବହୁ ପରବର୍ତ୍ତୀ କାଳର ଲେଖା—ସନ୍ଦେହ ନାହିଁ; ତଥାପି ଏତାଦୃଶ ପ୍ରକ୍ରିୟା ଖ୍ରୀ:ପୂ: ବହୁଶତାବ୍ଦୀ ଆଗରୁ ସଂଘଟିତ ହୋଇ ଆସିଥିଲା ବୋଲି ଅଧ୍ୟାହାର କରାଯାଇପାରେ । କାରଣ ବହୁ ସଂଖ୍ୟକ ବନ୍ଦର ନିର୍ମାଣ ଓ ବିଭିନ୍ନ ଦ୍ୱୀପାନ୍ତରରେ ସଭ୍ୟତା ପ୍ରସାରଣ ବର୍ଷ—ମାସର କଥା ନୁହେଁ, ସେଥିପାଇଁ ଶତାବ୍ଦୀ ବ୍ୟାପୀ ସମୟର

ଆବଶ୍ୟକତା ରହିଛି । ତାହା କରିବାକୁ କେତେ ଉତ୍‌ଥାନ ପତନ ଓ ଆପଦ ବିପଦ ମଧ୍ୟରେ ଜାତିକୁ ଗତି କରିବାକୁ ପଡ଼ିଥିବ କିଏ କହିବ ? ସେଥିଲାଗି କେତେ ପ୍ରାଣହାନି, କେତେ ଧନବ୍ୟୟ, କେତେ ଜୟପରାଜୟର ସମ୍ମୁଖୀନ ହେବାକୁ ପଡ଼ିଥିବ କହିବା ସମ୍ଭବ ନୁହେଁ । ଏଣୁ ଅନୁମାନ ହୁଏ, ଏ ପ୍ରକ୍ରିୟା ଅନ୍ତତଃ ଖ୍ରୀ:ପୂ: ଦଶମ ଶତାବ୍ଦୀର ପ୍ରାରମ୍ଭରୁ ଆରମ୍ଭ ହୋଇଆସିଥିଲା । ଭାରତର ପ୍ରାଚୀନ ଗ୍ରନ୍ଥ ଓ ବିବରଣୀମାନ ପର୍ଯ୍ୟାଲୋଚନା କଲେ ଏହାର ସତ୍ୟତା ଉପଲବ୍ଧ ହୁଏ ।

ସଂସ୍କୃତ ଭାଷାରେ ଲିଖିତ ଖ୍ରୀଷ୍ଟ ଯୁଗର ବିବରଣୀ ବାଦ୍‌ଦେଲେ ମଧ୍ୟ ଖ୍ରୀ: ପୂ: ଯୁଗର ଯେଉଁ ଶିଳାଲେଖ ଓ ସାହିତ୍ୟିକ ରଚନା ପରିଦୃଷ୍ଟ ହୁଏ ସେଥିରେ କଳିଙ୍ଗ ବିଷୟକ ବିବରଣୀ କେତେକରେ ପରୋକ୍ଷଭାବେ ସଙ୍କେତିତ ଏବଂ ଆଉ କେତେକରେ ପ୍ରତ୍ୟକ୍ଷ ବର୍ଣ୍ଣନା ସନ୍ନିବିଷ୍ଟ । ଏ ପ୍ରସଙ୍ଗରେ କଳିଙ୍ଗାଧିପତି ଖାରବେଳଙ୍କର ହାତୀଗୁମ୍ଫା ଶିଳାଲିପି ପ୍ରଥମେ ଆଲୋଚନାକୁ ଆସେ । ଏହା ଖାରବେଳଙ୍କ ଦିଗ୍‌ବିଜୟ ଓ ରାଜ୍ୟ ଶାସନ ସମ୍ବନ୍ଧୀ ଏକ ପ୍ରାମାଣିକ ବିବରଣୀ । ଏଥିରେ କଳିଙ୍ଗର ପ୍ରାଚୀନ ଐତିହ୍ୟ ଓ ସମୃଦ୍ଧି ସମ୍ବନ୍ଧରେ ଅନେକ ସୂଚନା ଦିଆଯାଇଛି । ସେଥିରେ ଲେଖାଅଛି—ତୋଷଳୀ ବହୁ ପୂର୍ବରୁ କଳିଙ୍ଗର ରାଜଧାନୀ ରୂପେ ପ୍ରସିଦ୍ଧି ଲାଭ କରିଥିଲା । ଖାରବେଳ ଅବଲୁପ୍ତ କଳିଙ୍ଗର ପୂର୍ବ ଗୌରବ ପୁନଶ୍ଚ ଫେରାଇ ଆଣିଥିଲେ । ତିନିଶହ ବର୍ଷ ଆଗରୁ ମଗଧରାଜା ନନ୍ଦ ବଳପୂର୍ବକ ହେଉ ବା ଅନ୍ୟ କୌଣସି ଉଦ୍ଦେଶ୍ୟରେ ହେଉ ଅପହରଣ କରି ନେଇଥିବା 'କଳିଙ୍ଗ ଜିନାସନ'କୁ ପୁଣି ସେଠାରୁ ଅପସାରଣ କରି ଆଣି କଳିଙ୍ଗରେ ପ୍ରତିଷ୍ଠା କରାଇ ଥିଲେ । ଐତିହାସିକମାନେ ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀକୁ ଖାରବେଳଙ୍କ ସମୟ ବୋଲି ଧରିନେଇଛନ୍ତି । ତା' ହେଲେ ତିନିଶହ ବର୍ଷ ଆଗରୁ ଅର୍ଥାତ୍ ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀ ବେଳକୁ କଳିଙ୍ଗରେ ଜିନାସନ ସ୍ଥାପିତ ହୋଇ ସାରିଥିଲା ଏବଂ ତାହା ରାଜ୍ୟର ସମ୍ମାନାସ୍ପଦ ବସ୍ତୁ ରୂପେ ବିବେଚିତ ହେଉଥିଲା । ମଗଧର ନନ୍ଦବଂଶୀ ରାଜା ମହାପଦ୍ମ କଳିଙ୍ଗ ଉପରେ ଆକ୍ରମଣ କରି ବିଜୟର ସଙ୍କେତ ସ୍ୱରୂପ ତାହା ନିଜରାଜ୍ୟକୁ ଉଠାଇ ନେଇଥିଲେ । କାରଣ ସେକାଳର ବିଜୟୀ ରାଜାମାନେ ପରାଜିତ ରାଜ୍ୟର ଉପାସ୍ୟ ଦେବତା ଓ ମୂଲ୍ୟବାନ୍ ବସ୍ତୁ ଗୁଡ଼ିକୁ ବଳତ୍କାରରେ ନିଜ ରାଜ୍ୟକୁ ନେଇଯିବା ଗୌରବାବହ ମନେକରାଯାଉଥିଲା । ଅନୁମାନ ହୁଏ, ନନ୍ଦରାଜା ଅପହରଣ କରି ନେଇଥିବା 'ଜିନାସନ' ତତ୍କାଳ କଳିଙ୍ଗବାସୀଙ୍କ ଦ୍ୱାରା ପବିତ୍ର-ପୀଠ ରୂପେ ସମାଦୃତ ହୋଇଆସୁଥିଲା । ସ୍ୟା' ପରେ ଖ୍ରୀ:ପୂ: ତୃତୀୟ ଶତାବ୍ଦୀରେ ମୌର୍ଯ୍ୟ ସମ୍ରାଟ ଅଶୋକ କଳିଙ୍ଗ ଉପରେ ପୁଣି ପ୍ରଚଣ୍ଡ ଆକ୍ରମଣ ଚଳାନ୍ତି ଓ ତାକୁ ନିଜ ଶାସନାଧୀନ କରନ୍ତି । ଯୁଦ୍ଧରେ କଳିଙ୍ଗ ସେନା ଅମିତ ପରାକ୍ରମର ପ୍ରମାଣ ଦର୍ଶାଇଥିଲେ ସୁଦ୍ଧା ଦୁର୍ଭାଗ୍ୟକୁ ଶେଷରେ ପରାଜୟ ବରଣ କରିଥିଲେ । ତା'ପରେ ଅବଶ୍ୟ ସମଗ୍ର କଳିଙ୍ଗ ରାଜ୍ୟ ସମ୍ପୂର୍ଣ୍ଣ ଭାବେ ଅଶୋକଙ୍କ ଅଧିକାରାଧୀନ ହୋଇଥିଲା କି ନାହିଁ ସ୍ପଷ୍ଟ ଜଣାପଡ଼େ ନାହିଁ; ତଥାପି ତୋଷଳୀ ଓ ସମାପଭଳି କେତୋଟି କେନ୍ଦ୍ରସ୍ଥଳୀ ଶତ୍ରୁ

କବଳିତ ହୋଇପଡ଼ିଥିଲା, ଏଥିରେ ସନ୍ଦେହ ନାହିଁ । ସେଥିଯୋଗୁ ଅଶୋକ ସେହି ସେହି ସ୍ଥାନରେ କଳିଙ୍ଗର ଜନସାଧାରଣଙ୍କ ବିଶ୍ୱାସଭାଜନ ହେବାପାଇଁ ପ୍ରସ୍ତର ଗାତ୍ରରେ ଅନୁଶାସନ ମାନ ଉତ୍କୀର୍ଣ୍ଣ କରାଇଥିଲେ । ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଖ୍ରୀଷ୍ଟପୂର୍ବ ଶତାବ୍ଦୀ ବେଳକୁ କଳିଙ୍ଗର ଖ୍ୟାତି ଓ ପ୍ରତିପତ୍ତି ଅନ୍ୟରାଜ୍ୟମାନଙ୍କର ଚକ୍ଷୁଶୂଳ ହୋଇପଡ଼ିଥିଲା ।

ଉଲ୍ଲିଖିତ ଖ୍ରୀ:ପୂ: ଶତାବ୍ଦୀର ଅଭିଲେଖ ଛଡ଼ା କେତେକ ବୌଦ୍ଧଧର୍ମ ଗ୍ରନ୍ଥରେ କଳିଙ୍ଗର ଯେଉଁ ପ୍ରଶସ୍ତି ଗାନ କରାଯାଇଛି ସେଥିରେ ମଧ୍ୟ ସେ ଅସାଧାରଣ ବୈଭବର ଅଧିକାରୀ ଥିବା ସୂଚିତ ହୁଏ । ପୃଥିବୀ ବିଶ୍ରୁତ ବୌଦ୍ଧଧର୍ମର ପ୍ରତିଷ୍ଠାତା ମହାତ୍ମା ବୁଦ୍ଧଦେବଙ୍କ ଜନ୍ମ ହେଉଛି ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀର ଦ୍ୱିତୀୟପାଦ । ସେତିକବେଳକୁ କାହିଁକି ତା ଆଗରୁ ମଧ୍ୟ କଳିଙ୍ଗର ଜନସାଧାରଣ ଆଧ୍ୟାତ୍ମିକ ଚିନ୍ତା ଓ ଧର୍ମଭାବନା ପ୍ରତି ବିଶେଷ ସଚେତନଥିଲେ । ଏହାର ଭୂରି ଭୂରି ପ୍ରମାଣ ରହିଛି । ଅବଶ୍ୟ ସେତେବେଳକୁ କଳିଙ୍ଗ 'ଉତ୍କଳ' ନାମରେ ଅଭିହିତ ହୋଇଆସୁଥିଲା । ଉତ୍କଳ କେବେ କିପରିଭାବେ କଳିଙ୍ଗବାଚୀ ଶବ୍ଦ ରୂପେ ବ୍ୟବହୃତ ହେଲା ତାହା ଯଥା ସ୍ଥାନରେ ବିଚାର କରାଯିବ । ଯାହାହେଉ ବୁଦ୍ଧଦେବଙ୍କ ପ୍ରଚାରିତ ଧର୍ମ ସମଗ୍ର କଳିଙ୍ଗବାସୀଙ୍କୁ ପ୍ରଭାବିତ କରିନଥିଲେ ମଧ୍ୟ ଅଧିକାଂଶ ସେଥିପ୍ରତି ଆକୃଷ୍ଟ ହୋଇ ଆନୁଗତ୍ୟ ପ୍ରକାଶ କରୁଥିଲେ । ତା' ନହେଲେ ବୁଦ୍ଧଦେବଙ୍କ ମହାନିର୍ବାଣ ପରେ ତାଙ୍କ ଅଙ୍ଗାବଶେଷମାନ ଦେଶବିଦେଶକୁ ପଠାହେଲା ବେଳେ 'ଖେରଖେମ' ନାମକ ବୌଦ୍ଧସନ୍ନ୍ୟାସୀ କଳିଙ୍ଗକୁ ଦାନ୍ତଟିଏ ଆଣି ସ୍ମୃତିସ୍ୱରୂପ ତା ଉପରେ ସ୍ତୂପଟିଏ ନିର୍ମାଣ କରାଇ ପାରିନଥାନ୍ତେ କିମ୍ବା ଉକ୍ତ ଦନ୍ତ କଳିଙ୍ଗର ବନ୍ଦର ଦେଇ ସିଂହଳ ଦେଶକୁ ପ୍ରେରିତ ହୋଇନଥାନ୍ତା । ସିଂହଳୀୟ କବି ଧର୍ମକୀର୍ତ୍ତିଙ୍କ ଦ୍ୱାରା ଲିଖିତ 'ଦାଠା ଧାତୁବଂଶ'ରେ ଏ କଥାର ସ୍ପଷ୍ଟ ଉଲ୍ଲେଖ ରହିଛି । ସେଥିରୁ ଜଣାପଡ଼େ କଳିଙ୍ଗର 'ସିଂହବାହୁ' ନାମକ ଜଣେ ରାଜା ସିଂହଳକୁ ଯାଇ ସେଠାରେ ସାମ୍ରାଜ୍ୟ ପ୍ରତିଷ୍ଠା କରି ରହିଥିଲେ ଏବଂ ସିଂହଳୀୟ ରାଜବଂଶ ସହିତ କଳିଙ୍ଗ ରାଜବଂଶୀଙ୍କ ସମ୍ପର୍କ ଉତ୍ତର କାଳରେ ଗଢ଼ି ଉଠିଥିଲା । ଏଥିରୁ ମଧ୍ୟ ବୁଦ୍ଧଦେବଙ୍କ ଜନ୍ମପୂର୍ବରୁ କଳିଙ୍ଗ ଏକ ସମୃଦ୍ଧିଶାଳୀ ତଥା ଉନ୍ନତ ସଭ୍ୟତା ସମ୍ପନ୍ନ ଦେଶଭାବେ ଖ୍ୟାତି ଅର୍ଜନ କରିଥିଲା ଏବଂ ସୁଦୃଢ଼ ନୌକା ସାହାଯ୍ୟରେ ସିଂହଳ ସମେତ ଅନ୍ୟାନ୍ୟ ଦ୍ୱୀପ ସହିତ ସମ୍ପର୍କ ସ୍ଥାପନ କରିଆସିଥିଲା ବୋଲି ସ୍ପଷ୍ଟ ହୁଏ । ଏହାର ଉପକୂଳ ବନ୍ଦରମାନ ନୌଚଳାଚଳ ନିମିତ୍ତ ଅଧିକ ନିରାପଦ ନଥିଲେ ଇତର ବନ୍ଦର ପରିବର୍ତ୍ତେ ବୁଦ୍ଧଦନ୍ତ କେବଳ କଳିଙ୍ଗ ବନ୍ଦରରୁ ସିଂହଳକୁ ପ୍ରେରିତ ହୁଅନ୍ତା କାହିଁକି ! ଅତଏବ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀ ଆଗରୁ କଳିଙ୍ଗ ନୌଚାଳନା ଓ ଦ୍ୱୀପାନ୍ତର ଗମନାଦି କାର୍ଯ୍ୟରେ ବିଶେଷ ଦକ୍ଷତା ଅର୍ଜନ କରିଥିଲା ବୋଲି କହିବା ଅଯୁକ୍ତ ନୁହେଁ ।

ବୌଦ୍ଧଗ୍ରନ୍ଥ ଛଡ଼ା ଜୈନ ଧର୍ମଶାସ୍ତ୍ରଗୁଡ଼ିକରେ ସମୀକ୍ଷା କଲେ ସୁଦ୍ଧା ସେଇକଥା ପ୍ରମାଣିତ ହୁଏ । ଜୈନମାନଙ୍କ ପ୍ରାଚୀନ କିମ୍ବଦନ୍ତୀ ବର୍ଣ୍ଣନା ଥିବା 'ଆବଶ୍ୟକସୂତ୍ର' ଗ୍ରନ୍ଥରେ ସେହି ଧର୍ମର ଅନ୍ତିମ ତୀର୍ଥଙ୍କର ମହାବୀର ବର୍ଦ୍ଧମାନ ଆପଣା ଧର୍ମ ପ୍ରଚାର ପାଇଁ 'ତୋଷଳୀ'କୁ

ଯାଇଥିଲେ ଓ ସେଠାରେ ସେ କାର୍ଯ୍ୟ କରିସାରି 'ମୋଷଲୀ' ଆଡ଼କୁ ଅଗ୍ରସର ହୋଇଥିଲେ ବୋଲି ଲେଖାଅଛି । ଏ କଥାକୁ ଜୈନକବି ହରିଭଦ୍ରଙ୍କ 'ହରିଭଦ୍ରୀୟବୃତ୍ତି'ରେ ଆହୁରି ସ୍ପଷ୍ଟ କରିଦିଆହୋଇଛି । ତାଙ୍କ କହିବାରେ, ତତ୍କାଳୀନ କଳିଙ୍ଗରାଜାଙ୍କ ନିମନ୍ତ୍ରଣରେ ମହାବୀର ଧର୍ମପ୍ରଚାର କରିବା ନିମନ୍ତେ କଳିଙ୍ଗକୁ ଯାଇଥିଲେ । ମହାବୀରଙ୍କ ପିତା ଓ କଳିଙ୍ଗ ନରପତିଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା । କଳିଙ୍ଗ ରାଜା ଜୈନଧର୍ମର ବଳିଷ୍ଠ ପୃଷ୍ଠପୋଷକ ଥିଲେ । ସେହି କାରଣରୁ ପିତୃବନ୍ଧୁଙ୍କ ନିମନ୍ତ୍ରଣକୁ ମହାବୀର ଉପେକ୍ଷା କରିପାରି ନଥିଲେ । ମହାବୀର ବର୍ଦ୍ଧମାନ ଖ୍ରୀ:ପୂ: ପାଞ୍ଚଣ ଶତକ ମସିହାରେ ଆବିର୍ଭୂତ ହୋଇଥିଲେ ବୋଲି ଇତିହାସ କହେ । ଏଥିରୁ ମଧ୍ୟ ଜଣାପଡ଼େ, ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀ ବେଳକୁ କଳିଙ୍ଗ ଏକ ଖ୍ୟାତିସମ୍ପନ୍ନ ରାଜ୍ୟ ରୂପେ ଓ ତୋଷଳୀ ତାର ରାଜଧାନୀ ରୂପେ ପ୍ରତିଷ୍ଠା ପାଇ ଆସିଥିଲା । ସେଠାରୁ ବର୍ଦ୍ଧମାନ 'ମୋଷଲୀ'କୁ ଯାଇଥିବା କଥାର ଯେଉଁ ଉଲ୍ଲେଖ ରହିଛି ତାହା ବୋଧହୁଏ କଳିଙ୍ଗର ଦକ୍ଷିଣସୀମା ଗୋଦାବରୀ ନଦୀର ଆରପଟେ ଥିଲା । 'ମୋଷଲୀ' ଦକ୍ଷିଣ ଭାରତରେ ପ୍ରବାହିତ କୃଷ୍ଣା ଓ ଗୋଦାବରୀ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ବୋଲି ବର୍ତ୍ତମାନ ଚିହ୍ନିତ କରାଯାଇଛି । ସେଇକଥା ଯଦି ହୁଏ, ପରିପ୍ଲସ୍‌ରେ ବର୍ଣ୍ଣିତ 'ମୁସଲିପଟ୍ଟମ୍' ଓ 'ମୋଷଲୀ' ଦୁଇଟି ଅଭିନ୍ନ ବୋଲି ଅନାୟାସରେ କୁହାଯାଇପାରେ । ଯାହାହେଉ ଏଠାରେ ଖ୍ରୀ:ପୂ: ଷଷ୍ଠ ଶତକ କଳିଙ୍ଗର ଏକ ନିଖୁଣ ଚିତ୍ର ଦେଖିବାକୁ ମିଳେ ।

ଏହା ବାଦେ ଜୈନ ଗୁରୁ ପରମ୍ପରାର ଅନୁଶୀଳନ କଲେ ଆହୁରି ମଧ୍ୟ ଜଣାପଡ଼େ, କେବଳ ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀ ନୁହେଁ ଅଷ୍ଟମ ଶତାବ୍ଦୀରେ ସୁଦ୍ଧା ତତ୍କାଳ କଳିଙ୍ଗର ରାଜା 'କରକଣ୍ଡୁ' ଜୈନଧର୍ମର ତ୍ରୟୋଦଶ ତୀର୍ଥଙ୍କର ପାର୍ଶ୍ୱନାଥଙ୍କୁ ସ୍ୱଦେଶକୁ ଆମନ୍ତ୍ରଣ କରି ଆଣିଥିଲେ ଏବଂ ସେ ସ୍ୱକୀୟ ଧର୍ମର ପ୍ରଚାର କରିଯାଇଥିଲେ । ସେତେବେଳକୁ କଳିଙ୍ଗରେ 'ପିହୁଣ୍ଡ' ନାମକ ଏକ ବୃହଦାକାର ବନ୍ଦର ଥିଲା ଓ ତାହା ଜୈନମାନଙ୍କର ପ୍ରଧାନ ତୀର୍ଥସ୍ଥଳୀ ରୂପେ ବିବେଚିତ ହେଉଥିଲା ବୋଲି 'ଉତ୍ତରାଧ୍ୟୟନ' ସୂତ୍ରରେ ଉଲ୍ଲେଖ ଅଛି । ଅନୁମାନ ହୁଏ, ସେହିଠାରେ ଇତିହାସ ପ୍ରସିଦ୍ଧ 'ଜୀନାସନ' ପ୍ରତିଷ୍ଠିତ ଥିଲା । ପାର୍ଶ୍ୱନାଥଙ୍କ ଧର୍ମୋପଦେଶ କଳିଙ୍ଗବାସୀଙ୍କ ମନରେ ଏତେ ଦୂର ଗଭୀର ରେଖାପାତ କରିଥିଲା ଯାହାକୁ କେନ୍ଦ୍ରକରି ବିଭିନ୍ନ ଗାଥା ଓ କିମ୍ବଦନ୍ତୀ ସୃଷ୍ଟି ହୋଇଯାଇଥିଲା । ସେଗୁଡ଼ିକରେ କେତେଦୂର ସତ୍ୟତା ଅଛି ତାହା ଏଠାରେ ପ୍ରାସଂଗିକ ନୁହେଁ । ଏଥିରୁ ଏତିକି ମାତ୍ର ଅଧ୍ୟାହାର କରିବାର କଥା, ଖ୍ରୀ:ପୂ: ଅଷ୍ଟମ ଶତାବ୍ଦୀରେ କଳିଙ୍ଗର ରାଜନୈତିକ ତଥା ଧାର୍ମିକ ଚିନ୍ତାଧାରା ଅନୁନ୍ନତ ଅବସ୍ଥାରେ ନଥିଲା; ବରଂ ଉତ୍କୃଷ୍ଟ ଥିଲା କହିଲେ ଯୁକ୍ତିସଂଗତ ହେବ ।

ବର୍ତ୍ତମାନ ଖ୍ରୀ:ପୂ: ଯୁଗରେ ଲିଖିତ ସଂସ୍କୃତ ରଚନାମାନଙ୍କରେ ପ୍ରଦତ୍ତ ବିବରଣୀ ସମ୍ବନ୍ଧରେ ଆଲୋଚନା କରିବା । ସଂସ୍କୃତ ପୁରାଣମାନଙ୍କରେ ବିଶେଷ କରି ମହାଭାରତ, ବିଷ୍ଣୁପୁରାଣ, ମତ୍ସ୍ୟ ପୁରାଣ, ବ୍ରହ୍ମପୁରାଣ, ପଦ୍ମ ପୁରାଣ, ମାର୍କଣ୍ଡେୟ ପୁରାଣ, କୂର୍ମ ପୁରାଣ, ସ୍କନ୍ଦ ପୁରାଣ ଓ ବାୟୁପୁରାଣରେ କଳିଙ୍ଗର ନାମୋଲ୍ଲେଖ ଦେଖାଯାଏ । ସେ ମଧ୍ୟରେ କେତେକରେ

ତାହାର ପ୍ରତ୍ୟକ୍ଷ ବର୍ଣ୍ଣନା ଦୃଷ୍ଟ ହେଲାବେଳେ ଆଉ କେତେକରେ ତାହା ପରୋକ୍ଷ ଭାବେ ବର୍ଣ୍ଣିତ । ମହାଭାରତରେ ଉକ୍ତ ଅଛି ବୈତରଣୀ ନଦୀ ପ୍ରବାହିତ ହେଉଥିବା ଦେଶର ନାମ 'କଳିଙ୍ଗ' । ତନ୍ନିତ୍ୟ ଅଧିବାସୀ ଶାଶ୍ୱତ ଧର୍ମରେ ଦୀକ୍ଷିତ ଅଟନ୍ତି । ମତ୍ସ୍ୟ, କୂର୍ମ, ପଦ୍ମ ଓ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି—କଳିଙ୍ଗ ଦେଶର ପଶ୍ଚିମ ଭାଗରେ 'ଅମରକଣ୍ଟକ' ନାମକ ଏକ ପର୍ବତ ଅଛି ଓ ସେଠାରେ ବହୁବିଧ ଜାତି ବାସ କରି ରହିଛନ୍ତି । ମାର୍କଣ୍ଡେୟ ପୁରାଣରେ କଥିତ ଅଛି 'କଳିଙ୍ଗ' ଦକ୍ଷିଣପୂର୍ବ ଭାରତର ଏକ ପ୍ରସିଦ୍ଧ ଭୂଖଣ୍ଡ ଏବଂ ଦକ୍ଷିଣାପଥ ଲଗାଲଗି ଗୋଟିଏ ସମୃଦ୍ଧିଶାଳୀ ଜନପଦ । ଅପେକ୍ଷାକୃତ ପୁରାତନ ବାୟୁ ପୁରାଣରେ ଲେଖାଅଛି, 'କଳିଙ୍ଗ' ଏକ ଅପବିତ୍ର ଦେଶ । ଏହାର ସୀମା 'ମହେନ୍ଦ୍ର'ଠାରୁ 'ମହିଷ' (ମେଦିନୀପୁର) ପର୍ଯ୍ୟନ୍ତ ଥିଲା । ସେ ରାଜ୍ୟ 'ଗୁହ' ନାମକ ଜଣେ ଅନାର୍ଯ୍ୟ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ସେଠାକୁ ଗଲେ ପ୍ରାୟଶ୍ଚିତ୍ତ କରିବାକୁ ପଡ଼େ ।' ବୋଧହୁଏ ସେହି 'ଗୁହ' ଯେ କି ବୌଦ୍ଧ 'ଦାଠା' ବଂଶରେ 'ଗୁହଶିବ' ନାମରେ ଅଭିହିତ । ଏହାଙ୍କ କାଳ ଖ୍ରୀ:ପୂ: ତୃତୀୟ ଶତାବ୍ଦୀ ବୋଲି ଐତିହାସିକମାନେ କହନ୍ତି । ବାୟୁ ପୁରାଣର ଉକ୍ତିକୁ 'ଶତପଥ ବ୍ରାହ୍ମଣ' ଓ 'ବୌଧାୟନ ଧର୍ମସୂତ୍ର' ମଧ୍ୟ ସମର୍ଥନ କରନ୍ତି । ବିଷ୍ଣୁ ପୁରାଣରେ ଉକ୍ତ ଅଛି—କଳିଙ୍ଗରେ ବିଭିନ୍ନ ଶ୍ରେଣୀର 'ଦ୍ୱିଜ' ବାସକରନ୍ତି । ସେମାନେ ସର୍ବବିଧ ଶାସ୍ତ୍ର ପୁରାଣରେ ନିଷ୍ଣାତ ଓ ବେଦବେଦାଙ୍ଗରେ ପାରଙ୍ଗମ । ମହାଭାରତର ଶାନ୍ତି ପର୍ବରେ ସେହି କଥାର ପରୋକ୍ଷ ଉଲ୍ଲେଖ ରହିଛି । ସେଥିରେ କୁହାଯାଇଛି—କୁରୁରାଜ ଦୁର୍ଯ୍ୟୋଧନ କଳିଙ୍ଗ ରାଜକନ୍ୟା 'ଚନ୍ଦ୍ରାଙ୍ଗଦା'ର ପାଣିଗ୍ରହଣ କରିଥିଲେ । କିନ୍ତୁ ଦୁର୍ଯ୍ୟୋଧନ ଜଣେ ବ୍ରାହ୍ମଣ୍ୟ-ଧର୍ମୀ ଆର୍ଯ୍ୟ ରାଜା ଥିଲେ ।

ଉପର୍ଯ୍ୟୁକ୍ତ ବିବରଣୀମାନ ଅନୁଧ୍ୟାନ କଲେ କଳିଙ୍ଗ କେତେବେଳେ ମ୍ଳେଚ୍ଛ ଦେଶ ଓ ଆଉ କେତେବେଳେ ପବିତ୍ର ଦେଶ ବୋଲି ବର୍ଣ୍ଣିତ ହୋଇଆସିଥିବା ଜଣାପଡ଼େ । କାରଣ ଖୋଜି ବସିଲେ ବେଶୀ ଦୂର ଯିବାକୁ ପଡ଼େ ନାହିଁ । ପୁରାଣଗୁଡ଼ିକ କେଉଁ ସମୟରେ ରଚିତ ସେ ବିଷୟ ଅଦ୍ୟାପି ବିବାଦମାନ । କିଏ ଏହାର ରଚନାକାଳ ଖ୍ରୀ:ପୂ: ଶତାବ୍ଦୀ କହିଲାବେଳେ ଆଉ କିଏ ଖ୍ରୀ:ପୂ:ର ବୋଲି ପ୍ରମାଣ କରନ୍ତି । ଖାଲି ପୁରାଣ ନୁହେଁ ଖୋଦ୍ ବ୍ୟାସକୃତ ମହାଭାରତ ସମ୍ବନ୍ଧରେ ମଧ୍ୟ ସେଇକଥା । ବର୍ତ୍ତମାନ ପ୍ରଚଳିତ ଲକ୍ଷଶ୍ଳୋକୀ ମହାଭାରତକୁ ବ୍ୟାସକୃତ ବୋଲି ସ୍ୱୀକାର କରିବାକୁ ଅନେକେ ପଶ୍ଚାତ୍ପଦ । ସେମାନଙ୍କ ମତରେ 'ଜୟ' ନାମକ ଇତିହାସ ହେଉଛି 'ବ୍ୟାସ'ଙ୍କ ମୂଳ ରଚନା । ପରଯୁଗରେ ବିଭିନ୍ନ କବି ପଣ୍ଡିତଙ୍କଦ୍ୱାରା ପ୍ରକ୍ଷିପ୍ତାଂଶମାନ ଯୁକ୍ତ ହୋଇ ତାହା ଏବର ମହାଭାରତ ରୂପ ଧାରଣ କରିଛି । ତାଙ୍କ କହିବାରେ 'ଜୟ' କୁରୁ-ପାଣ୍ଡବ ଯୁଦ୍ଧ ବର୍ଣ୍ଣନା ସମ୍ବଳିତ ଏକ କ୍ଷୁଦ୍ର କାବ୍ୟ । ତାହା ପରବର୍ତ୍ତୀ ଯୁଗରେ ଭରତବଂଶୀ ରାଜାଙ୍କ ନାମରେ 'ଭାରତ' ହୋଇ ଉତ୍ତର କାଳରେ 'ମହାଭାରତ' ଆଖ୍ୟା ଲାଭ କରିଛି । ଏହାର ସମର୍ଥନରେ ସେମାନେ ନିମ୍ନଲିଖିତ ଶ୍ଳୋକଟିର ଦୃଷ୍ଟାନ୍ତ ଦିଅନ୍ତି ।

"ମନ୍ୱାଦି ଭାରତଂ କେଚଦାସ୍ତିକ୍ୟାଦି ତଥାପରେ
ତଥୋପରିଚରାଦ୍ୟନ୍ୟେ ବିପ୍ରାଃ ସମ୍ୟଗଧୀୟିରେ ।"

ଏଥିରୁ ସୂଚନା ମିଳେ ଯେ ମହାଭାରତ ଏବର ରୂପ ନେବାକୁ ତିନୋଟି ସ୍ତର ଅତିକ୍ରମ କରିବାକୁ ପଡ଼ିଛି । ତେଣୁ ସେଥିରେ ବର୍ଣ୍ଣିତ କଳିଙ୍ଗ ରାଜକନ୍ୟା ସହିତ ଦୁର୍ଯ୍ୟୋଧନଙ୍କ ବିବାହଗାଥା ପରବର୍ତ୍ତୀ ବିଭିନ୍ନ ପ୍ରକ୍ଷେପାଂଶ ମଧ୍ୟରୁ ଅନ୍ୟତମ କହିଲେ ଅସଙ୍ଗତ ହେବ ନାହିଁ । ବରଂ ଏ ଅଂଶଟି ବାୟୁପୁରାଣ ରଚନାର ପରକାଳରେ ସଂଯୋଜିତ କହିବା ଅଧିକ ଯୁକ୍ତିସଂଗତ ।

ପଣ୍ଡିତମାନଙ୍କ ମତରେ ସଂହିତା ତଥା ଉପନିଷଦ୍ ଯୁଗର ପରବର୍ତ୍ତୀ ଏବଂ ପୁରାଣର ପୂର୍ବବର୍ତ୍ତୀ ରଚନା ଶୈଳୀ ହେଉଛି 'ସୂତ୍ର' । ଏହା ଠିକ୍ କେବେ ଆରମ୍ଭ ହେଲା ତା'ର ବିଧିବଦ୍ଧ ପ୍ରମାଣ ନାହିଁ, କିନ୍ତୁ ଏତିକି କୁହାଯାଇପାରେ—ସୂତ୍ର ଶୈଳୀ ଖ୍ରୀ: ପୂ: ତୃତୀୟ ଶତାବ୍ଦୀର କୌଟିଲ୍ୟଙ୍କ ପର୍ଯ୍ୟନ୍ତ ଆଦୃତ ହୋଇଆସିଥିଲା । ତା' ବୋଲି ସୂତ୍ର ଶୈଳୀ ଛଡ଼ା ଅନ୍ୟ କୌଣସି ସରଳ ଓ ସାବଲୀଳ ଶୈଳୀ ସେ ଯୁଗରେ ସୃଷ୍ଟି ହୋଇନଥିଲା କହିବା ସମୀଚୀନ ନୁହେଁ । କାରଣ ଯେତେ ଲୋକପ୍ରିୟ ଓ ଶ୍ରୁତିରଂଜକ ହେଉ ପଛେ କୌଣସି ରଚନା ଶୈଳୀ ଚିରକାଳ ସମାଦୃତ ହୋଇ ରହେ ନାହିଁ । ଆରମ୍ଭରେ ଯାହା ମନୋରଞ୍ଜକ, ପୁରୁଣା ହୋଇ ଆସିଲେ ତାହାହିଁ ବିରକ୍ତିକର ହୋଇଉଠେ । ଏହା ସାର୍ବଜନୀନ ଓ ସାର୍ବକାଳୀନ । ସେଥିଯୋଗୁ ବୋଧହୁଏ ପୁରୁଣା ସୂତ୍ର ଶୈଳୀ ପ୍ରତି କବି-ଲେଖକଙ୍କ ଆଗ୍ରହ କ୍ରମଶଃ କ୍ଷୀଣ ହୋଇଆସିଛି ଏବଂ ନୂତନ ଶୈଳୀର ଉଦ୍‌ଭାବନ ଘଟିଛି । ଫଳରେ ଦୁର୍ବୋଧ୍ୟ ସୂତ୍ର ଶୈଳୀ ସାଙ୍ଗକୁ ସୁବୋଧ ବୃତ୍ତି ଶୈଳୀ ପ୍ରବର୍ତ୍ତିତ ହୋଇ-ପଡ଼ିଛି ଯାହା ପୁରାଣମାନଙ୍କରେ ଦେଖିବାକୁ ମିଳେ । ଏଣୁ ଅନ୍ତତଃ କେତୋଟି ପୁରାଣ ସୂତ୍ର ଯୁଗର ସମସାମୟିକ ରଚନା ହୋଇଥିଲାବେଳେ ଅନ୍ୟ ଗୁଡ଼ିକ ପରବର୍ତ୍ତୀକାଳରେ ଲେଖାଯାଇଥିବା ବିଶେଷ ସମ୍ଭାବନା । **ସେ** ଦୃଷ୍ଟିରୁ ବିଚାର କଲେ 'ବାୟୁ ପୁରାଣ' ସୂତ୍ରଯୁଗର ସମସାମୟିକ ରଚନା ବୋଲି କୁହାଯାଇପାରେ । ତା' ନହୋଇଥିଲେ ଏକ ଦିଗରେ ପଦ୍ମ, କୂର୍ମ, ମାର୍କଣ୍ଡେୟ, ବିଷ୍ଣୁ ଓ ସ୍କନ୍ଦାଦି ପୁରାଣ ଓ ଅନ୍ୟ ଦିଗରେ ବାୟୁ ପୁରାଣ ବର୍ଣ୍ଣିତ କଳିଙ୍ଗର ଦେଶାଚାର ମଧ୍ୟରେ ଏତେ ବୈଷମ୍ୟ ଦୃଷ୍ଟ ହୋଇନଥାନ୍ତା । ପକ୍ଷାନ୍ତରେ ବୌଧାୟନ ଧର୍ମସୂତ୍ର ଓ ଶତପଥ ବ୍ରାହ୍ମଣରେ ସୂଚିତ କଳିଙ୍ଗର ସାମାଜିକ ସଂସ୍କୃତି ବାୟୁ ପୁରାଣରେ ସ୍ପଷ୍ଟ ପ୍ରତିଫଳିତ । ଏ ସବୁର **ନିର୍ଯ୍ୟାସ** ସ୍ୱରୂପ **କହି**ପାରୁ, କଳିଙ୍ଗ ସୂତ୍ରଯୁଗରେ ଏକ ମ୍ଳେଚ୍ଛ ରାଜ୍ୟ ରୂପେ ବିବେଚିତ ହୋଇଥିଲା ଏବଂ ପରେ ପବିତ୍ର ଦେଶଭାବେ ଧର୍ମଶାସ୍ତ୍ରୀୟ ଅନୁମୋଦନ ଲାଭକରିଛି ।

ସୂତ୍ର ଯୁଗର ଆରମ୍ଭ ଓ ସମାପ୍ତିକାଳ ସମ୍ବନ୍ଧରେ ବିଦ୍‌ବିଦ୍‌ମାନେ କି ପ୍ରକାର ମନ୍ତବ୍ୟ ଦିଅନ୍ତି ଦେଖିବାର କଥା । ସଂସ୍କୃତ ଭାଷାବିତ୍ଙ୍କ ବିଦେଶୀ ପଣ୍ଡିତ ମାକ୍‌ସ୍‌ମୁଲର୍‌ଙ୍କ କଥା

ପ୍ରଥମେ ଧରିଯାଉ । ସେ କହନ୍ତି, ବୈଦିକ ସାହିତ୍ୟର ରଚନାକାଳ ଚାରି ଯୁଗରେ ବିଭକ୍ତ- ଛନ୍ଦ ଯୁଗ, ମନ୍ତ୍ର ଯୁଗ, ବ୍ରାହ୍ମଣ ଯୁଗ ଓ ସୂତ୍ର ଯୁଗ । ଖ୍ରୀ:ପୂ: ୧୨୦୦-୧୦୦୦ ମଧ୍ୟକାଳ ଛନ୍ଦଯୁଗ, ୧୦୦୦-୮୦୦ ମନ୍ତ୍ର ଯୁଗ, ୮୦୦-୬୦୦ ବ୍ରାହ୍ମଣ ଯୁଗ, ୬୦୦-୪୦୦ ସୂତ୍ର ଯୁଗ । ବୈଦିକ ଅନୁକ୍ରମଣୀ ଲେଖକ ଶୌନକ ଓ କାତ୍ୟାୟନଙ୍କୁ ଅନୁସରଣ କରି ସେ ଏହା ଲେଖିଛନ୍ତି । କିନ୍ତୁ 'ପିଟରସନ୍' ସାହେବଙ୍କ ମତରେ ବେଦ ରଚନା କାଳ ହେଉଛି ଖ୍ରୀ:ପୂ: ୧୫୦୦ ଶତାବ୍ଦୀ । ଏ ଅନୁସାରେ ସୂତ୍ର ଯୁଗ, ମେକ୍ସମୁଲର୍‌ଙ୍କ ଗଣନାନୁଯାୟୀ ଆହୁରି ତିନିଶହ ବର୍ଷ ଆଗକୁ ଚାଲିଯାଏ । ସେହିପରି ବେଦଙ୍କ ସମାଲୋଚକ 'ମାକ୍‌ଡୋନେଲ୍' ଏବଂ ବିଖ୍ୟାତ ଐତିହାସିକ 'ଭିଣ୍ଟର୍' ସୂତ୍ର ଯୁଗକୁ ଯଥାକ୍ରମେ ଖ୍ରୀ:ପୂ: ୫୦୦-୬୦୦ ଏବଂ ୮୦୦-୧୦୦୦ ବୋଲି ଧରି ନଅନ୍ତି । ମେକ୍ସମୁଲର୍‌ଙ୍କ ଗଣନା ସୂତ୍ର ଅନୁଯାୟୀ ଏ ସବୁ ଆନୁମାନିକ କାଳମାନ । କିନ୍ତୁ ଜ୍ୟୋତିର୍ବିଜ୍ଞାନୀ ହାଗ୍ (Haug) ସାହେବ 'ବେଦାଙ୍ଗ-ଜ୍ୟୋତିଷ' ଅବଲମ୍ବନରେ ସୌରକକ୍ଷ ନିରୂପଣ କରି ବେଦର ରଚନାକାଳ ଖ୍ରୀ:ପୂ: ୨୪୦୦-୨୦୦୦ ବର୍ଷ ମଧ୍ୟରେ ବୋଲି ସିଦ୍ଧାନ୍ତ କରନ୍ତି । ତାଙ୍କ ମତରେ ବୈଦିକ ଯୁଗ ଖ୍ରୀ: ପୂ: ୨୪୦୦-୨୦୦୦, ସଂହିତା ଯୁଗ ୨୦୦୦-୧୬୦୦, ବ୍ରାହ୍ମଣଯୁଗ ୧୬୦୦-୧୨୦୦ ଏବଂ ସୂତ୍ର ଯୁଗ ୧୨୦୦-୮୦୦ । ଏହାଙ୍କ ଛଡ଼ା ଭାରତୀୟ ଜ୍ୟୋତିଃଶାସ୍ତ୍ରପ୍ରଣେତା ଶ୍ରୀ ଏସ୍. ବି. ଦୀକ୍ଷିତ ଶତପଥ ବ୍ରାହ୍ମଣରୁ ଅଂଶଟିଏ ଧରି ତାହା ଖ୍ରୀ:ପୂ: ୩୦୦୦ ବର୍ଷର ରଚନା ବୋଲି ଅନୁମାନ କରନ୍ତି । ଯଦି ଯୁଗକାଳକୁ ୧୦୦୦ ବର୍ଷ ଧରିଯାଏ ତା' ହେଲେ ବ୍ରାହ୍ମଣ ପରବର୍ତ୍ତୀ ସୂତ୍ରଯୁଗ ନିଶ୍ଚେ ଖ୍ରୀ:ପୂ: ୨୦୦୦-୧୦୦୦ ବର୍ଷ ବୋଲି କହିବାକୁ ପଡ଼ିବ । ପୁଣି ଲୋକମାନ୍ୟ ବାଳଗଙ୍ଗାଧର ତିଲକଙ୍କ ଗଣନାନୁସାରେ ସୂତ୍ରଯୁଗ ଖ୍ରୀ:ପୂ: ୧୪୦୦ ରୁ ୫୦୦ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ଗଣନାରେ ଧ୍ରୁବ ନକ୍ଷତ୍ରକୁ ଭିତ୍ତିକରି ଜାକୋବ ମଧ୍ୟ ତିଲକଙ୍କ ମତକୁ ସମର୍ଥନ କରନ୍ତି ।

ଏଣୁ ମୋଟାମୋଟି ଭାବେ ବିଚାର କଲେ ବୈଦିକ ସାହିତ୍ୟର ରଚନାକାଳ ନିର୍ଣ୍ଣୟ ଉପରେ ସୂତ୍ର ଯୁଗର ସମୟସୀମା ନିରୂପିତ ହୋଇଛି ବୋଲି ଜଣାପଡ଼େ । ବେଦ ରଚନା କାଳ ଯଦି ଖ୍ରୀ:ପୂ: ୩୦୦୦ ବର୍ଷ ଧରିଯାଏ, ତେବେ ସୂତ୍ରଯୁଗ ଖ୍ରୀ:ପୂ: ୧୨୦୦ରୁ ୬୦୦ ବର୍ଷ ବୋଲି ନିଶ୍ଚେ କହିବାକୁ ପଡ଼ିବ । ଆଉ ଏକ ଦିଗରୁ ବିଚାର କଲେ ମଧ୍ୟ ଏ ସମ୍ଭାବନା ତଥ୍ୟଭିତ୍ତିକ ବୋଲି ମନେହୁଏ । କାରଣ ଆର୍ଯ୍ୟ ଋଷିଙ୍କ ଦ୍ୱାରା ବେଦମନ୍ତ୍ରମାନ ରଚିତ ହୋଇଥିବା ବିଷୟରେ କାହାରି ଦ୍ୱିମତ ନାହିଁ । ଐତିହାସିକଙ୍କ ମତରେ ସିନ୍ଧୁ ଉପତ୍ୟକାର ଆଦିମ ଅଧିବାସୀମାନେ ଲୁହାର ବ୍ୟବହାର ଜାଣିନଥିଲେ, ଆର୍ଯ୍ୟମାନଙ୍କ ସଂସ୍ପର୍ଶରେ ଆସିବାରୁ ପ୍ରଥମ କରି କୁଆଡ଼େ ଲୌହ ଧାତୁ ସମ୍ବନ୍ଧରେ ଜ୍ଞାନ ଅର୍ଜନ କଲେ । ଏଣୁ ଆର୍ଯ୍ୟମାନଙ୍କଠାରୁ ହିଁ ଲୌହଯୁଗର ସୂତ୍ରପାତ ହୋଇଥିଲା ବୋଲି କହନ୍ତି । ଲୌହ ଯୁଗକୁ ଖ୍ରୀ: ପୂ: ୩୦୦୦ ବର୍ଷ ବୋଲି ଗ୍ରହଣ କଲେ ବେଦମନ୍ତ୍ର

ରଚନାକାଳ ମଧ୍ୟ ସେୟା ହେବା ସ୍ୱାଭାବିକ୍ । ତାମ୍ରଯୁଗ ଓ ଲୌହ ଯୁଗର ମଧ୍ୟକାଳ ହେଉଛି ଖ୍ରୀ:ପୂ: ୩୦୦୦-୧୦୦୦ ବର୍ଷ ଏବଂ ସେ ମଧ୍ୟରେ ସୂତ୍ର ଯୁଗର ଆରମ୍ଭ ଘଟିଥିଲା । ଏଣୁ ସୂତ୍ରଯୁଗକୁ ଖ୍ରୀ:ପୂ: ୧୨୦୦-୬୦୦ ବର୍ଷ ବୋଲି ଜ୍ୟୋତିର୍ବିଜ୍ଞାନିକ ଗଣନାନୁସାରେ କରାଯାଇଥିବା ଲୋକମାନ୍ୟ ତିଲକ ଓ ମନୀଷୀ ଜାକୋବିଙ୍କ ମତ ଦୁଇଟି ନିର୍ଭୁଲ କହିବା ଯୁକ୍ତିଯୁକ୍ତ । ସେ ଯୁଗରେ ରଚିତ ଗ୍ରନ୍ଥମାନଙ୍କରେ 'କଳିଙ୍ଗ'ର ବିବରଣୀ ଦେଖି କିଏ କହିବ ସେତେବେଳକୁ ଏହା ଏକ ସୁପ୍ରତିଷ୍ଠିତ ରାଜ୍ୟ ନଥିଲା !

---

# ଦ୍ୱିତୀୟ ପ୍ରକାଶ :

## କଳିଙ୍ଗର ସୃଷ୍ଟି ଓ ସଂପ୍ରସାରଣ

ଏଥିପୂର୍ବେ ସୂଚନା ଦିଆଯାଇଛି, ସୂତ୍ର ଯୁଗରେ ମ୍ଳେଚ୍ଛ ଦେଶ ରୂପେ ବିବେଚିତ କଳିଙ୍ଗରେ ପ୍ରବେଶ କଲେ କଠୋର ପ୍ରାୟଶ୍ଚିତ୍ତ ବିଧିର ବ୍ୟବସ୍ଥା ଥିଲା; ଯେହେତୁ ତନ୍ଦେଶୀୟ ଅଧିବାସୀ ଆର୍ଯ୍ୟଶ୍ରେଣୀଭୁକ୍ତ ନଥିଲେ । ତେବେ କିଏ ଥିଲେ ସେମାନେ ?

ଏ ସମ୍ବନ୍ଧରେ ଆଲୋଚନା କରିବା ପୂର୍ବରୁ ପ୍ରାଚୀନ ଭାରତବର୍ଷର ଭୌଗୋଳିକ ପରିବେଶ ତଥା ମାନବ ସମାଜ ସମ୍ବନ୍ଧରେ କିଂଚିତ୍ ଧାରଣା ଆବଶ୍ୟକ । ଆଦିମତମ ମାନବର ସୃଷ୍ଟି, ସ୍ଥିତି ଓ ଅଭିବୃଦ୍ଧି ସମ୍ପର୍କରେ ଯେତିକି ଆଲୋଚନା ଏ ପର୍ଯ୍ୟନ୍ତ ହୋଇ ଆସିଛି ସେଥିରୁ ଜଣାପଡ଼େ ଯେ ଆନୁମାନିକ ପାଞ୍ଚଲକ୍ଷ ବର୍ଷ ଆଗରୁ ପୃଥିବୀର ଅନ୍ୟାନ୍ୟ ପ୍ରାନ୍ତ ପରି ଭାରତରେ ମଧ୍ୟ 'ମନୁଷ୍ୟ' ନାମକ ଜୀବର ଆବିର୍ଭାବ ଘଟିଥିଲା । ସେ ସେଠାରେ ସର୍ବପ୍ରଥମ ସୃଷ୍ଟ ମଣିଷ କିମ୍ବା ପରବର୍ତ୍ତୀକାଳର ସୃଷ୍ଟି ତାହା ଏଠାରେ ବିଚାର୍ଯ୍ୟ ନୁହେଁ; କିନ୍ତୁ ଏ କଥା ନିଶ୍ଚିତ ଯେ ପାଞ୍ଚଲକ୍ଷ ହେଉ କିମ୍ବା ତଦୂର୍ଦ୍ଧ୍ୱ ବର୍ଷ ଆଗରୁ ହେଉ, ମଣିଷ ନାମକ ପ୍ରାଣୀ ଯଦି ପୃଥିବୀରେ ଦେଖାଦେଇଥିଲା ତେବେ ଭାରତବର୍ଷରେ ମଧ୍ୟ ତତ୍ସଦୃଶ ପ୍ରାଣୀର ସୃଷ୍ଟି ଅବଶ୍ୟ ଘଟିଥିବ । ଅନ୍ୟ ପ୍ରାନ୍ତର ମଣିଷ ସଦୃଶ ସେମାନେ ମଧ୍ୟ ବିବର୍ତ୍ତନ ମଧ୍ୟ ଦେଇ କ୍ରମବିକାଶ ପଥରେ ଅଗ୍ରସର ହୋଇଥିବେ । ପୁରାତନ ପ୍ରସ୍ତର, ନୂତନ ପ୍ରସ୍ତର, ତାମ୍ରଯୁଗ ଓ ଲୌହ ଯୁଗର ବହମାନ ସ୍ରୋତ ମଧ୍ୟରେ ସେମାନଙ୍କ ସମ୍ଭାବିତ କାର୍ଯ୍ୟ-କଳାପ ଯଥାରୀତି ଭାସମାନ ହୋଇ ଆସିଥିବ, ଏଥିରେ ସନ୍ଦେହ ନାହିଁ । ସେହିମାନେ ଭାରତବର୍ଷର କେବଳ ଗୋଟିଏ ଅଞ୍ଚଳରେ ଦେଖାଦେଇଥିବେ ଏ ଭାବନା ମଧ୍ୟ ଯୁକ୍ତିଯୁକ୍ତ ନୁହେଁ, କାରଣ ଭୂବିଜ୍ଞାନ ଦୃଷ୍ଟିରୁ ଭାରତର ଜଳବାୟୁ, ଋତୁଚକ୍ର, ବାତାବରଣ, ଭୂତଳ ମୃତ୍ତିକା ପୃଥିବୀର ଯେ କୌଣସି ପ୍ରାନ୍ତ ତୁଳନାରେ ମନୁଷ୍ୟ ସୃଷ୍ଟି ପାଇଁ ଅତ୍ୟନ୍ତ ଅନୁକୂଳ । ଅବଶ୍ୟ ଭୂପୃଷ୍ଠର କେତେକଂଶ ପଞ୍ଚେନ୍ଦ୍ରିୟ ପ୍ରାଣୀ ସୃଷ୍ଟିର ଅଧିକତର ଉପଯୋଗୀ ଥିଲାବେଳେ ଆଉ କେତେକ ଅପେକ୍ଷାକୃତ କମ୍, ଏକଥା ସତ, ତଥାପି ସ୍ୱଭାବଜ ଗୁଣ ହେତୁ ମଣିଷ ମଣିଷ ଭିତରେ ଆଶ୍ଚର୍ଯ୍ୟଜନକ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ଖ୍ରୀ:ପୂ: ପଚିଶ ହଜାର ବର୍ଷରୁ ପାଞ୍ଚହଜାର ବର୍ଷ ପର୍ଯ୍ୟନ୍ତ ମଣିଷର ଏକ ବିବର୍ତ୍ତିତ ଜୀବନଧାରା ଗଢ଼ିଆସୁଥିଲା । ବଣଜଙ୍ଗଲରେ ବିଚ୍ଛିନ୍ନହୋଇ ରହି ପଶୁପକ୍ଷୀ ଶିକାର ଓ ବନଜାତ ଫଳମୂଳାଦିଦ୍ୱାରା ସେ ଜୀବନ ଧାରଣ କରୁଥିଲା । ପଥର,

ଖଣ୍ଡା, କାଷ୍ଠଦଣ୍ଡ ଓ ପଶୁକଙ୍କାଳ ପ୍ରଭୃତି ଉପକରଣ ସାହାଯ୍ୟରେ ଆତ୍ମରକ୍ଷା କରୁଥିଲା । ଗିରିଗୁହା କମ୍ବା ପଥର ସନ୍ଧରେ ଆଶ୍ରୟ ନେଇ ଖର ବର୍ଷା ଶୀତରୁ ଉଦ୍ଧାର ପାଉଥିଲା । ମୋଟାମୋଟି କହିଲେ ସେ ସର୍ବଜୀବ ସମାନ ପ୍ରକାରର ପଶୁଜୀବନ ଯାପନ କରୁଥିଲା । କିନ୍ତୁ ମନୁଷ୍ୟର ବିଚାରବୁଦ୍ଧି ଅନନ୍ୟସାଧାରଣ । ତାହା ଈଶ୍ୱରଦତ୍ତ ଓ ସ୍ୱଭାବସିଦ୍ଧ । ତା'ରି ବଳରେ କ୍ରମଶଃ ସେ ନାନାବିଧ ଉପାୟ ଉଦ୍‌ଭାବନ କରି ନିଜକୁ ଓ ପରିବାରବର୍ଗଙ୍କୁ ସୁରକ୍ଷିତ ରଖିବାରେ ଯତ୍ନଶୀଳ ହୋଇଛି । କଞ୍ଚା ବଦଳରେ ସିଦ୍ଧାହାର, ଜଳସଂରକ୍ଷଣପାଇଁ ମୃତ୍ତିକାପାତ୍ର, ଶସ୍ୟନାଦ ଉଦ୍ଦେଶ୍ୟରେ ତୃଣ ପର୍ଣ୍ଣି, ଆଶ୍ରୟଲାଗି ବାସଗୃହ ପ୍ରଭୃତି ଆବିଷ୍କାର କରିପାରିଛି । କ୍ଷୁଧା ତୃଷା ନିବାରକ ଖାଦ୍ୟ ପାନୀୟର ଅଯାଚିତ ଦାନ ଦେଖି ବଣ-ପର୍ବତ, ବୃକ୍ଷ-ଲତାଙ୍କୁ ଶୁଭାକାଂକ୍ଷୀ ଦେବତାରୂପେ ମାନିନେଇଛି, ସେଥିକି ନୁହେଁ, ଖାସ୍ ପରିବାର ମଧ୍ୟରେ ତାଙ୍କୁ ମୁରବିଭାବେ ପରିଗଣିତ କରିଛି । ଏ ସଭ୍ୟତାର ଯୁଗକାଳ ଯଦି ଖ୍ରୀ:ପୂ: ୨୫୦୦ ବର୍ଷରୁ ୫୦୦୦ ବୋଲି ଧରିଯାଏ, ତେବେ କହିପାରୁ ସେ ଯୁଗରେ ଯେଉଁ ମଣିଷ-ଜାତି ଭାରତବର୍ଷରେ ଦେଖାଦେଇଥିଲେ ସେ ଥିଲେ ସେ ସଭ୍ୟତା ସମ୍ପନ୍ନ ଅଧିବାସୀ— ଆଦିବାସୀ । ନାମ ଯାହା ଦିଆଯାଉ ପଛେ, ସେ ହିଁ ବିନ୍ଧ୍ୟାଞ୍ଚଳ ସମେତ ସମଗ୍ର ଭାରତ ଭୂଖଣ୍ଡର ଆଦିମତମ ମଣିଷଜାତି । ବୃକ୍ଷଲତା ପରିପୂର୍ଣ୍ଣ ଘନ ଜଙ୍ଗଲ, ବିଶେଷକରି ପାର୍ବତ୍ୟାଞ୍ଚଳରେ, ସେମାନେ ଅଧିକ ସଂଖ୍ୟାରେ ରହିଆସିଥିଲେ । ସେ ମଧ୍ୟରୁ କେତେକ ଏକପରିବାରଭୁକ୍ତ ଥିଲେ ତ ଆଉ କେତେକ ମିଳିତ ପରିବାର ଗଠନ କରିଥିଲେ । ଗୋଷ୍ଠୀ ଗୋଷ୍ଠୀ ମଧ୍ୟରେ ବିରୋଧଭାବ ପ୍ରାୟ ନଥିଲା କହିଲେ ଚଳେ । ସମସ୍ତେ କରଚରଣ ସାହାଯ୍ୟରେ ଜୀବିକା ଉପାର୍ଜନ କରୁଥିଲେ । ଏବେ ମଧ୍ୟ ନିପଟ ବନଅରଣ୍ୟରେ ସେକାଳ ମଣିଷର ଦାୟାଦମାନେ ବସବାସ କରି ତାଦୃଶ ଜୀବନ ଯାପନ କରୁଥିବା ଦେଖାଯାଏ, ଯେଉଁମାନଙ୍କୁ ଏବେ ସୁଦ୍ଧା ତଥାକଥିତ ଆଧୁନିକ ମାନବ ସଭ୍ୟତା ସ୍ପର୍ଶକରିନାହିଁ, ଏବେ ବି ସେମାନେ ଗିରି ଶିଖର ଅଧିବାସୀ—ଆଦିବାସୀ ।

ମହେଞ୍ଜୋଦାରୋ ଓ ହରପ୍‌ପାର ଭୂଖନନ ଏବଂ ପଶ୍ଚିମ ସମୁଦ୍ର ଶଯ୍ୟାରୁ ଦ୍ୱାରକାର ଅନୁସନ୍ଧାନ ଫଳରେ ମିଳିଥିବା ଉପାଦାନମାନ ଧରି ସିଦ୍ଧାନ୍ତ କରାଯାଉଛି ଯେ ଖ୍ରୀ. ପୂ. ପାଞ୍ଚ ହଜାରରୁ ତିନିହଜାର ବର୍ଷ ଭିତରେ ଭାରତର ଏପ୍ରାନ୍ତରୁ ସେ ପ୍ରାନ୍ତ ଯାଏଁ ଏକ ବିଶାଳ ସଭ୍ୟତା ପରିବ୍ୟାପ୍ତ ଥିଲା ଯାହା ସିନ୍ଧୁ ସଭ୍ୟତା ନାମରେ ଅଭିହିତ । ତାହାର ସ୍ରଷ୍ଟା ଥିଲେ ଦ୍ରମିଳ ନାମକ ଏକ ମାନବଗୋଷ୍ଠୀ । ସେମାନଙ୍କ ତାଡ଼ନାରେ ଶହ ଶହ ସଂଖ୍ୟକ ପ୍ରସ୍ତର ଯୁଗୀୟ ଆଦିମ ମଣିଷ ବଞ୍ଚି ରହିବା ନିମନ୍ତେ ବିଭିନ୍ନ ବଣ ପର୍ବତର ଆଶ୍ରୟ ନେବାକୁ ଲାଗିଲେ । ନୂତନ ସ୍ଥାନରେ ସମଧର୍ମୀ ମଣିଷଙ୍କଠାରୁ ସାହାଯ୍ୟ ଓ ସହଯୋଗ ପାଇବାରେ ସେମାନଙ୍କୁ ବିଶେଷ ଅସୁବିଧା ଭୋଗ କରିବାକୁ ପଡ଼ିନଥିବ, ଯେହେତୁ ଉଭୟେ ଏକା ସମୟର ମଣିଷ ଗୋଷ୍ଠୀ ଥିଲେ । ତା'ବୋଲି ପରସ୍ପର ମଧ୍ୟରେ ସେମାନଙ୍କର ସବୁକ୍ଷେତ୍ରରେ ସମାନତା ଥିଲା, ସ୍ୱା'

କୁହାଯାଇ ନପାରେ । ବର୍ତ୍ତମାନ ସୁଦ୍ଧା ସବୁ ଆଦିବାସୀ ସମାଜର ଏକାଧିକ କ୍ଷେତ୍ରରେ ଅସମାନତା ପରିଦୃଷ୍ଟ ହୁଏ । କିନ୍ତୁ ଅସମାନତା ମଧ୍ୟରେ ସୁଦ୍ଧା ଏକ ଯୋଗସୂତ୍ର ରହିଥିଲା ଯାହା ସମସ୍ତ ଗୋଷ୍ଠୀକୁ ଏକା ଧାଡ଼ିରେ ବାନ୍ଧି ରଖିଥିଲା, ତାହା ହେଉଛି ଦେବତାପ୍ରତି ଐକାନ୍ତିକ ବିଶ୍ୱାସ । ଏପରି କୌଣସି ଆଦିବାସୀ ନାହିଁ ଯିଏ ଦେବତା ପ୍ରତି ଭୟ-ଭକ୍ତି କରେ ନାହିଁ । ଆଦିବାସୀ ଗୋଷ୍ଠୀରେ 'ଦେବତା' କହିଲେ, ଏକ ଅଦୃଶ୍ୟ ଶକ୍ତି- 'ଧରଣୀ', 'ପର୍ବତ' , 'ଝରଣା' , 'ବୃକ୍ଷଲତା' ତା'ର ଦୃଶ୍ୟମାନ ରୂପ । ଏ ବିଶ୍ୱାସ ସବୁ ଆଦିବାସୀ ଗୋଷ୍ଠୀରେ ସମାନ । ସ୍ବା' ବ୍ୟତୀତ, ସେମାନଙ୍କ ସହଜାତ ପ୍ରକୃତି ସରଳତା ଯାହା ସ୍ତ୍ରୀ· ପୁରୁଷ ନିର୍ବିଶେଷରେ ସମସ୍ତଙ୍କଠାରେ ସମାନରୂପେ ବିଦ୍ୟମାନ । ସେହି କାରଣରୁ ସେମାନେ ଶତ୍ରୁର କୂଟଚକ୍ରାନ୍ତ ଭିତରେ ହନ୍ତସନ୍ତ ହୋଇଛନ୍ତି, ଦେଶ ତ୍ୟାଗ କରିଛନ୍ତି, ଯାଯାବର ହୋଇଛନ୍ତି—ନୋହିଲେ, ସେ ଜାତି ଦୁର୍ବଳ କିମ୍ବା ନିର୍ବୋଧ ନୁହେଁ । ଯେମିତି ସ୍ୱାଧୀନଚେତା ସେମିତି ସ୍ୱାଭିମାନୀ । ତା ଦୃଷ୍ଟିରେ ପରାଧୀନତା ମୃତ୍ୟୁଠାରୁ ଅଧିକ ଯନ୍ତ୍ରଣା-ଦାୟକ । ସେଇହେତୁରୁ ଚିରଦିନ ପାଇଁ ଜନ୍ମସ୍ଥଳୀରୁ ବିଦାୟ ନେଇଛି ପଛେ ଶତ୍ରୁ ପଦାନତହୋଇ ରହିନାହିଁ । ଏହାର ମୂଳ କାରଣ ହେଲା ତା'ର ସ୍ୱଚ୍ଛ ବିଶିଷ୍ଟ ସରଳ ବିଶ୍ୱାସ । ସେହି ବିଶ୍ୱାସର ସୁଯୋଗନେଇ ସୈନ୍ଧବଗୋଷ୍ଠୀ ତାଙ୍କ ଗଣ-ରାଜ୍ୟରେ ଅନୁପ୍ରବେଶ କରିଛି ବଣିକ ରୂପରେ । ସେମାନେ ହେଲେ 'ପଣି' । ସେମାନଙ୍କ ପ୍ରଧାନବୃତ୍ତି 'ପଣ୍ୟ' । 'ପଣ୍ୟ' କହିଲେ ବାଣିଜ୍ୟ ବା କ୍ରୟ-ବିକ୍ରୟ । ଏଣୁ ପଣିମାନେ'ବଣିକ'ବା ବ୍ୟବସାୟୀ ଥିଲେ ବୋଲି କୁହାଯାଏ । ଏହି ଗୋଷ୍ଠୀକୁ ପ୍ରାଗ୍‌ବୈଦିକ ବା ସିନ୍ଧୁ ସଭ୍ୟତାର ପ୍ରତିଷ୍ଠାତା ବୋଲି କହନ୍ତି । ପ୍ରସ୍ତର ଯୁଗରୁ ରହିଆସିଥିବା ଆଦିମ ମଣିଷର ବାସସ୍ଥଳୀ ସିନ୍ଧୁ ଉପତ୍ୟକାକୁ ଇଂରେଜ ବଣିକଙ୍କ ପରି ବ୍ୟବସାୟ ଉଦ୍ଦେଶ୍ୟରେ ଯାଆନ୍ତି । ସେଠାରେ ପ୍ରଥମେ ଆସନ ଦୃଢ଼କରି କ୍ରମଶଃ କର୍ତ୍ତୃତ୍ୱ ବିସ୍ତାର କରିବାକୁ ମନସ୍ଥ କରନ୍ତି । ସରଳମନା ଆଦିବାସୀଙ୍କୁ ଛଳେ-ବଳେ-କୌଶଳେ ଲୁଣ୍ଠନକରି ଦାସ ବା ଭୃତ୍ୟ ରୂପେ ଗଣନା କରନ୍ତି । କାଳକ୍ରମେ ଫଳସ୍ୱରୂପ ସ୍ଥାନୀୟ ଗୋଷ୍ଠୀ ଓ ବଣିକ ଶ୍ରେଣୀ ମଧ୍ୟରେ ନିଶ୍ଚୟ ଯେ ସଂଘର୍ଷ ଘଟିଥିବ ସେଥିରେ ସନ୍ଦେହ ନାହିଁ । କିନ୍ତୁ ଶତ୍ରୁପକ୍ଷର ଚତୁରତା ଓ କୂଟବୁଦ୍ଧି ସମ୍ମୁଖରେ ତିଷ୍ଠି ନପାରି ସ୍ୱାଧୀନତାପ୍ରିୟ ମୂଳଗୋଷ୍ଠୀ ସ୍ଥାନାନ୍ତରିତ ହୋଇପଡ଼ିଲା ।

ଏ ଉକ୍ତିରୁ ସେଠାରେ ଯେଉଁ ସଭ୍ୟତା ମୁଣ୍ଡ ଟେକି ଉଠିଲା ତାହି ପ୍ରୋଟୋଅଷ୍ଟ୍ରେଲଆଡ୍, ଭୂମଧ୍ୟସାଗରୀୟ, ଆଲ୍‌ପାଇନ୍ ଓ ମଙ୍ଗୋଲୀୟ ରୂପକ ଗୋଷ୍ଠୀର ସଭ୍ୟତାର ସମ୍ମିଶ୍ରଣ ବୋଲି କୁହାଯାଏ । ତାହାର ନାମ ରଖାଗଲା ସିନ୍ଧୁସଭ୍ୟତା । ଏ ସଭ୍ୟତା ଭିତରେ ଭୂମଧ୍ୟ-ସାଗରୀୟଙ୍କ ସଂଖ୍ୟା ପୁଣି ସର୍ବାଧିକ । ଏମାନଙ୍କ ଭାଷା, ରୂପ, ଅସ୍ଥିର, ବିସ୍ତୃତ ବହୁପରିମାଣରେ ଦ୍ରାବିଡ଼ ସଭ୍ୟତା ସହିତ ସମାନ ଥିଲା । ସେମାନଙ୍କ ସାମାଜିକ ଜୀବନ, ନଗର ନିର୍ମାଣ, ଧାତୁ ନିର୍ମିତ ଅସ୍ତ୍ରଶସ୍ତ୍ର ଏବଂ ବୃତ୍ତି ବ୍ୟବସାୟାଦି ଉଚ୍ଚକୋଟିର ଥିଲା । ଚିତ୍ରକଳା, କାରୁକଳା, କୃଷିକର୍ମ ପ୍ରଭୃତିରେ ମଧ୍ୟ ସେମାନେ ଅନୁନ୍ନତ ନଥିଲେ । ବିଶେଷତଃ ଚତୁର୍ବିଧ ସଭ୍ୟତାର ଏକତ୍ରାବସ୍ଥିତିଦ୍ୱାରା ଆତ୍ମକେନ୍ଦ୍ରିକତାହୀନ ସଦ୍‌ଭାବସ୍ଥାନିଗିବ ଆପେ

ଆପେ ସୃଷ୍ଟି ହୋଇପଡ଼ିଥିଲା । ଏଥିଯୋଗୁ ସେମାନେ ଏକ ସଂଘବଦ୍ଧ ବଳିଷ୍ଠ ଜାତିରୂପେ ଆପଣାକୁ ପ୍ରତିଷ୍ଠିତ କରିପାରିଥିଲେ ।

ସବୁଦିନ ସମାନ ଯାଏ ନାହିଁ । କିଛି କାଳ ପରେ—ଏହାର ପାଞ୍ଚଶ ବର୍ଷ ଅତୀତ ହୋଇଛି କି ନାହିଁ ଅପର ଏକ ଗୋଷ୍ଠୀର ଲୋଲୁପ ଦୃଷ୍ଟି ପଡ଼େ ସେ ଅଞ୍ଚଳ ଉପରେ । ସେମାନଙ୍କୁ 'ଆର୍ଯ୍ୟ' କୁହାଯାଉଥିଲା । ସେମାନଙ୍କ ମୂଳ ବାସସ୍ଥଳୀ ଭୂମଧ୍ୟସାଗରୀୟ ପ୍ରାନ୍ତ ବୋଲି କେତେକ କହୁଥିବେଳେ ଆଉ କେତେକ ସେମାନଙ୍କୁ ଖୋଦ ଭାରତର ଅଧିବାସୀ ବୋଲି କହନ୍ତି । ସେମାନେ 'ସପ୍ତସିନ୍ଧବଃ' ଅଞ୍ଚଳରେ ରହୁଥିଲେ । 'ସପ୍ତସିନ୍ଧବଃ' ଏବର ଆଫଗାନସ୍ଥାନ ବୋଲି ଚିହ୍ନିତହୁଏ । ସେମାନେ ନିଜକୁ 'ଆର୍ଯ୍ୟ'ନାମରେ ପରିଚିତ କରାଉଥିଲେ । 'ଆର୍ଯ୍ୟ' ଏକ ସମ୍ମାନସୂଚକ ଶବ୍ଦ । ଉନ୍ନତ ସଂସ୍କାରବିଶିଷ୍ଟ ବ୍ୟକ୍ତି 'ଆର୍ଯ୍ୟ' ନାମରେ ଅଭିହିତ ହୁଅନ୍ତି । ବାସ୍ତବିକ ସେମାନଙ୍କ ସଭ୍ୟତା ଓ ସଂସ୍କୃତି ଥିଲା ଉଚ୍ଚକୋଟିର । ବର୍ଣ୍ଣ ଗୌର—ନାସା ଉନ୍ନତ । ଆଗ୍ରହ ବଗ୍ରହ ଆଭିଜାତ୍ୟସଂପନ୍ନ ଥିଲା । ଭାଷା ସ୍ଥାନୀୟ ଭାଷାଠାରୁ ସଂପୂର୍ଣ୍ଣ ଭିନ୍ନଥିଲା । ଏହିପରି କେତେକ କାରଣରୁ ସେମାନଙ୍କୁ ଅଣଭାରତୀୟ ବୋଲି ସନ୍ଦେହ କରାଯାଏ । କିନ୍ତୁ ବାସ୍ତବରେ ସେମାନେ ଥିଲେ ଭାରତୀୟ—ଉତ୍ତରପ୍ରାନ୍ତର ସୀମାନ୍ତ ଅଧିବାସୀ । ସେମାନଙ୍କ ଅନଧିକାର ପ୍ରବେଶ ପୁଣି ସଂଘର୍ଷର ସୂତ୍ରପାତକଲା ସୈନ୍ଧବ ଓ ଆଗନ୍ତୁକଙ୍କ ମଧ୍ୟରେ । ପରିଣାମରେ ସ୍ଥାନୀୟ ପରାଜିତ ଏବଂ ଆଗନ୍ତୁକ ଜୟଶ୍ରୀ ମଣ୍ଡିତ-ହୋଇ ସେ ସ୍ଥାନକୁ ନିଜ ଅଧିକାରଭୁକ୍ତ କରିନେଲେ । ଏହା କିନ୍ତୁ ସହଜ ବ୍ୟାପାର ନଥିଲା । ସ୍ଥାନୀୟ ଗୋଷ୍ଠୀ ଆଦିମ ଅଧିବାସୀଙ୍କପରି ସରଳ କିମ୍ବା ଦୁର୍ବଳ ନଥିବା ଯୋଗୁ ଉଭୟଙ୍କ ମଧ୍ୟରେ ଶହ ଶହ ବର୍ଷ ବ୍ୟାପୀ ଯୁଦ୍ଧ ଘନଘଟା ଲାଗିରହିଥିଲା । ସେ କାଳରେ ଉଭୟପକ୍ଷ କେତେ ଜୟ-ପରାଜୟ ଓ ଧନଜନହାନିର ସମ୍ମୁଖୀନ ହୋଇଥିଲେ ତାର ଇୟତ୍ତା ନାହିଁ ।

ମହେଞ୍ଜୋଦାରୋ ଭୂଖନନଦ୍ୱାରା ଉଦ୍‌ଘାଟିତ ତଥ୍ୟରୁ ସେଠା ମାଟି ଭିତରେ ରହିଥିବା ଛ'ଟି ମୃତ୍ତିକା ସ୍ତରରୁ ପ୍ରତ୍ୟେକ ସ୍ତର କୌଣସି ନା କୌଣସି ସାମ୍ରାଜ୍ୟର ଧ୍ୱଂସାବଶେଷ ବୋଲି ତତ୍ତ୍ୱବିତ୍‌ମାନେ ମତ ଦିଅନ୍ତି । ତାହା ଯଦି ସତ୍ୟ ହୁଏ, ତେବେ ସିନ୍ଧୁ ସଭ୍ୟତା ଛ'ଥର ମୁଣ୍ଡ ଟେକି ଛ'ଥର ଧ୍ୱଂସ ପାଇଥିବାର ସମ୍ଭାବନା । ଗୋଟିଏ ସାମ୍ରାଜ୍ୟ ଧ୍ୱଂସପ୍ରାପ୍ତ ହେଲାବେଳେ କେତେ ଧନ ଜୀବନ, ବାସ ବସତି, ନଗର ପ୍ରାକାର ଧୂଳିସାତ୍ ହୁଏ କଳନା କରିହୁଏନାହିଁ । ନିରବଚ୍ଛିନ୍ନ ଭାବେ ଅନ୍ୟୂନ ପାଞ୍ଚଶ ବର୍ଷ ନ ଲାଗିଲେ ଗୋଟିଏ ସଭ୍ୟତା-ସଂପନ୍ନ ଭୂଖଣ୍ଡକୁ ଧ୍ୱଂସ କରିବା ସହଜ ସାଧ୍ୟ ନୁହେଁ । ପାଞ୍ଚଶ ବର୍ଷକୁ ଯଦି ସଭ୍ୟତାର ଉଦୟାସ୍ତ ବୋଲି ଧରାଯାଏ ତେବେ ଖ୍ରୀ:ପୂ: ପାଞ୍ଚ ହଜାର ବର୍ଷ ତଳର ସିନ୍ଧୁ ସଭ୍ୟତା ଖ୍ରୀ: ପୂ: ଦୁଇହଜାର ବର୍ଷ ସରିକି ଶେଷଥର ପାଇଁ ଅସ୍ତହୋଇପଡ଼ିଥିଲା ବୋଲି କହିବାକୁ ହେବ । ଏଣୁ ଅନୁମାନ ହୁଏ, ସିନ୍ଧୁ ସଭ୍ୟତାର ସଂପୂର୍ଣ୍ଣ ବିଲୋପ ସାଧନ ଲାଗି ଆର୍ଯ୍ୟବାହିନୀକୁ ତିନି ହଜାର ବର୍ଷ ଧରି ଛ'ଥର ପ୍ରୟାସ କରିବାକୁ ପଡ଼ିଛି । ସେଥିପାଇଁ ଇନ୍ଦ୍ର, ବରୁଣ, ଉଷସ୍

ପ୍ରଭୃତି ଦେବତାଙ୍କଠାରୁ ସାହାଯ୍ୟ ଭିକ୍ଷା କରାଯାଇଛି । ଯାହାହେଉ ଶେଷରେ ଆର୍ଯ୍ୟସେନା ନିଜର ବୁଦ୍ଧି ବିଚକ୍ଷଣତା ଯୋଗୁଁ ହେଉ, ଅଶ୍ୱ ରଥ ଲୌହାସ୍ତ୍ରାଦି ଉନ୍ନତ ଯୁଦ୍ଧୋପକରଣ ବଳରେ ହେଉ, କିମ୍ବା ଦେବତାଙ୍କ ସାହାଯ୍ୟରେ ହେଉ, ସୈନ୍ଧବ ଜାତିକୁ ସ୍ଥାନଚ୍ୟୁତ କରିପାରିଛନ୍ତି । ସେଇଥିପାଇଁ ଅନ୍ତତଃ ତିନିହଜାର ବର୍ଷରୁ କମ୍ କାଳ ଲାଗି ନ ଥିଲା ଏବଂ ଲକ୍ଷ ସଂଖ୍ୟାରେ ପ୍ରାଣ ବଳି ଦେବାକୁ ପଡ଼ିଥିଲା । ପରିଣାମରେ ଆର୍ଯ୍ୟ ଜୟଯୁକ୍ତ ହୋଇଛି ଓ ଅପର ଗୋଷ୍ଠୀ ପରାଜିତ ହୋଇ କାନ୍ଦିଶୀକ ଭାବେ ନିରାପଦ ସ୍ଥାନ ଦେଖି ପଳାୟନ କରିଛି । ସେତେବେଳକୁ ଭାରତର ଦକ୍ଷିଣ ଭୂଭାଗ ଅପେକ୍ଷାକୃତ ନିରାପଦ ଥିଲା, ଗୋଷ୍ଠୀ ସଂଘର୍ଷ କିମ୍ବା ଶତ୍ରୁ ଆକ୍ରମଣର ଭୟ ନଥିଲା । ଏଣୁ ସେଠାରେ ପ୍ରବେଶ କରି ସେମାନେ ତତ୍ରତ୍ୟ ବନବାସୀଙ୍କ ସହଯୋଗରେ ଆପଣା ସଭ୍ୟତା ଓ ସଂସ୍କୃତିକୁ ନୂତନଭାବେ ସଂଗଠିତ କଲେ । ପରବର୍ତ୍ତୀ ବୈଦିକ ସାହିତ୍ୟ, ସଂସ୍କୃତ ଗ୍ରନ୍ଥ ଓ ପୁରାଣମାନ ଆଲୋଚନା କଲେ ଏହା ସ୍ପଷ୍ଟ ପ୍ରତୀତ ହୁଏ ।

ଏ ପ୍ରସଙ୍ଗରେ ବିଜୟୀ ଆର୍ଯ୍ୟ ସମାଜ ସମ୍ବନ୍ଧରେ ଟିକିଏ ସୂଚନା ଦେବା ଆବଶ୍ୟକ । କିନ୍ତୁ ଏ ସମ୍ବନ୍ଧୀ ସୂଚନା ଆର୍ଯ୍ୟ ପ୍ରଣୀତ ଗ୍ରନ୍ଥ ଛଡ଼ା ଅନ୍ୟତ୍ର ପରିଲକ୍ଷିତ ହୁଏ ନାହିଁ । ଆର୍ଯ୍ୟଗ୍ରନ୍ଥ ମଧ୍ୟରେ ବୈଦିକ ସାହିତ୍ୟ ସର୍ବାପେକ୍ଷା ଅଧିକ ପ୍ରାମାଣିକ । ବୈଦିକ ସାହିତ୍ୟ କହିଲେ ଋକ୍, ସାମ, ଯଜୁ ଓ ଅଥର୍ବ ଚାରିବେଦ, ଶତପ ଥ, ଐ ତରେୟାଦି ବ୍ରାହ୍ମଣ, କଠ, ଈଶ, ଶ୍ୱେତାର ପ୍ରମୁଖ ଉପନିଷଦ୍ ସହିତ କେତେକ ଆରଣ୍ୟକ ଓ ସୂତ୍ର ଗ୍ରନ୍ଥ । ସେଥିରୁ ହିଁ ଯାହା କିଛି ତଥ୍ୟ ଉପଲବ୍ଧ ହୁଏ । କିନ୍ତୁ ମନେରଖିବାର କଥା, ଉକ୍ତ ଆର୍ଯ୍ୟ ପ୍ରଣୀତ ଗ୍ରନ୍ଥସମୂହରେ ଆର୍ଯ୍ୟେତର ଗୋଷ୍ଠୀ ସମ୍ବନ୍ଧୀ ତଥ୍ୟ କ୍ୱଚିତ୍ ଲିପିବଦ୍ଧ ଥିବା ଦେଖାଯାଏ । ତା'ବି ପରୋକ୍ଷ ଭାବରେ ରୂପକ କିମ୍ବା ବ୍ୟଞ୍ଜନା ମାଧ୍ୟମରେ । ତାହା ପୁଣି ଏତେ ସଂକ୍ଷିପ୍ତ ଓ ସାଙ୍କେତିକ ଯେ ସ୍ପଷ୍ଟାର୍ଥ ପ୍ରକାଶନରେ ସମ୍ପୂର୍ଣ୍ଣ ଅସମର୍ଥ । ତଥାପି ସେ ମଧ୍ୟରୁ ଯେତିକି ଅଧ୍ୟାହାର କରିହୁଏ ସେତିକି ଛଡ଼ା ଅଧିକ କିଛି କହିବାର ଉପାୟ ନାହିଁ ।

କହିବାକୁଗଲେ ଆଦିମ ଅଧିବାସୀଙ୍କ ଉପରେ ସୈନ୍ଧବ ଗୋଷ୍ଠୀର ଅଭିଯାନ ଓ ସୈନ୍ଧବ ସଭ୍ୟତା ଉପରେ ଆର୍ଯ୍ୟ ସମାଜର ଅଭିଯାନ ସମ୍ପୂର୍ଣ୍ଣ ଭିନ୍ନ ଧରଣର ଥିଲା । ଗୋଟିଏ ଥିଲା ପରୋକ୍ଷ ଆକ୍ରମଣ ଓ ଅନ୍ୟଟି ପ୍ରତ୍ୟକ୍ଷ ସଂଗ୍ରାମ । ଦୀର୍ଘକାଳ ସଂଗ୍ରାମରେ ବିଜୟର ଫଳସ୍ୱରୂପ ଉତ୍ତରଭାରତରେ 'ଆର୍ଯ୍ୟାବର୍ତ୍ତ' ପ୍ରତିଷ୍ଠା ହୁଏ । ଯୁଦ୍ଧକାଳୀନ ବୃତ୍ତି ଅନୁରୂପ ବର୍ଣ୍ଣମାନ ସୃଷ୍ଟି ହେବାକୁ ଲାଗେ । ସଙ୍ଘବଦ୍ଧ ଆର୍ଯ୍ୟଗୋଷ୍ଠୀ ପସନ୍ଦ ମୁତାବକ ସ୍ଥାନମାନ ବାଛି ବସବାସ ଆରମ୍ଭ କରନ୍ତି । କିନ୍ତୁ ସେତିକରେ ସରିଗଲା ନାହିଁ, ଯୁଦ୍ଧୋତ୍ତରକାଳୀନ ଆର୍ଯ୍ୟ ସମାଜ ମଧ୍ୟରେ ବିବିଧ କାରଣ ଯୋଗୁ ମନୋମାଳିନ୍ୟ ଦେଖାଦେଲା । ପରସ୍ପର ମଧ୍ୟରେ ଗୋତ୍ରଗତ ଓ ବଂଶଗତ ଗରିମା କଳହର ବୀଜ ବପନ କଲା । ବର୍ଣ୍ଣବୈଷମ୍ୟ ଓ କୃଷ୍ଟି ବୈଷମ୍ୟ ଏତେ ଭୀଷଣ ଆକାର ଧାରଣ କଲା

ଯାହାଯୋଗୁ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସେମାନେ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ବିଭକ୍ତ ହୋଇପଡ଼ିଲେ ଏବଂ ସୀମିତ ଅଞ୍ଚଳ ମଧ୍ୟରେ ନିଜନିଜର ପ୍ରଭୁତ୍ୱ ବିସ୍ତାର କରି ରହିଲେ । ସେଉଁମାନେ ଅପାରଗ ଓ ଦୁର୍ବଳ ସେ ମଧ୍ୟରୁ ଅନେକେ ଆର୍ଯ୍ୟାବର୍ତ୍ତ ତ୍ୟାଗକରି ସୀମା ସେପାରି ଇତର ରାଜ୍ୟକୁ ପଳାୟନ କଲେ ଏବଂ ଦ୍ୱିଧା ନକରି ଛଳେ ବଳେ କୌଶଳେ ସେଠାରେ ଆପଣାକୁ ଥଇଥାନ କରିନେଲେ ।

ଏଣେ ପୁଣି ପରାଜିତ ଗୋଷ୍ଠୀର ଗୋପନ ଉପଦ୍ରବ ଆର୍ଯ୍ୟାବର୍ତ୍ତ ସୀମାନ୍ତବାସୀଙ୍କୁ ସର୍ବଦା ଭୀତତ୍ରସ୍ତ କରି ରଖିଥିଲା । ବହୁ ସମୟରେ ସେମାନଙ୍କର ପ୍ରିୟ ବସ୍ତୁ ଯଥା ଗୋଧନ, ପକ୍ୱ-ଶସ୍ୟାଦି ଅପହରଣ କରି ନିଆଯାଉ ଥିଲା । ସମାଧାନ କିମ୍ବା ବଳ ପ୍ରୟୋଗ ଦ୍ୱାରା ବେଳେବେଳେ ତାହା ପୁଣି ପ୍ରତ୍ୟାହୃତ ହେଉଥିଲା । ଅପହରଣକାରୀମାନେ ଗୋଟିଏ ଗୋଷ୍ଠୀର ନଥିଲେ । ଅନ୍ଧ୍ର, ପଣି, କଳି, ବୃଷ, ବଭ୍ରୁ, ବନଗୁ ପ୍ରଭୃତି ବିଭିନ୍ନ ଗୋଷ୍ଠୀରୁ ସେମାନେ ଆସୁଥିଲେ । ଆଭ୍ୟନ୍ତରୀଣ ବିବାଦ ଯୋଗୁ ଆର୍ଯ୍ୟାବର୍ତ୍ତବାସୀ ଏହାର ପ୍ରତିରୋଧ କରିବାକୁ ସମର୍ଥ ନଥିଲେ । କାରଣ, ଆର୍ଯ୍ୟାବର୍ତ୍ତ ଓ ବ୍ରହ୍ମାବର୍ତ୍ତ ନାମରେ ଉତ୍ତରଖଣ୍ଡ ବିଭକ୍ତ ହୋଇ ବହୁ କ୍ଷୁଦ୍ର ସ୍ୱତନ୍ତ୍ର ରାଜ୍ୟ ଗଠିତ ହୋଇଯାଇଥିଲା ଏବଂ ରାଜ୍ୟାଧିକାରୀମାନେ ଅହମିକା ଭିତରେ ବୁଡ଼ି ରହିଥିଲେ । ଯଥା ସ୍ଥାନରେ ଏହାର ବିସ୍ତୃତ ଆଲୋଚନା କରାଯିବ ।

ଏତାଦୃଶ କ୍ଷୁଦ୍ର ରାଜ୍ୟ ଗଠନ ପ୍ରକ୍ରିୟା ଆର୍ଯ୍ୟାବର୍ତ୍ତରେ କେବଳ ଆରମ୍ଭ ହୋଇ ନଥିଲା । ଆର୍ଯ୍ୟେତର ରାଜ୍ୟମାନଙ୍କରେ ମଧ୍ୟ ସଂଘଟିତ ହୋଇଥିଲା । ସେ ସବୁକୁ ‘ଅନାର୍ଯ୍ୟ’ ବା ‘ମ୍ଳେଚ୍ଛ’ ଦେଶ କୁହାଯାଉଥିଲା । ବାୟୁ ପୁରାଣରେ ଆର୍ଯ୍ୟ, କିରାତ ଓ ଯବନ ନାମରେ ତିନୋଟି ଦେଶ ମଧ୍ୟଭାରତ, ପୂର୍ବ ଭାରତ ଓ ପଶ୍ଚିମ ଭାରତରେ ଥିଲାବୋଲି ଲେଖାଅଛି । ମହାଭାରତରେ ମଧ୍ୟ ଆର୍ଯ୍ୟ, ମ୍ଳେଚ୍ଛ ଓ ମିଶ୍ରଭାବେ ତିନୋଟି ଜାତି ଭାରତବର୍ଷରେ ଥିବା କୁହାଯାଇଛି । ବୋଧହୁଏ ବର୍ତ୍ତମାନ ଗୁଜୁରାଟରେ ଥିବା ଭୀଲ, କେରଳରେ ଥିବା ଧନୁରୁଚ୍ୟା, ବିହାରର ସାନ୍ତାଳ, ବଙ୍ଗ ଦେଶର ଲୋଧା, ମଧ୍ୟପ୍ରଦେଶର ଗଣ୍ଡ, ଆନ୍ଧ୍ର ପ୍ରଦେଶର ଚେଞ୍ଚୁ, କର୍ଣ୍ଣାଟକର କୁରୁମ୍ବ ଏବଂ ଓଡ଼ିଶାର ‘ବଣ୍ଡା’ ‘ସୌରା’, ‘କନ୍ଧ’ ପ୍ରଭୃତି ତଥାକଥିତ ‘ମ୍ଳେଚ୍ଛ’ ଜାତିର ଅବଶେଷ । ପ୍ରାକ୍ତନ ଆଦିବାସୀ ଓ ସୈନ୍ଧବ ଗୋଷ୍ଠୀର ସାଯୁଜ୍ୟ ସମ୍ମିଶ୍ରଣରେ ଯେଉଁ ସମାଜ ଗଢ଼ିଉଠିଥିଲା ତାହା ‘ମିଶ୍ର’ ନାମରେ ଅଭିହିତ ଥିଲା । ସେମାନଙ୍କଦ୍ୱାରା ମଧ୍ୟ ବହୁ ଜନପଦ ଓ ରାଜ୍ୟମାନ ଗଢ଼ି ଉଠିଥିବା ପରକାଳରେ ଲିଖିତ ସୂତ୍ରଗ୍ରନ୍ଥ ଓ ପୁରାଣମାନଙ୍କରୁ ଜଣାପଡ଼େ ।

ପାଣିନିଙ୍କ ‘ଅଷ୍ଟାଧ୍ୟାୟୀ ସୂତ୍ର’ରୁ ସେକାଳର ଅଣଚାଳିଶଟି ରାଜ୍ୟର ସନ୍ଧାନ ମିଳେ । ସେଗୁଡ଼ିକ ହେଲା—୧-କମ୍ବୋଜ, ୨-ଗାନ୍ଧାର, ୩-ପ୍ରକଣ୍ୱ, ୪-ସିନ୍ଧୁ, ୫-ସୌବୀର, ୬-ବ୍ରାହ୍ମଣ୍ୟକ, ୭-ପାରସ୍କର, ୮-କଚ୍ଛ, ୯-କେକୟ, ୧୦-ମଦ୍ର, ୧୧-ଉଶୀନର,

୧୨-ଅମ୍ବଷ୍ଠ, ୧୩-କାଳକୂଟ, ୧୪-ଭରଦ୍ୱାଜ, ୧୫-ରଙ୍କୁ, ୧୬-କୁରୁ, ୧୭-ସାଲ୍ୱ, ୧୮-ଉଦୁମ୍ବର, ୧୯-ଆଜାଦ, ୨୦-ପ୍ରତ୍ୟଗ୍ରଥ, ୨୧-ଯୁଗନ୍ଧର, ୨୨-କୋଶଳ, ୨୩-ବୃଜି, ୨୪-ମଗଧ, ୨୫-କାଶୀ, ୨୬-କଳିଙ୍ଗ, ୨୭-ସୁରମସ, ୨୮-ଅବନ୍ତୀ, ୨୯-ଅଶ୍ମକ, ୩୦-ଭୈରକ, ୩୧-ବର୍ବର, ୩୨-କାଶ୍ମୀର, ୩୩-ଉରଗ, ୩୪-ଦରଦ, ୩୫-ଗବ୍ଧିକା, ୩୬-କଷ୍କିନ୍ଧ୍ୟା, ୩୭-ପଞ୍ଚଚର, ୩୮-କୁନ୍ତ, ୩୯-ସକୁଲୋମ । କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'ରେ ଉକ୍ତ ରାଜ୍ୟ ସହିତ ଆହୁରି ଚଉତିରିଶଟି ଯୁକ୍ତ ହୋଇ ତେସ୍ତରି ରାଜ୍ୟର ନାମୋଲ୍ଲେଖ ରହିଛି । ଏହାପରେ ବୋଧହୁଏ ଆହୁରି ନୂଆ ନୂଆ ରାଜ୍ୟ ଗଠିତ ହୋଇ 'ବ୍ରହ୍ମାଣ୍ଡ ପୁରାଣ' ବେଳକୁ ଦୁଇଶତରୁ ଅଧିକ ହୋଇ ପଡ଼ିଛି । ବରାହ ମିହିରଙ୍କ 'ବୃହତ୍ ସଂହିତା' ଗ୍ରନ୍ଥରେ ଭାରତର ମଧ୍ୟଦେଶ ସମେତ ପୂର୍ବ, ପଶ୍ଚିମ, ଦକ୍ଷିଣ, ଉତ୍ତର, ଅଗ୍ନିକୋଣ, ଐଶାନ୍ୟ, ବାୟବ୍ୟ ଓ ନୈର୍‌ଋତ କୋଣରେ ସେଗୁଡ଼ିକ ଅବସ୍ଥିତ ବୋଲି ଲେଖାଯାଇଛି । ଯେ ଯାହାହେଉ ଏତେଗୁଡ଼ିଏ ତାଲିକା ମଧ୍ୟରୁ କଳିଙ୍ଗ କୌଣସିଠିରୁ ହେଲେ ବାଦ୍ ପଡ଼ିନାହିଁ, ଏହାହିଁ ଲକ୍ଷ୍ୟ କରିବାର କଥା ।

ଅଷ୍ଟାଧ୍ୟାୟୀ ସୂତ୍ରରୁ କଳିଙ୍ଗ, ମଗଧ ଓ କୋଶଳ ତିନୋଟି ଲଗାଲଗି ରାଜ୍ୟ ଥିଲେ ବୋଲି ଜଣାପଡ଼େ । ତିନୋଟିଯାକ ଅପବିତ୍ର ବିବେଚିତ ହେଉଥିଲି । ବୋଧହୁଏ ତାହା ବାସଚ୍ୟୁତ ସୈନ୍ଧବ ଜାତି ସମେତ ପ୍ରସ୍ତରଯୁଗୀୟ ଆଦିବାସୀଙ୍କ ବାସସ୍ଥଳୀ ଥିଲି । ବିତାଡ଼ିତ ମୁଷ୍ଟିମେୟ ସୈନ୍ଧବ ସ୍ଥାନୀୟ 'କଳିଙ୍ଗ' ଗୋଷ୍ଠୀ ସହିତ ମିଳିତ ହୋଇ ନୂତନ କର୍ମପ୍ରେରଣା ଲାଭକରିଥିଲି । ସିନ୍ଧୁ ସଭ୍ୟତାର ଆନୁମାନିକ କାଳ ଯଦି ଖ୍ରୀ:ପୂ: ପାଞ୍ଚ ହଜାର ବର୍ଷ ଏବଂ ତାହା ଯଦି ଛଅ ଥର ଲୁପ୍ତ ହୋଇ ଛ'ଥରଗଢ଼ା ହୋଇଥାଏ, ତେବେ ପ୍ରତ୍ୟେକଥର ପାଇଁ ପାଞ୍ଚଶହ ବର୍ଷ ଧରାଗଲେ ଶେଷ ବିଳୟ ଖ୍ରୀ:ପୂ: ଦୁଇ ହଜାର ବର୍ଷ ବେଳକୁ ଘଟିଥିବା ସମ୍ଭବ । ତାହାହିଁ ବୈଦିକ ସଭ୍ୟତାର ପ୍ରଥମ ଉନ୍ମେଷ କାଳ । ସେ କାଳରୁ ଅର୍ଥାତ୍ ଖ୍ରୀ.ପୂ: ଦୁଇ ହଜାର ବର୍ଷତଳୁ ବାରଶହ ବର୍ଷ, ମାନେ ସୂତ୍ର ଯୁଗ ପର୍ଯ୍ୟନ୍ତ, ଚତୁର୍ବର୍ଣ୍ଣୀ ଆର୍ଯ୍ୟ ସମାଜ ଇତର ଜାତି ଅଧ୍ୟୁଷିତ ଅଞ୍ଚଳ ମଧ୍ୟରେ ପ୍ରବେଶ କରିବା ନିଷିଦ୍ଧ ଥିଲି । ତେଣେ କଳିଙ୍ଗ ଉପତ୍ୟ ଅଧିବାସୀ ସାହସ ଓ ବିକ୍ରମର ସହିତ ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ସାମାଜିକ, ସାଂସ୍କୃତିକ ଓ ବ୍ୟାବସାୟିକ କ୍ଷେତ୍ରରେ ଉତ୍କର୍ଷର ଚରମସୀମା ସ୍ପର୍ଶ କରିଥିଲେ । ସେମାନଙ୍କ ଖ୍ୟାତି ଓ ପ୍ରତିପତ୍ତି ବିଶ୍ୱବିଶ୍ରୁତ ହୋଇଉଠିଥିଲି । ସେଥିରେ ଆକୃଷ୍ଟ ହୋଇ ଦଳ ଦଳ ଉତ୍ତରାପଥବାସୀ ବିଧିନିଷେଧ ନମାନି ଏ ଦେଶରେ ପ୍ରବେଶ କରିବାକୁ ଦ୍ୱିଧା କରି ନଥିଲେ । ଏହା ଫଳରେ ତଥାକଥିତ 'ମ୍ଳେଚ୍ଛ' ଦେଶ ଜାତ୍ୟଭିମାନୀ ଆର୍ଯ୍ୟଙ୍କ ଆଗମନରେ ପବିତ୍ର ଭୂମିରେ ପରିଣତ ହୋଇପଡ଼ିଲି ଏବଂ କଳିଙ୍ଗବାସୀଙ୍କ ମଧ୍ୟରୁ ଅନେକେ ଶାଶ୍ୱତ ଧର୍ମରେ ଦୀକ୍ଷିତ ଓ ସକଳ ଶାସ୍ତ୍ରରେ ପାରଙ୍ଗମ, ଏବଂ ସେମାନେ 'କଳିଙ୍ଗ ଦ୍ୱିଜ' ନାମରେ ପରିଚିତ ବୋଲି ଧର୍ମଶାସ୍ତ୍ରରେ ଲିପିବଦ୍ଧ ହେଲି । ଅବଶ୍ୟ ଏସବୁ ପୁରାଣ ଯୁଗର ଘଟଣା, ଅର୍ଥାତ୍ ଖ୍ରୀ.ପୂ. ଶତାବ୍ଦୀର । ଯେତେବେଳେ 'କଳିଙ୍ଗ' ଶବ୍ଦ ଜାତି ଓ ଦେଶ ଉଭୟ ପାଇଁ

ପ୍ରଯୁକ୍ତ ହୋଇଥିଲା । ତେଣୁ, "କଳିଙ୍ଗ ଏକ ବଳବଶାଳୀ ରାଜ୍ୟ ଥିଲା ଏବଂ ବନବାସୀ ଗୋଷ୍ଠୀର ଜଣେ ପରାକ୍ରମଶାଳୀ ଜନନାୟକ ଏହାର ଶାସକ ଥିଲେ" ବୋଲି ବୌଦ୍ଧ ଜାତକ ଓ ଉତ୍ତରାଧ୍ୟୟନ ସୂତ୍ରରେ ବର୍ଣ୍ଣିତ ଅଛି ।

ଏଇଠି ମନରେ ପ୍ରଶ୍ନ ଉଠେ, ସେତେବେଳକୁ କଳିଙ୍ଗର ପାର୍ଶ୍ୱବର୍ତ୍ତୀ ଇଲାକାରେ ଅନ୍ୟ କୌଣସି ବାଧ୍ୟବାଧ ରାଜ୍ୟ ଥିଲା କି ନାହିଁ ? ସଂସ୍କୃତ ପୁରାଣ, ଜୈନଗ୍ରନ୍ଥ ଓ ବୌଦ୍ଧ ଜାତକାଦିରୁ ଯେଉଁ ରାଜ୍ୟମାନଙ୍କର ଅବସ୍ଥିତି ସମ୍ବନ୍ଧରେ ସୂଚନା ମିଳେ ତାହା ଆର୍ଯ୍ୟାବର୍ତ୍ତ ପ୍ରତିଷ୍ଠାର ବହୁ ପରବର୍ତ୍ତୀ ଘଟଣା । ବେଦମନ୍ତ୍ରମାନଙ୍କରେ ତତ୍କାଳ ଭାରତର କୌଣସି ରାଜ୍ୟର ନାମୋଲ୍ଲେଖ ଦେଖାଯାଏ ନାହିଁ ; ଯଦିଚ ସେ ଯୁଗର ଆର୍ଯ୍ୟ ସମାଜ ମଧ୍ୟରେ ପାରସ୍ପରିକ କଳହ ଘଟି ଏକାଧିକ ରାଜ୍ୟ ଗଢ଼ିଉଠିଥିଲା । କାରଣ, ସେ କାଳର ବିଜୟୀ ପକ୍ଷ ପରାଜିତଙ୍କୁ ସ୍ଥାନଚ୍ୟୁତ କରାଇ ସେଠାରେ ଆପଣାର ପ୍ରାଧାନ୍ୟ ପ୍ରତିଷ୍ଠା ପାଇଁ ଆବଶ୍ୟକ ସ୍ଥଳେ ଆର୍ଯ୍ୟେତର ଜାତିର ସାହାଯ୍ୟ ନେବାକୁ କୁଣ୍ଠିତ ହେଉନଥିଲେ । ବିଜୟ ଲାଭ ପରେ ଅଧିକୃତ ରାଜ୍ୟକୁ ନିଜ ନାମରେ ନାମିତ କରିବା ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । କୁରୁ, ପୁରୁ, ଭାର୍ଗବ ପ୍ରଭୃତି ରାଜ୍ୟ ଏହାର ଜ୍ୱଳନ୍ତ ଉଦାହରଣ । ଅବଶ୍ୟ ଯଦୁ, ପୁରୁ, ତୁର୍ବସୁ, ଅଣୁ, ଦ୍ରୁହ୍ୟୁ ପ୍ରଭୃତି ବଂଶର ବର୍ଣ୍ଣନା ଋଗ୍‌ବେଦରେ ରହିଛି, କିନ୍ତୁ ସେହି ନାମରେ କୌଣସି ରାଜ୍ୟ ଥିବା ଦୃଷ୍ଟ ହୁଏନାହିଁ । ଅଥଚ ସେତେବେଳକୁ ସମଗ୍ର ଉତ୍ତରାପଥ 'ଆର୍ଯ୍ୟାବର୍ତ୍ତ' ଓ 'ବ୍ରହ୍ମାବର୍ତ୍ତ' ନାମରେ ଦ୍ୱିଧା ବିଭକ୍ତ ହୋଇପଡ଼ିଥାଏ । ଏଣୁ ଜଣାପଡ଼େ ବ୍ରାହ୍ମଣ୍ୟ, ରାଜନ୍ୟ, ବୈଶ୍ୟ ଓ ଶୂଦ୍ର ଚାରିବର୍ଣ୍ଣ ସମଭିତ୍ତିକ ହେଲେ ସୁଦ୍ଧା ପରସ୍ପରଠାରୁ ଆସ୍ତେ ଆସ୍ତେ ବିଚ୍ଛିନ୍ନ ହୋଇପଡ଼ୁଥିଲେ ଏବଂ ସେମାନଙ୍କ ମଧ୍ୟରେ ଅନ୍ତର୍ବିବାଦ ବେଳେବେଳେ ଚରମ-ସୀମାକୁ ସ୍ପର୍ଶକରୁଥିଲା ।

ଏଣେ ଆର୍ଯ୍ୟାବର୍ତ୍ତ ନିକଟବର୍ତ୍ତୀ ପାର୍ବତ୍ୟ ଅଞ୍ଚଳର ଆଦିମ ଅଧିବାସୀ--ବର୍ଗ ଗୋଷ୍ଠୀ, ଉପ ଗୋଷ୍ଠୀ ଶାଖା ଉପଶାଖାରେ ବିଭକ୍ତ ହୋଇ ଗିରିଗହ୍ୱର, ପର୍ବତ ଶିଖର, ନଦୀକୂଳ, ସମୁଦ୍ର-ତୀର, ମାଳଭୂମିମାନଙ୍କରେ ବସତି ନିର୍ମାଣ କରି ରହିଥିଲେ । ବର୍ତ୍ତମାନ ସେ ସବୁର ବାସ୍ତବ ସ୍ଥିତି ଜାଣିବା ସମ୍ଭବ ନୁହେଁ । କାରଣ ସେମାନେ ଗୋଟିଏ ଜାଗାରେ ବହୁକାଳ ଆବଦ୍ଧ ହୋଇ ରହୁନଥିଲେ । ଏବେ ସୁଦ୍ଧା ସେ ଜାତିର ସ୍ୱଭାବ ସମ୍ପୂର୍ଣ୍ଣ ଦୂର ହୋଇ ନାହିଁ । ଏଣୁ ସେତେବେଳର ବାସସ୍ଥଳୀଗୁଡ଼ିକ ପୁଞ୍ଜି କି ମୁଠା, ପଲ୍ଲୀ କି ଗୁଡ଼ା କେଉଁ ଭାବରେ ଚିହ୍ନିତ ଥିଲା କହିବା କଷ୍ଟସାଧ୍ୟ ହେଲେ ମଧ୍ୟ ବିଭିନ୍ନ ନାମରେ ଜନବସତିମାନ ରହିଥିଲା ଏଥିରେ ସନ୍ଦେହ ନାହିଁ । ବାୟୁପୁରାଣରେ ଉକ୍ତ ଅଛି, ଭାରତବର୍ଷର ପୂର୍ବଭାଗରେ କିରାତ, ପଶ୍ଚିମ ଭାଗରେ ଯବନ ଏବଂ ମଧ୍ୟଦେଶରେ ଚାତୁର୍ବର୍ଣ୍ଣ୍ୟ ବାସକରନ୍ତି । ଏଥିରେ କୌଣସି ଦେଶର ନାମକରଣ ଦୃଷ୍ଟ ହୁଏ ନାହିଁ । କିନ୍ତୁ ଅଷ୍ଟାଧ୍ୟାୟୀ ସୂତ୍ର ବେଳକୁ ମଗଧ, କଳିଙ୍ଗ, କୋଶଳ, ଅବନ୍ତୀ ପ୍ରଭୃତି ନାମରେ ଅଣରୂଲଣଟି ଦେଶ ଗଠିତ ହୋଇସାରିଥିଲା । ବୌଦ୍ଧ ଗ୍ରନ୍ଥରେ ଉତ୍ତରଭାରତୀୟ ଶାକ୍ୟ, ଭଗ, କୁଳି, ମଲ୍ଲ, କଲମ, କୌଳୀୟ, ମୌର୍ଯ୍ୟ, ବିଦେହ,

ଲିଚ୍ଛାବି ପ୍ରଭୃତି ଦେଶର ନାମ ରହିଛି । ଜୈନ ଧର୍ମଗ୍ରନ୍ଥରେ ମଧ୍ୟ ସେହିପରି ଷୋହଳଟି ଦେଶର ନାମୋଲ୍ଲେଖ ଦେଖାଯାଏ । ସେଗୁଡ଼ିକ ହେଲା—ଅଙ୍ଗ, କାଶୀ, ବୃଜି, ମଲ୍ଲ, ଚେଦି, କୁରୁ, ପାଞ୍ଚାଳ, ଶୂରସେନ, ମତ୍ସ୍ୟ, ଅଶ୍ମକ, ଗାନ୍ଧାର, କାମ୍ବୋଜ, ଅବନ୍ତୀ, ବତ୍ସ, କୋଶଳ, ମଗଧ । ଏଥିରେ କଳିଙ୍ଗର ନାମ ଲେଖା ନାହିଁ । କିନ୍ତୁ କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଅଙ୍ଗ, ବଙ୍ଗ ଓ ମଗଧର ପାଖାପାଖି 'କଳିଙ୍ଗ' ଥିବା ଉଲ୍ଲେଖ ଅଛି । ମହାଭାରତୀୟ ଦୀର୍ଘତମା ଉପାଖ୍ୟାନରୁ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ୍ର ଓ ସୁହ୍ମ ପାଞ୍ଚୋଟି ରାଜ୍ୟ ଲଗାଲଗି ରହିଥିବା ଜଣାଯାଏ । କାରଣ, ଗୋଟିଏ ରାଜ୍ୟ ପାଞ୍ଚପୁଅଙ୍କ ନାମରେ ପାଞ୍ଚ ଭାଗରେ ବିଭକ୍ତ ହୋଇ ଅର୍ପିତ ହୋଇଥିଲା । ସେ ମଧ୍ୟରୁ ଆର୍ଯ୍ୟାବର୍ତ୍ତିକୁ ଲାଗି ଗଙ୍ଗା ଏ ପଟକୁ 'କଳିଙ୍ଗ' ରହିଥିଲା ଏବଂ ତାହା 'କଳି' ନାମକ ଶବର ଗୋଷ୍ଠୀ ଅଧିକୃତ ଅଞ୍ଚଳ ଥିଲା ।

ଦୀର୍ଘକାଳ ପରେ ବାସଚ୍ୟୁତ ସୈନ୍ଧବ ଜାତି ମଧ୍ୟରୁ ଦଳେ ଜୀବନୋପାୟ ଆଶାରେ ସେଠାରେ ଅନୁପ୍ରବେଶ କରି ତତ୍ରତ୍ୟ ବନବାସୀ ଗୋଷ୍ଠୀର ବିଶ୍ୱାସଭାଜନ ହେବାକୁ ଯତ୍ନପରୋନାସ୍ତି ଚେଷ୍ଟା ଚଳାନ୍ତି । ସ୍ୱକୀୟ ଅସହାୟ ଅବସ୍ଥା ପରିପ୍ରେକ୍ଷୀରେ ସ୍ଥାନୀୟ ଅଧିବାସୀଙ୍କ ସହ ମୈତ୍ରୀ ବନ୍ଧନରେ ଆବଦ୍ଧ ହୋଇ ତାଙ୍କର ସଭ୍ୟତା, ସଂସ୍କୃତି ଓ ସାମାଜିକତା ଭିତରେ ନିବିଡ଼ ଭାବେ ଜଡ଼ିତ ହୋଇପଡ଼ନ୍ତି । ଅନନ୍ତର ଉଭୟ ଗୋଷ୍ଠୀ ମନରେ ସାମୂହିକ କଲ୍ୟାଣ ନିମିତ୍ତ ଐକ୍ୟ ଓ ସହୃତିର ଅପରିହାର୍ଯ୍ୟତା ଉପଲବ୍‌ଧ ହେବା ଫଳରେ ସ୍ଥାନୀୟ ଅଧିବାସୀଙ୍କ ନିରଳସତା ଓ କର୍ମକୁଶଳତା ସହିତ ନବାଗତ ଗୋଷ୍ଠୀର ବିଚକ୍ଷଣ ବୁଦ୍ଧିଗୁରୁର୍ଯ୍ୟ ମିଶି ଏକ ବିଲକ୍ଷଣ ସମାଜ ଗଠିତ ହୋଇପଡ଼େ । ଶାରୀରିକ ଓ ମାନସିକ ଶକ୍ତି ମିଶ୍ରଣରେ ଏକ ବିରାଟ ଶକ୍ତିର ଅଭ୍ୟୁଦୟ ଘଟେ—ଯାହାର ପ୍ରମୁଖ ଧାରକ ଥିଲେ 'କଳି' ବା 'କଳିଙ୍ଗ' ଗୋଷ୍ଠୀ । ତାର ଅଧ୍ୟୁଷିତ ଅଞ୍ଚଳ ତାରି ନାମରେ ନାମିତ ହୋଇ କ୍ରମଶଃ ସମୃଦ୍ଧି ପଥରେ ଅଗ୍ରସର ହୁଏ ଓ ଧନ-ଜନ-ଗୋପ ଲକ୍ଷ୍ମୀ ପରିପୂର୍ଣ୍ଣ ହୋଇ-ଉଠେ । ଏହାର ସୁରକ୍ଷାଲାଗି ଯତ୍ନପରୋନାସ୍ତି ଚେଷ୍ଟା କରାହୁଏ । ସେତିକି ନୁହେଁ, ଜନବସତିପୂର୍ଣ୍ଣ ଅଞ୍ଚଳ ଗୁଡ଼ିକୁ ଖଣ୍ଡେ ଖଣ୍ଡେ କ୍ଷୁଦ୍ର ରାଜ୍ୟରେ ବିଭକ୍ତ କରି ଉପଯୁକ୍ତ ବ୍ୟକ୍ତି ହାତରେ ଶାସନଭାର ନ୍ୟସ୍ତ କରାହୁଏ । ସ୍ଥୂଳତଃ କହିବାକୁ ଗଲେ, ସେତିକିବେଳକୁ ପ୍ରସ୍ତରଯୁଗୀୟ ସଭ୍ୟତାର ଅବସାନ ଘଟି ଲୌହଯୁଗୀୟ ଚନ୍ତାଧାରାର ଅଭ୍ୟୁମାରମ୍ଭ ଘଟେ । ସେଥିଯୋଗୁ ଅଙ୍ଗ, ବଙ୍ଗ, କଳିଙ୍ଗ, ମଗଧ, କୋଶଳାଦି ରାଜ୍ୟ ଅନାର୍ଯ୍ୟ ଜନନାୟକଙ୍କ ପରିଚାଳନାଧୀନ ଥିଲା ବୋଲି ଐତିହାସିକମାନେ କହନ୍ତି ।

ଉକ୍ତ ରାଜ୍ୟଗୁଡ଼ିକ ମଧ୍ୟରୁ ମଗଧ ଆର୍ଯ୍ୟାବର୍ତ୍ତ ସୀମାନ୍ତକୁ ସ୍ପର୍ଶ କରି ରହିଥିଲା । ଏହାର ପୂର୍ବନାମ ଥିଲା 'କୀକଟ' ଏବଂ ତାହା ଶବରଙ୍କର ଶାସନାଧୀନ ଥିଲା । କଳିଙ୍ଗର ପ୍ରାଚୀନ ଇତିବୃତ୍ତର ଆଲୋଚନାରେ ମଗଧର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିବାହେତୁ ପ୍ରଥମେ ତା ଉପରେ ଦୃଷ୍ଟିପାତ କରିବା ଆବଶ୍ୟକ । 'କୀକଟ' କେଉଁ ପରିସ୍ଥିତିରେ 'ମଗଧ' ନାମରେ ନାମିତ ହେଲା ଜଣାନାହିଁ, କିନ୍ତୁ ତାହା ଶବର ଶାସିତ ରାଜ୍ୟ ଥିଲା ଏହାର ପ୍ରମାଣ ରହିଛି ।

ସୂତ୍ର ଯୁଗ ପର୍ଯ୍ୟନ୍ତ ତାହା ମ୍ଳେଚ୍ଛଦେଶରୂପେ ଘୋଷିତ ହୋଇଥିଲା । ସେ ଦେଶବାସୀ ବୈଦିକ ସଂସ୍କୃତିର ଗ୍ରାହକ ନଥିଲେ ମଧ୍ୟ ସୈନ୍ଧବ ସଭ୍ୟତାର ସଂସ୍ପର୍ଶରେ ଆସି ଆଲୋକ-ସାମାନ୍ୟ କୃତିତ୍ୱର ପରିଚୟ ଦେଇଥିଲେ ଏବଂ ଦେଶର ସର୍ବତୋମୁଖୀ ବୈଷୟିକ ଅଭିବୃଦ୍ଧି ସଂପାଦନ କରିଥିଲେ । ପ୍ରଥମାବସ୍ଥାରେ ତାହା ଅସ୍ପୃଶ୍ୟ ବିବେଚିତ ହେଲେ ମଧ୍ୟ ଉତ୍ତରକାଳରେ ସେଥିପ୍ରତି ଆର୍ଯ୍ୟାବର୍ତ୍ତବାସୀଙ୍କ ଲୋଲୁପ ଦୃଷ୍ଟି ଆକୃଷ୍ଟ ନହୋଇ ରହିପାରି ନଥିଲା । କାରଣ, ଏକେ ମଗଧ ଥିଲା ଏକ ସମତଳ ଭୂଭାଗ, ଯାହାର ଚତୁର୍ଦ୍ଦିଗରେ ଗଙ୍ଗା, ଶୋଣ ପ୍ରଭୃତି ନଦୀ ପ୍ରବାହିତ । ଦ୍ୱିତୀୟରେ, ସେ ଦେଶର ଉର୍ବର ମୃତ୍ତିକା ଶସ୍ୟ ଉତ୍ପାଦନର ବିଶେଷ ଉପଯୋଗୀ । ତୃତୀୟରେ, କଠୋର ବର୍ଣ୍ଣଭେଦ ନଥିବା ଯୋଗୁଁ ନିମ୍ନବର୍ଣ୍ଣୀମାନେ ସ୍ୱଦେଶ ପ୍ରତି ବିମୁଖ ହୋଇ ସେଠାକୁ ଉଠି ଆସିଥିଲେ । ଚତୁର୍ଥେ ଅହମିକାପୂର୍ଣ୍ଣ ଉଚ୍ଚବର୍ଣ୍ଣ ମଧ୍ୟରେ ପାରସ୍ପରିକ କଳହ ଅହରହ ଲାଗିରହିବା ହେତୁ ଶାନ୍ତିପ୍ରିୟ ଜନତା ଅଶାନ୍ତି ମଧ୍ୟରେ କାଳାତିପାତ କରିବାକୁ ଅନିଚ୍ଛୁକ ଥିଲେ । ତାଛଡ଼ା, ବୈଶ୍ୟ ସମାଜ ମଧ୍ୟ ବ୍ୟବସାୟ ବୃଦ୍ଧି ସକାଶେ ଯେପରି ନୂତନ କ୍ଷେତ୍ରର ଅନୁସନ୍ଧାନରେ ଥିଲେ ସେହିପରି ସେବାଜୀବୀ ଶୂଦ୍ର ସମାଜ ସାମାଜିକ ଉତ୍ପୀଡ଼ନରୁ ତ୍ରାହି ପାଇବା ପାଇଁ ଉପାୟ ମାର୍ଗ ଖୋଜି ବୁଲୁଥିଲେ । ଉକ୍ତ କାରଣମାନଙ୍କ ଯୋଗୁ ଆର୍ଯ୍ୟାବର୍ତ୍ତବାସୀ ଜନଗଣଙ୍କ ମନ ବିଧି ନିଷେଧ ନ ମାନି, ସମୃଦ୍ଧିଶାଳୀ ପଡ଼ୋଶୀ ଦେଶ ପ୍ରତି ଆକୃଷ୍ଟ ହୋଇପଡ଼ିବା ଅସ୍ୱାଭାବିକ ନଥିଲା । ଏଥିରୁ ଅନୁମାନ ହୁଏ, ଆର୍ଯ୍ୟାବର୍ତ୍ତ ପ୍ରତିଷ୍ଠାର କିଛିକାଳ ପରେ ତାହା ଆଉ ପୂର୍ବର ଆର୍ଯ୍ୟାବର୍ତ୍ତ ହୋଇ ରହି ନଥିଲା । ଯୁଦ୍ଧକାଳୀନ ଜାତୀୟ ସଂହତି କ୍ଷିପ୍ରଦ୍ରଂଷ୍ଟ ହୋଇ ଆର୍ଯ୍ୟସମାଜରୁ ଆତ୍ମବିଶ୍ୱାସ ଓ ଦେଶାତ୍ମବୋଧ ଲୁପ୍ତ କରିବାକୁ ବସିଥିଲା, ଫଳରେ ଆର୍ଯ୍ୟେତରଙ୍କ ପ୍ରତି ପୂର୍ବପୋଷିତ ଧାରଣା ପରିବର୍ତ୍ତିତ ହୋଇ ତାଙ୍କୁ ଘୃଣିତ ଜାତିରୂପେ ବିଚାର କରିନଯାଇ ତାଙ୍କ ସହିତ ମୈତ୍ରୀ ବନ୍ଧନରେ ଆବଦ୍ଧ ହେବା ଆଗ୍ରହ ସୃଷ୍ଟି ହେଲା । ବୋଧହୁଏ ସେତେବେଳକୁ ଆର୍ଯ୍ୟାବର୍ତ୍ତ ଭିତରୁ ବହୁ ପରିବାର ସେ ଅଞ୍ଚଳକୁ ଉଠିଯାଇ ସ୍ଥାୟୀ ବସତି ସ୍ଥାପନ କରିସାରିଥିଲେ । ଉକ୍ତ ଘଟଣାମାନ ସୂତ୍ରଯୁଗ ଅର୍ଥାତ୍ ଖ୍ରୀ:ପୂ: ୧୨୦୦-୮୦୦ ବର୍ଷ ମଧ୍ୟରେ ଘଟିଥିବା ସମ୍ଭାବନା । ପକ୍ଷାନ୍ତରେ, ଏହି ଦୀର୍ଘ ଯୁଗ-କାଳ ମଧ୍ୟରେ ଆର୍ଯ୍ୟେତର ଅଧ୍ୟୁଷିତ ଅଞ୍ଚଳମାନ ମଧ୍ୟ ସୁସଂହତ ନଥିଲା । କୁଳ, ବଂଶ, ଗୋଷ୍ଠୀ, ଉପଗୋଷ୍ଠୀ, ଶାଖା, ଉପଶାଖା ଏପରିକି ପରିବାର ଭିତ୍ତିରେ ମଧ୍ୟ ଛୋଟ ବଡ଼ ଜନପଦମାନ ଗଠିତ ହୋଇପଡ଼ିଥିଲା । ସ୍ଥାନୀୟ ଯୋଗ୍ୟ ଦଳପତିମାନେ ସେ ସବୁର ପରିଚାଳନା ଭାର ବହନ କରିଥିଲେ । ସ୍ଥାନେ ସ୍ଥାନେ ଏକାଧିକ ଜନପଦ ମିଶ୍ରଣରେ 'ରାଜ୍ୟସଂଘ' ଗଠିତ ହୋଇଥିବା ଦୃଷ୍ଟାନ୍ତ ମଧ୍ୟ ବିରଳ ନୁହେଁ । ଏ ବିଷୟ କେବଳ ବ୍ରାହ୍ମଣ୍ୟ ନୁହେଁ; ବୌଦ୍ଧ, ଜୈନ ତଥା ଇତର ଗ୍ରନ୍ଥମାନଙ୍କରେ ମଧ୍ୟ ବର୍ଣ୍ଣିତ ଅଛି ।

ଏ ପ୍ରସଙ୍ଗରେ ଏହା ବି ସ୍ମରଣ ରଖିବା ଉଚିତ ଯେ, ଉପରେ ଯେଉଁ ଜନପଦ ପ୍ରତିଷ୍ଠା ବିଷୟ କୁହାଗଲା ତାହା ମାସକେ ବା ବର୍ଷକେ ସଂଘଟିତ ହୋଇଯାଇ ନଥିବ, ତାହା

ହେବାକୁ ଶତାଧିକ ବର୍ଷ ଲାଗିଥିବ । କାରଣ ପ୍ରଥମେ ପ୍ରସ୍ତର ଯୁଗୀୟ ଆଦିବାସୀ ପରେ ସୈନ୍ଧବ ଜାତିର ଆଗମନ ଏକାଥରକେ ନହୋଇ ପ୍ରବହମାନ ପ୍ରଣାଳୀରେ ଘଟି ଆସିଥିଲା । ଏକ ପରେ ଏକ ହୋଇ ଦଳ ଦଳ ଆସି ଅଲଗା ଅଲଗା ସ୍ଥାନରେ ବସବାସ ଆରମ୍ଭ କରିଥିବେ । ଶକ୍ତି, ବୁଦ୍ଧି, ଶ୍ରମ ଅନୁଯାୟୀ ଯେଉଁ କର୍ମ କରିଥିବେ ଏବଂ ତଦନୁସାରେ ଫଳଲାଭ ମଧ୍ୟ ହୋଇଥିବ । ଅନ୍ୟର ଭଲ ଅବସ୍ଥା ଦେଖିଲେ ମଣିଷ ଯେ ସହ୍ୟ କରି ପାରେନା ତା ନୁହେଁ, ତାହାର ସଞ୍ଚିତ ଧନସମ୍ପତ୍ତି ମଧ୍ୟ ଆତ୍ମସାତ୍ କରିବାକୁ ପଛଘୁଞ୍ଚା ଦିଏ ନାହିଁ । ସେ ଯୁଗରେ ସେୟା ଘଟିଛି । ବଳଶାଳୀ ଦୁର୍ବଳ ଉପରେ ଆକ୍ରମଣ ଚଳାଇ ସର୍ବସ୍ୱ ଲୁଟିନେବା ଗୌରବାବହ କର୍ମରୂପେ ସ୍ୱୀକୃତି ଲାଭ କରିଛି । ଏଣୁ ସୁଯୋଗ ଉଣ୍ଡି ସବଳ ଗୋଷ୍ଠୀ ଦୁର୍ବଳ ଉପରେ ବରାବର ଆକ୍ରମଣ କରୁଥିଲେ ଏବଂ ଅପରପକ୍ଷ ଯଥାଶକ୍ତି ପ୍ରତିରୋଧ କରିଆସୁଥିଲା । ଆକ୍ରମଣ ଓ ପ୍ରତ୍ୟାକ୍ରମଣର ମୁଖ୍ୟ ନାୟକ ଜନପ୍ରିୟ ହୋଇ-ଉଠୁଥିଲେ ଏବଂ ଜନତାର ଶ୍ରଦ୍ଧା ଓ ଭକ୍ତିଭାଜନ ହୋଇପଡୁଥିଲେ । ତେଣୁ ତାଙ୍କରି ନିର୍ଦ୍ଦେଶରେ ଲୋକବସତିମାନ ପରିଚାଳିତ ହେଉଥିଲା । ତାଙ୍କର ବାହୁଚ୍ଛାୟା ତଳେ ଅନ୍ୟ-ମାନେ ନିଜକୁ ନିରାପଦ ମଣୁଥିଲେ । ଭାବୀ ବିପଦର ଆଶଙ୍କାରେ ଉକ୍ତ ବ୍ୟକ୍ତିକୁ ଅଧିକ ଶକ୍ତିଶାଳୀ କରିବା ଉଦ୍ଦେଶ୍ୟରେ ଲୋକସମାଜ ସ୍ୱତଃପ୍ରବୃତ୍ତଭାବେ ସ୍ୱ ସ୍ୱ ବୃତ୍ତିଲବ୍ଧ ପଦାର୍ଥରୁ କିଛି ଅଂଶ ଉପହାର ରୂପେ ପ୍ରଦାନ କରୁଥିଲେ । ସିଏ ମଧ୍ୟ ପ୍ରୟୋଜନୀୟ ଉପକରଣ ସଂଗ୍ରହ କରି ଜନତାକୁ ବିପନ୍ମୁକ୍ତ ରଖିବା ଲାଗି ସର୍ବଦା ସତର୍କ ରହୁଥିଲେ । ଏହାଦ୍ୱାରା ଦାତା ଓ ଗ୍ରହୀତା ଉଭୟର କଲ୍ୟାଣ ସାଧିତ ହେଉଥିଲା । ଦାତା 'ଗ୍ରାମୀଣ' ଓ ଗ୍ରହୀତା 'ଗ୍ରାମଣୀ' ରୂପେ ପରିଚିତ ଥିଲେ । ଯେ କୌଣସି ବ୍ୟକ୍ତି ଜନସମାଜର ଆସ୍ଥା-ଭାଜନ ହେଲାଯାଏଁ ମର୍ଯ୍ୟାଦାସୂଚକ 'ଗ୍ରାମଣୀ' ପଦରେ ଅଧିଷ୍ଠିତ ହୋଇ ରହିପାରୁ-ଥିଲା । ଅଯୋଗ୍ୟ ବିବେଚିତ ହେଲାମାତ୍ରେ ତାକୁ ପଦ ତ୍ୟାଗ କରିବାକୁ ପଡୁଥିଲା । କିନ୍ତୁ ଧନସମ୍ପତ୍ତି ଓ ପଦପଦବୀ ତ୍ୟାଗ କରିବା ମନୁଷ୍ୟ ପକ୍ଷେ ସହଜ ନୁହେଁ । ଥରେ ପଦବୀର ସ୍ୱାଦୁ ଆସ୍ୱାଦନ କଲେ ଆଉ ଛାଡ଼ି ହୁଏ ନାହିଁ । ସେତେବେଳେ ବି ସେଇୟା ଘଟିଛି । 'ଗ୍ରାମଣୀ' ରୂପେ ଅଖଣ୍ଡ କ୍ଷମତାର ଅଧିକାରୀ ହୋଇ କେତେକ ସ୍ୱାର୍ଥପର ବ୍ୟକ୍ତି ନିଜକୁ ଦେଶର ଏକମାତ୍ର ରକ୍ଷାକର୍ତ୍ତା ବୋଲି ଜନମାନସରେ ଧାରଣା ଜନ୍ମାନ୍ତି ଏବଂ ତଦନୁସାରେ ବିଧି ନିୟମ ଲଙ୍ଘନପୂର୍ବକ ନିର୍ବାଚିତ ପଦବୀକୁ ବଂଶାନୁଗତ କରି ପକାନ୍ତି । ପରିଣାମରେ ସେ ହୁଅନ୍ତି 'ରାଜା' ଓ ଅନ୍ୟମାନେ 'ପ୍ରଜା' । ରାଜାର ଅର୍ଥ ପ୍ରଜାରଞ୍ଜନ ବା ସମାଜର ସୁପରିଚାଳନା ଏବଂ 'ପ୍ରଜା' ଅର୍ଥ ରାଜ୍ୟବାସୀ ମଣିଷ । ରାଜାର ଭୋଗ୍ୟ ଭୂମି 'ରାଜ୍ୟ', ଯାହାର ସେ ହୁଏ ହର୍ତ୍ତା, କର୍ତ୍ତା, ବିଧାତା । ଏହା କେବଳ ଗୋଟିଏ ସ୍ଥାନର କଥା ନୁହେଁ—ସର୍ବତ୍ର ସେପରି ଘଟିଆସିଥିଲା । ଆର୍ଯ୍ୟାବର୍ତ୍ତରେ ସୁଦ୍ଧା ତାହାର ବ୍ୟତିକ୍ରମ ନଥିଲା ।

ସୂତ୍ରଯୁଗର ପ୍ରାରମ୍ଭରୁ ଗଙ୍ଗାନଦୀ ପୂର୍ବ ପଟକୁ ଅଙ୍ଗ, ବଙ୍ଗ, କଳିଙ୍ଗ, କୋଶଳ ଓ ମଗଧ ନାମରେ ଶବର ଅଧିକୃତ ଆଦିବାସୀ ରାଜ୍ୟମାନ ପ୍ରତିଷ୍ଠିତ ଥିଲା । ସେ ମଧ୍ୟରୁ

ମଗଧ ସିନ୍ଧୁ ସଭ୍ୟତା ଓ ସ୍ଥାନୀୟ ସଭ୍ୟତାର ମିଶ୍ରଣରେ ଏକ ଅଭିନବ ସଭ୍ୟତା ମୁଣ୍ଡ ଟେକି ଉଠିଥିଲା । ଶବର ଜାତିର ବାହୁବଳ ଓ କଷ୍ଟସହିଷ୍ଣୁତା ଏବଂ ସୈନ୍ଧବ ଜନତାର ସୂକ୍ଷ୍ମ ବିଗ୍ରହବୁଦ୍ଧି ମଗଧକୁ ଉତ୍ତରୋତ୍ତର ଉନ୍ନତି ପଥରେ ଅଗ୍ରସର କରାଉଥିଲା । ରାଜା ଓ ପ୍ରଜା ମଧ୍ୟରେ ସୁସମ୍ପର୍କ ଚତୁର୍ଦ୍ଦିଗରେ ଶାନ୍ତିର ବାତାବରଣ ଖେଳାଉଥିଲା । ତାହାର ଯୋଗୁ ଅସନ୍ତୁଷ୍ଟ ନିମ୍ନବର୍ଣ୍ଣର ଶୂଦ୍ର ସମ୍ପ୍ରଦାୟ ଓ ବୈଶ୍ୟସମାଜ ଆର୍ଯ୍ୟାବର୍ତ୍ତିଆଡ଼ୁ ଜଣେ ପରେ ଜଣେ ଅନୁପ୍ରବେଶ କରି ସ୍ୱ ସ୍ୱ ଜୀବିକାର୍ଜନ ପନ୍ଥା ଖୋଜି ନେଇଥିଲା । ସେତିକି ନୁହେଁ, ସ୍ଥାନୀୟ ଅଧିବାସୀ ଶବର ସମ୍ପ୍ରଦାୟ ସହିତ ସାମାଜିକ ଓ ବୈବାହିକ ସମ୍ପର୍କ ସ୍ଥାପନ କରିବାକୁ ମଧ୍ୟ ସଙ୍କୁଚିତ ନଥିଲେ । ଉକ୍ତ ଅନୁପ୍ରବେଶଧାରା ପ୍ରଥମାବସ୍ଥାରେ ସାମୟିକ ଏବଂ ପରବର୍ତ୍ତୀକାଳରେ ସ୍ଥିତିଶୀଳ ହୋଇପଡ଼ିଲା । ଫଳରେ ଚତୁର୍ବର୍ଣ୍ଣୀ ଆର୍ଯ୍ୟ ପ୍ରଥାରେ ଥିବା ଘୃଣ୍ୟ ଜାତିବିଦ୍ୱେଷ କାଳକ୍ରମେ ଶିଥିଳ ହେଲା । କେହି କାହାର ରାଜ୍ୟକୁ ଯିବାରେ ଆଉ କଣ୍ଟକଣା ରହିଲା ନାହିଁ । ଏହାଦ୍ୱାରା ମଗଧ ଭିତରକୁ ଆର୍ଯ୍ୟସ୍ରୋତ କ୍ଷିପ୍ର ବେଗରେ ମାଡ଼ିଆସି ଅନାବିଳ ଶବର ସଭ୍ୟତା ଉପରେ ପ୍ରଭାବ ବିସ୍ତାର କରିବାକୁ ଲାଗିଲା । ଏତାଦୃଶ ପ୍ରକ୍ରିୟା ମଗଧ ଛଡ଼ା ଶବର ଅଧିକୃତ ଇତର ରାଜ୍ୟ କଳିଙ୍ଗ, କୋଶଳାଦିରେ ଆରମ୍ଭ ହୋଇନଥିଲା । ଏହାର ଆନୁମାନିକ କାଳ ଖ୍ରୀଃ ପୂ: ଦ୍ୱାଦଶ ଶତାବ୍ଦୀ ।

ଉପରୋକ୍ତ ପ୍ରଣାଳୀରେ ସୂତ୍ରଯୁଗୀୟ ମଗଧ ରାଜ୍ୟର ନୂତନ ଭିତ୍ତି ସ୍ଥାପିତ ହୋଇଥିବା ସମ୍ଭାବନା । ଏ ଯୁଗର ଶେଷପାଦ ଅର୍ଥାତ୍ ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀ ଯାଏଁ ମଗଧର ଇତିବୃତ୍ତ ଅନ୍ଧକାରାଚ୍ଛନ୍ନ । ଏ ସମ୍ବନ୍ଧରେ ଇତିହାସ ନୀରବ । କିନ୍ତୁ କି ପ୍ରାଚ୍ୟ କି ପାଶ୍ଚାତ୍ୟ ସମସ୍ତ ପ୍ରତ୍ନତାତ୍ତ୍ୱିକ ସମସ୍ୱରରେ ସ୍ୱୀକାର କରନ୍ତି—ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀ ବେଳକୁ ମଗଧ ସାମ୍ରାଜ୍ୟର ଉତ୍‌ଥାନ ଘଟିଥିଲା ଓ ତାହାର ମୂଳଭିତ୍ତି ସ୍ଥାପନ କରିଥିଲେ ବିମ୍ବିସାର ନାମକ ଜଣେ ନାଗବଂଶୀ ରାଜା । ସେ କୁଆଡ଼େ ପ୍ରଥମେ ଜଣେ ସେନାଧ୍ୟକ୍ଷ ଥିଲେ , ପରେ ରାଜ୍ୟାଧିକାର ପ୍ରାପ୍ତ ହୋଇ ରାଜା ବୋଲାଇଲେ । ସେ ହେଉଛନ୍ତି ଶାକ୍ୟବଂଶୀ ଗୌତମ-ବୁଦ୍ଧଙ୍କ ସମସାମୟିକ । ହୋଇପାରେ—କିନ୍ତୁ ପ୍ରଶ୍ନ ଉଠେ ତା ଆଗରୁ ମଗଧର ଅବସ୍ଥା କଣ ଥିଲା ? କେଉଁମାନେ ସେଠାର ଅଧିବାସୀ ଥିଲେ ? ଭୌଗୋଳିକ ଅବସ୍ଥିତି ଅନୁଧ୍ୟାନ କଲେ ତାହା ଜନଶୂନ୍ୟ ପ୍ରାନ୍ତର ଥିଲା ବୋଲି କହି ହୁଏ ନାହିଁ । ଗଙ୍ଗା, ଶୋଣ, ଗଣ୍ଡକ ଘାଗ୍ରା ପ୍ରଭୃତି ନଦୀମାନ ଚତୁର୍ଦ୍ଦିଗରେ ପ୍ରବାହିତ ହୋଇ ଏହାର ସମତଳ ଭୂଭାଗ ଯେପରି ଉର୍ବର ସେଥିରେ ବିବିଧ କୃଷିକର୍ମ ଓ ଶସ୍ୟ ଉତ୍ପାଦନ କରିବାରେ କୌଣସି ବାଧା ନଥିଲା । ନଦୀମାନ ସୁନାବ୍ୟା ଥିବାଯୋଗୁ ଜଳପଥରେ ବାଣିଜ୍ୟ କାରବାର ଅତ୍ୟନ୍ତ ସୁବିଧାଜନକ ଥିଲା । ଶତ୍ରୁ ଆକ୍ରମଣ ପ୍ରତିହତ କରିବାରେ ସୁଉଚ୍ଚ ପର୍ବତମାଳା ପ୍ରହରୀ ସ୍ୱରୂପ ଦଣ୍ଡାୟମାନ ଥିଲା । ଏଭଳି ଏକ ଜୀବିକାର୍ଜନୋପଯୋଗୀ ନିରାପଦ ଅଞ୍ଚଳ କଦାପି ପରିତ୍ୟକ୍ତ ଅବସ୍ଥାରେ ଛାଡ଼ି ଦିଆଯାଇ ନଥିବ । ଏଣୁ ବୁଝିହାଯାଇ ପାରେ ଯେ ପ୍ରସ୍ତର ଯୁଗୀୟ ମଣିଷ ସମ୍ପ୍ରଦାୟର ଦାୟାଦମାନେ ସ୍ମରଣାତୀତ କାଳରୁ ସେଠାରେ ସ୍ୱଚ୍ଛନ୍ଦରେ ବାସ କରିଆସୁ-

ଥିଲେ । ସେମାନେ ଥିଲେ ଖାଣ୍ଟି ଶବର—ଆଦିବାସୀ । ସୈନ୍ଧବ ଜାତିର ଆଗମନ ଫଳରେ ସେହି ସଭ୍ୟତାହିଁ ଆବିଳ ହୋଇପଡ଼ିଥିଲା ।

ଆଦିବାସୀ ସଭ୍ୟତା ବିଶ୍ୱାସ ଉପରେ ପ୍ରତିଷ୍ଠିତ । ସତ୍ୟ ତାହାର ମୂଳପିଣ୍ଡ । ସତ୍ୟଲାଗି ସେ ପ୍ରାଣପାତ କରିପାରେ; କିନ୍ତୁ ମିଥ୍ୟାର ଆଶ୍ରୟ ନିଏ ନାହିଁ । ଧର୍ମ କୁହ, ଶାସନ କୁହ ସବୁ ଆଦିବାସୀର ବିଶ୍ୱାସରେ ପରିଚାଳିତ । ଧର୍ମ କାର୍ଯ୍ୟରେ ଦେବତାବିଶ୍ୱାସ, ସମାଜ ଚଳଣିରେ ବଚନବିଶ୍ୱାସ, ଲୋକସଂପର୍କରେ ସରଳବିଶ୍ୱାସ । ବିଶ୍ୱାସ ହିଁ ତା'ର ସବୁ କିଛି । ତା'ର ବଳରେ ସେ ଏତେ କାଳ ସମାଜକୁ ନିୟନ୍ତ୍ରଣ କରି ରଖିଥିଲା । ବିନା ପ୍ରତିଦ୍ୱନ୍ଦ୍ୱିତାରେ ସମାଜର ବିଶ୍ୱାସଭାଜନ ବ୍ୟକ୍ତି ଜନପଦ-ମୁଖ୍ୟଭାବେ ନିର୍ବାଚିତ ହେଉଥିଲେ । ଯଥାଶକ୍ତି ଜନମଙ୍ଗଳ ସାଧନ କରିବାରେ ସେ ମଧ୍ୟ ଆତ୍ମୋତ୍ସର୍ଗ କରିବାକୁ ପଶ୍ଚାତ୍‌ପଦ ନଥିଲେ । ଏହାର ବ୍ୟତିକ୍ରମ ଘଟିଲେ ସ୍ୱତଃପ୍ରବୃତ୍ତ ଭାବେ ମୁଖ୍ୟ ପଦରୁ ସେ ଅବ୍ୟାହତି ନେଉଥିଲେ । ଏଣୁ ତାହାର ଅସନ୍ତୋଷର କାରଣ ନଥିଲା । ଏ ପ୍ରଥା ଅଦ୍ୟାପି ସେ ସମାଜରେ ପ୍ରକାରାନ୍ତରରେ ପରିଲକ୍ଷିତ ହୁଏ । କିନ୍ତୁ ଇତର ଜାତିର ଅନାହୂତ ଆଗମନ ଓ ସଂକ୍ରମଣ ନିଷ୍କଳଙ୍କ ଆଦିବାସୀ ମନରେ ସ୍ୱାର୍ଥାନ୍ୱେଷିତାର ପ୍ରଲେପ ବୋଳି ଏତେଦୂର କଳୁଷିତ କରିପକାଇଲା ଯାହାଦ୍ୱାରା ସେ ନିର୍ବିଘ୍ନରେ ସ୍ୱଜାତି ଉପରୁ ଆସ୍ଥା ତୁଟାଇ ବନ୍ଧୁକ୍ଷେତ୍ରରେ ଅପରର କ୍ରୀଡ଼ନକ ହୋଇପଡ଼ିଲା । ଫଳରେ ଇତର ବ୍ୟକ୍ତିକୁ ଜନପଦର 'ମୁଖ୍ୟ' ରୂପେ ନିର୍ବାଚିତ କରିବାରେ ସେ କୁଣ୍ଠା ପ୍ରକାଶ କରିବା ତେଣେ ଥାଉ, ବରଂ ତାହାର ସହାୟକ ହେଲା । ଶେଷରେ ଶବର ଅଧିକୃତ ବିଶାଳ ମଗଧ ରାଜ୍ୟ ଅନ୍ୟର ଶାସନାଧୀନ ହୋଇପଡ଼ିଲା । 'ଅନ୍ୟ' କହିଲେ ଏଠାରେ ଆର୍ଯ୍ୟାବର୍ତ୍ତୀୟ ନିମ୍ନ ବର୍ଣ୍ଣ 'ଶୂଦ୍ର' ଛଡ଼ା ଆଉ କେହି ବୋଲି ପ୍ରତୀତ ହୁଏ ନାହିଁ ।

କାଳକ୍ରମେ ଶୂଦ୍ରାଧୀନ ମଗଧରେ ଶବର ପ୍ରବର୍ତ୍ତିତ ମାନବିକ ମୂଲ୍ୟବୋଧର କ୍ରମ ପରିବର୍ତ୍ତନ ଘଟିବାକୁ ଲାଗେ । ଗଣତାନ୍ତ୍ରିକ ବ୍ୟବସ୍ଥା ବ୍ୟକ୍ତିତାନ୍ତ୍ରିକତାରେ ପରିଣତ ହୁଏ । ବିପୁଳ କୋଠସଂପତ୍ତିର ଅଧିକାଂଶ ନିର୍ବାଚିତ ବ୍ୟକ୍ତି ରକ୍ଷାକର୍ତ୍ତା ବ୍ୟାଜରେ ଦେଶବାସୀଙ୍କୁ ଆପଣା ଇଙ୍ଗିତରେ ପରିଚାଳିତ କରି ସତ୍ୟ, ବିଶ୍ୱାସ ଓ ଜନକଲ୍ୟାଣ ଉପରେ ପ୍ରତିଷ୍ଠିତ ଶାସନନୀତିକୁ ଜଳାଞ୍ଜଳି ଦେବା ସଙ୍ଗେ ସଙ୍ଗେ ଇଚ୍ଛାଭିଳାଷ ପୂରଣ ଲାଗି ରାଜ୍ୟ ବିସ୍ତାର ଓ ରାଜକୋଷବୃଦ୍ଧିକୁ ଅଗ୍ରାଧିକାର ଦିଅନ୍ତି । ସେହି ଲକ୍ଷ୍ୟରେ ହସ୍ତୀ, ଅଶ୍ୱ, ସୈନ୍ୟ ସାମନ୍ତାଦିର ସଂପ୍ରସାରଣ ଓ ଯୁଦ୍ଧୋପକରଣାଦିର ଆବଶ୍ୟକତା ଅନୁଭୂତ ହୁଏ ଏବଂ ତଦନୁସାରେ ହୁଏ ବିପୁଳ ଧନବଳ ଓ ଜନବଳ ସଂଗ୍ରହର ଅଭିଯାନ । ଦେଶବାସୀଙ୍କୁ ସ୍ୱାର୍ଜିତ ସଂପତ୍ତିରୁ ଅର୍ଦ୍ଧାଧିକ ଅଂଶ ରାଜଭାଗ ରୂପେ ଦେବାକୁ ବାଧ୍ୟ କରାହୁଏ । ଉତ୍ତମ ବଳବୀର୍ଯ୍ୟସଂପନ୍ନ ବ୍ୟକ୍ତିଙ୍କଦ୍ୱାରା ଗଠିତ ହୁଏ ବିପୁଳ ସେନାବାହିନୀ । ତାହା ଥିଲା ଜଣେ ବ୍ୟକ୍ତିର ନିର୍ଦ୍ଦେଶ—ରାଜାଜ୍ଞା । ଏହାର ପ୍ରତିବାଦ ନଥିଲା । ପ୍ରତିବାଦ କରିବାକୁ କେହି ସାହସ କରୁନଥିଲେ । ତା'ଦ୍ୱାରା ରାଜ୍ୟବିସ୍ତାର ଓ ରାଜଗୌରବ କେତେଦୂର ବୃଦ୍ଧିପ୍ରାପ୍ତ ହୋଇଛି ତାହା ଏଠାରେ

ପ୍ରାସଙ୍ଗିକ ନୁହେଁ; କିନ୍ତୁ ଏ ପରିବର୍ତ୍ତିତ ଚତୁର ବ୍ୟବସାୟୀ ଓ ସରଳ ଶ୍ରମଜୀବୀ ସମାଜ ମନରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା ତାହାହିଁ ବିଚାର୍ଯ୍ୟ । ଶାସନ ମୁଖ୍ୟଙ୍କ ମନୋମୁଖୀ ଆଦେଶ ଓ ମାତସ୍ଥାନ ନିର୍ଦ୍ଦେଶରେ ଉଭୟ ସମାଜ ଯେତିକି ମର୍ମାହତ ହୋଇଥିଲେ ସ୍ୱାର୍ଥପର ରାଜକର୍ମଚାରୀ ଓ ଅନୁଗତ ସେନାବାହିନୀର ଉତ୍ପୀଡ଼ନ ତାର ଶତଗୁଣ ଯନ୍ତ୍ରଣାଦାୟକ ଥିଲା । ପ୍ରତିକାରର ପନ୍ଥା ନଥିବା ଯୋଗୁଁ ମଗଧ ଗୁଡ଼ି କଳିଙ୍ଗ ଭିତରକୁ ଉଠି ଆସିବାକୁ ସେମାନେ ପସନ୍ଦ କରିଛନ୍ତି ଏବଂ କୌଶଳ କ୍ରମେ ଦଳଦଳ ହୋଇ ଖସିଆସିଛନ୍ତି । କପିଶା ବା ରୂପନାରାୟଣ ଭଳି କେତୋଟି ନଦୀ ଅତିକ୍ରମ କରିବାଛଡ଼ା ସେମାନଙ୍କୁ ଆଉ ବିଶେଷ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିନାହିଁ, ଯେହେତୁ ଆଦିବାସୀ ଶବର ଅଧିକୃତ 'କଳିଙ୍ଗ'ରେ ସ୍ୱାଧୀନ ଜୀବନ ଯାପନର କୌଣସି ପ୍ରତିବନ୍ଧକ ନଥିଲା ।

ଏହି ପରିପ୍ରେକ୍ଷୀରେ ବିଚାର କଲେ ସୂତ୍ରଯୁଗ ମଧ୍ୟରେ ଆଦିବାସୀ ଓ ଆର୍ଯ୍ୟାବର୍ତ୍ତୀୟ ଶୂଦ୍ରସଭ୍ୟତା ମିଶ୍ରଣରେ ମଗଧରେ ଏକ ନୂତନ ସଭ୍ୟତା ବିକଶିତ ହେଲାବେଳେ ଦକ୍ଷିଣ-ପୂର୍ବ ଭୂଖଣ୍ଡରେ 'କଳିଙ୍ଗ' ଗୋଷ୍ଠୀର ପ୍ରସ୍ତର ଯୁଗୀୟ ସଭ୍ୟତା ଦକ୍ଷିଣପଟକୁ ଗୋଦାବରୀ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଥିଲା ବୋଲି ଜଣାପଡ଼େ । ଶବର ଜାତିର ବିବିଧ ଗୋଷ୍ଠୀ, ଉପଗୋଷ୍ଠୀ, ଶାଖା, ଉପଶାଖା ବିକ୍ଷିପ୍ତ ଭାବେ ଉପକୂଳ ସମତଳ, ପର୍ବତ ଶିଖର ଓ ଘଞ୍ଚଜଙ୍ଗଲ ମଧ୍ୟରେ ସ୍ୱାଧୀନ ଜୀବନଯାପନ କରି ରହିଥିଲେ । ସେମାନଙ୍କର ଆଚାର, ବିଚାର, ସାମାଜିକତା, ପର୍ବପର୍ବାଣି ସବୁ ପାରମ୍ପରିକ ଧାରରେ ପୂର୍ବପୁରୁଷଙ୍କ ପଦାଙ୍କ ଅନୁସରଣରେ ଚାଲି ଆସୁଥିଲା । ମୋଟ ଉପରେ କ୍ରମବିକଶିତ ପ୍ରସ୍ତର ଯୁଗୀୟ ସଭ୍ୟତା ଉନ୍ନତିର ଶୀର୍ଷସୀମା ସ୍ପର୍ଶ ନକଲେ ସୁଦ୍ଧା କାଳସ୍ରୋତରେ ଭାସିଆସି ମାନବିକ ମୂଲ୍ୟବୋଧର କାଉଁରୀ ସ୍ପର୍ଶରେ ପ୍ରକୃତି କୋଳରେ କମ୍ ପରିପୁଷ୍ଟ ହୋଇନଥିଲା । ଉତ୍ତରକାଳୀନ ସଭ୍ୟତାର ସମସ୍ତ ମୂଳବୀଜ ସେଥିରେ ଅଜ୍ଞାତ ଭାବେ ନିହିତ ଥିଲା । ବର୍ତ୍ତମାନ ଲୁପ୍ତାବଶିଷ୍ଟ କଳିଙ୍ଗର ସଭ୍ୟତା ଅନୁଶୀଳନ କଲେ ତାହାର ସତ୍ୟତା ହୃଦୟଙ୍ଗମ ହୁଏ ।

---

## ତୃତୀୟ ପ୍ରକାଶ

## ଦେଶ ଓ ଜାତି ଗଠନପ୍ରକ୍ରିୟା

କାଳକ୍ରମେ ପ୍ରସ୍ତରଯୁଗୀୟ ଆଦିବାସୀ ଶବର କଳିଙ୍ଗର ଉପକୂଳ ଅଞ୍ଚଳରେ ସ୍ଥାୟୀ ବସତି ସ୍ଥାପନ କରି ସେଠାରେ ବନ୍ଦରାଦି ନିର୍ମାଣ ପୂର୍ବକ ବ୍ୟବସାୟ ବାଣିଜ୍ୟ ଦିଗରେ ମନ ବଳାଇଥିଲେ । ଯେହେତୁ ଅଭିଳାଷ କୁତ୍ରାପି ସୀମାବଦ୍ଧ ନୁହେଁ—ଯେ ଯେତିକ ପାଏ ସେ ଚ୍ହେଁ ତାଠାରୁ ଆହୁରି ବେଶୀ—ମଣିଷର ଇଚ୍ଛା ଅନ୍ୟ କେହି ଯେପରି ତାକୁ ବଳି ନ ପଡ଼େ । ଏହାରି ନାମ ଅହଙ୍କାର । ଏହାହିଁ ପ୍ରତିଦ୍ୱନ୍ଦ୍ୱିତାର ବୀଜ । ସେଥିଯୋଗୁ ଅପରପ୍ରତି ମଣିଷ ଈର୍ଷାନ୍ୱିତ ହୁଏ । ଈର୍ଷା କଳହର ଗର୍ଭଧାରିଣୀ । ପରସ୍ପର ସଦ୍‌ଭାବ ରଖି ଶବର-ଗୋଷ୍ଠୀ ଅଙ୍ଗାଙ୍ଗୀ ଭାବେ ହେଉପଛେ ଯେତେଦିନ ଯାଏ ଈର୍ଷାପର ନହୋଇ ସହାବସ୍ଥାନ କରିଆସିଥିଲେ ସେ ପର୍ଯ୍ୟନ୍ତ ଅବାଞ୍ଛିତ ଘଟଣାର ସୂତ୍ରପାତ ହୋଇ ନଥିଲା । କିନ୍ତୁ ଅବସ୍ଥାର,ବିଶେଷତଃ ଆର୍ଥିକ ଅବସ୍ଥାର,ତାରତମ୍ୟ ସମସ୍ତ ସ୍ରୋତରେ ପରସ୍ପରକୁ ଈର୍ଷାନ୍ୱିତ କରାଇ କଳହ ସୃଷ୍ଟିର କାରଣ ହୋଇପଡ଼େ । ଫଳରେ ନିରାପଦରେ ରହୁଥିବା ପ୍ରତ୍ୟେକ ଗୋଷ୍ଠୀ ପଡ଼ୋଶୀ ଆକ୍ରମଣ ଭୟରେ ସର୍ବଦା ଆତଙ୍କିତ ମନେକରନ୍ତି । ଅପ୍ରତ୍ୟାଶିତଭାବେ କେତେବେଳେ ସଂଘର୍ଷ ଉପୁଜିଲେ ଆକ୍ରମଣକାରୀର ପଦାନତ ହୋଇପଡ଼ନ୍ତି ତ ପୁଣି କେତେବେଳେ ତାକୁ ଉଚିତ ଶିକ୍ଷାଦେଇ ନିର୍ମୂଳ କରିଆଆନ୍ତି । ଏହି କାରଣରୁ ଆଜିର ରାଜ୍ୟ କାଲିକି ନଥିଲା କିମ୍ବା ଆଜି ନଥିବା ରାଜ୍ୟ ପରଦିନ ଗଢ଼ି ଉଠୁଥିଲା । ଅନାର୍ଯ୍ୟ ଅଧ୍ୟୁଷିତ ଅଞ୍ଚଳରେ କେବଳ ଏହା ଘଟୁନଥିଲା—ଆର୍ଯ୍ୟାବର୍ତ୍ତିରେ ବି । ବାହାରେ ପୁଲିନ୍ଦ, କରାତ, କାମ୍ବୋଜ, ବିଦେହ ପ୍ରଭୃତି ଅନାର୍ଯ୍ୟ ରାଜ୍ୟ ପରି ଆର୍ଯ୍ୟାବର୍ତ୍ତ ଭିତରେ ବି କୁରୁ, ପାଞ୍ଚାଳ, କେକୟ, ଶୁଶୁମାର, ଗାନ୍ଧାର, ଲିଚ୍ଛାବି ପ୍ରଭୃତି ରାଜ୍ୟ ନୂତନଭାବେ ଗଢ଼ି ଉଠୁଥିଲା ।

କିନ୍ତୁ ଆର୍ଯ୍ୟେତର ଗୋଷ୍ଠୀର ପାରସ୍ପରିକ ବିବାଦ ଚତୁର୍ବର୍ଣ୍ଣୀଙ୍କ ଚକ୍ଷୁକୁ ଏଡ଼ାଇ ପାରି ନଥିଲା—କାରଣ, ଇତର ସମାଜପ୍ରତି ସେମାନେ ସର୍ବଦା ସତର୍କ ଦୃଷ୍ଟି ରଖୁଥିଲେ । ତାଙ୍କ ଭାଷାରେ ସେମାନେ ନିଜେ ହେଲେ 'ଆର୍ଯ୍ୟ' ଅର୍ଥାତ୍ 'ପୂଜ୍ୟ' ଏବଂ ଇତର ଜାତି 'ଅନାର୍ଯ୍ୟ' ବା 'ଅପୂଜ୍ୟ' । କିନ୍ତୁ ଅନାର୍ଯ୍ୟ ଜାତି ଆର୍ଯ୍ୟ ଗୋଷ୍ଠୀଙ୍କୁ କି ଦୃଷ୍ଟିରେ ଦେଖୁଥିଲା, ସେମାନଙ୍କ ସମ୍ବନ୍ଧରେ କି ଧାରଣା ପୋଷଣ କରିଥିଲା ଏବଂ ସେମାନଙ୍କ କ୍ରିୟାକଳାପକୁ କି ଭାବରେ ଗ୍ରହଣ କରୁଥିଲା ସେ ସଂପର୍କରେ ଆର୍ଯ୍ୟଗ୍ରନ୍ଥ ନୀରବ । ଉଭୟ ଗୋଷ୍ଠୀର ଉତ୍ତରକାଳୀନ

ସମ୍ପର୍କରୁ ଅନୁମାନ ହୁଏ, ଆର୍ଯ୍ୟଙ୍କ ପରି ସେମାନେ ତାଙ୍କୁ ଇତର ଦୃଷ୍ଟିରେ ଦେଖୁନଥିଲେ କିମ୍ବା ତାଙ୍କ ପ୍ରତି ସେମାନଙ୍କର ବିଦ୍ୱେଷ ନଥିଲା । ଏଣୁ ବର୍ଣ୍ଣିଜନିତ ଉତ୍ପୀଡ଼ନ ଯୋଗୁ ହେଉ ବା ଜୀବିକା ଉପାର୍ଜନ ଲକ୍ଷ୍ୟରେ ହେଉ, ସଂସ୍କୃତିର ସମ୍ପ୍ରସାରଣ ସକାଶେ ହେଉ କିମ୍ବା ଦେଶାଟନ ଉଦ୍ଦେଶ୍ୟରେ ହେଉ, ଯେତେବେଳେ ଆର୍ଯ୍ୟଗୋଷ୍ଠୀ ଇତର ଦେଶରେ ପଦାର୍ପଣ କରିଛନ୍ତି ସେତେବେଳେ ଅପରପକ୍ଷ ସ୍ୱାଗତ ନକଲେ ମଧ୍ୟ ବିରୋଧ କରିବାର କୁତ୍ରାପି ବର୍ଣ୍ଣନା ନାହିଁ । ଏଥିରୁ ଅନାର୍ଯ୍ୟ ଅଞ୍ଚଳ ମଧ୍ୟରେ ଆର୍ଯ୍ୟମାନେ ନିର୍ବାଧରେ ପ୍ରବେଶ କରିପାରୁଥିଲେ ବୋଲି ଅଧ୍ୟାହାର କରିଯାଇପାରେ । କିନ୍ତୁ ଭଲ ହେଉ ବା ମନ୍ଦହେଉ, ଆର୍ଯ୍ୟୀକରଣ-ପ୍ରବୃତ୍ତି ଥିଲା ଆର୍ଯ୍ୟସମାଜର ସ୍ୱାଭାବିକ ଗୁଣ । ଅର୍ଥାତ୍ ସେମାନେ ଯେଉଁଠି ରହନ୍ତି ସ୍ୱକୀୟ ସଂସ୍କୃତି ବିସ୍ତାର ନକରି ଛାଡ଼ନ୍ତି ନାହିଁ । ସେମାନଙ୍କର ଧାରଣା ଆର୍ଯ୍ୟ ସଂସ୍କୃତି ଓ ବିଶ୍ୱାସଧାରା ଇତର ଅପେକ୍ଷା ବହୁ ଊର୍ଦ୍ଧ୍ୱରେ । ତେଣୁ ଇତର ଜାତିକୁ ଆର୍ଯ୍ୟଭାବାପନ୍ନ କରିବାଲାଗି ନୂଆ ନୂଆ କୌଶଳ ଉଦ୍‌ଭାବନ କରୁଥିଲେ । ଆବଶ୍ୟକ ସ୍ଥଳେ ଇତର ସଭ୍ୟତାର ଉପାଦାନମାନ ଆତ୍ମସାତ୍ କରି ତଦ୍‌ଭବ ରଚନା ଜାତ କରିଉଥିଲେ । ସେତିକି ନୁହେଁ, ତାହା ବିଜୟ ଗୌରବ ବୋଲି ସେମାନେ ମନେକରୁଥିଲେ । ଉପନିଷଦୀୟ ଅଗ୍ନିଙ୍କ ପୂର୍ବ ଦିଗ୍‌ବିଜୟ ଗାଥା ଏହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

ଏଣୁ ଆର୍ଯ୍ୟାବର୍ତ୍ତବାସୀ ମଗଧରେ ଅନୁପ୍ରବେଶ କରି ସ୍ଥାୟୀବାସିନ୍ଦାରେ ପରିଣତ ହେବା ପରେ ସ୍ଥାନୀୟ ନିରୀହ ଜନସାଧାରଣ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ଲାଗନ୍ତି । ସେତିକିବେଳେ ଦୀର୍ଘକାଳରୁ ଚାଲିଆସୁଥିବା ଆର୍ଯ୍ୟେତରଙ୍କ ଗୋଷ୍ଠୀ ସଂଘର୍ଷ ତାଙ୍କ ପକ୍ଷେ ଅଯାଚିତ ଦାନ ସ୍ୱରୂପ ମନେହୁଏ । ପରସ୍ପର କଳହରେ ମାତି ମଗଧ, ବୃଜି, ଅବନ୍ତୀ, ଅଙ୍ଗ, କୋଶଳ ପ୍ରଭୃତି ରାଜ୍ୟ କ୍ରମେ କ୍ରମେ ଦୁର୍ବଳ ହୋଇପଡ଼ୁଥାନ୍ତି । ଏହି ଅବସରରେ ଆର୍ଯ୍ୟାବର୍ତ୍ତର ସୀମାନ୍ତବର୍ତ୍ତୀ ମଗଧ ଚତୁର୍ବର୍ଣ୍ଣୀଙ୍କ ବିହାରସ୍ଥଳୀ ରୂପେ ବିବେଚିତ ହେବା ସ୍ୱାଭାବିକ । ପ୍ରତିବେଶୀ 'ବୃଜି' ରାଜ୍ୟ ସହିତ ଦୀର୍ଘକାଳ ସଂଘର୍ଷରତ ମଗଧର ଶବରଧର୍ମୀ ଶୂଦ୍ର ସେନା ନାୟକ ଅନୁପ୍ରବିଷ୍ଟ ଗୋଷ୍ଠୀର ସାହାଯ୍ୟ ପ୍ରାର୍ଥନା କରିବା ଅସ୍ୱାଭାବିକ ନଥିଲା ଯାହା ଅପର ପକ୍ଷ ପାଇଁ ଥିଲା ସୁବର୍ଣ୍ଣ ସୁଯୋଗ । ସେମାନଙ୍କ ସାହାଯ୍ୟରେ ଶତ୍ରୁ ସେନାକୁ ପରାଜିତ କରି ମଗଧର ଅନାର୍ଯ୍ୟ ରାଜା ବିଜୟ ଗୌରବରେ ମଣ୍ଡିତ ହୋଇ ରାଜନୈତିକ ସ୍ଥିତିକୁ ଦୃଢ଼ତର କରି ପାରିଲେ ସତ; କିନ୍ତୁ ପୂର୍ବଭଳି ତାହା ଆର୍ଯ୍ୟେତର ଗୋଷ୍ଠୀର ଅଧୀନରେ ରହିଲା ନାହିଁ; ବହୁଭାବେ ଆର୍ଯ୍ୟଭାବନା ସ୍ପର୍ଶିତ ହୋଇପଡ଼ିଲା । ଅନାର୍ଯ୍ୟ ପ୍ରତିପତ୍ତି କ୍ରମଶଃ ଲୋପ ପାଇବାକୁ ଲାଗିଲା । ଅନାର୍ଯ୍ୟ ରାଜାଙ୍କୁ ବିତାଡ଼ିତ କରି ପ୍ରଥମେ ଯିଏ ମଗଧ ସିଂହାସନ ଅଧିକାର କରିଥିଲେ ସେ ଥିଲେ କୁଆଡ଼େ ଜଣେ ଭୋଜବଂଶୀ ଆର୍ଯ୍ୟ କ୍ଷତ୍ରିୟ ଯାହାଙ୍କ ଦ୍ୱାରା ମଗଧ କ୍ରମଶଃ ଆର୍ଯ୍ୟସଂସ୍କୃତିସମ୍ପନ୍ନ ହୋଇପଡ଼ିଲା । ଏପରି ଭାବେ ଅବସ୍ଥାର ପରିବର୍ତ୍ତନ ଘଟିଲା ଯାହାବଳରେ ପୁରାଣ ଯୁଗରୁ ରହିଆସିଥିବା ଶବର, କିରାତ, କଳିଙ୍ଗ, ପୁଳିନ୍ଦ, ଲୁବ୍‌ଧକ ପ୍ରଭୃତି ସ୍ୱାଧୀନଚେତା ଆଦିବାସୀ ସମେତ ସମଭାବାପନ୍ନ ଶୂଦ୍ର ଓ ବଣିକ

ସଂପ୍ରଦାୟ ଭିଟାମାଟି ଛାଡ଼ି ମଗଧର ଦକ୍ଷିଣ-ପୂର୍ବ ସୀମା ସଂଲଗ୍ନ କଳିଙ୍ଗ ରାଜ୍ୟ ଭିତରକୁ ଉଠିଆସିଲେ ଏବଂ ଉତ୍ତରକାଳରେ 'କଳିଙ୍ଗବାସୀ' ଭାବେ ଆପଣାର ପରିଚୟ ଦେବାକୁ କୁଣ୍ଠାବୋଧକଲେନାହିଁ ।

କଳିଙ୍ଗର ଭୌଗୋଳିକ ଅବସ୍ଥିତି ସମ୍ବନ୍ଧରେ ଆଗରୁ ସୂଚନା ଦିଆହୋଇଛି । ବର୍ତ୍ତିମାନ ଦେଖିବା ମଗଧବାସୀଙ୍କ ପ୍ରବେଶବେଳକୁ ସେଠାର ଆଭ୍ୟନ୍ତର ପରିସ୍ଥିତି କି ରକମର ଥିଲା । ଆଦିବାସୀ ଯେତିକି ସ୍ୱାଭିମାନୀ ସେତିକି ଶାନ୍ତିପ୍ରିୟ । ସେ କେବେ କାହାର ଅନିଷ୍ଟ କରେ ନାହିଁ, କିନ୍ତୁ ତା' କଥାରେ କାହାର ହସ୍ତକ୍ଷେପକୁ ବରଦାସ୍ତ ମଧ୍ୟ କରେ ନାହିଁ । ସେ, ତା' କୁଟୁମ୍ବ ଓ ତା ଗାଁ ଭଲ ତ ସେ ଭଲ—ଅନ୍ୟଥା ସେ ଅମଣିଷ । ହାତ-ଗୋଡ଼ ଖଟାଇ ଜୀବିକାର୍ଜନ କରିବାରେ ତା'ର ଆନନ୍ଦ । ସେଥିପାଇଁ ଯେଉଁ ସ୍ଥାନ ଅନୁକୂଳ ତାହା ତା'ର ଘର । ସେ ଚିରକାଳ ଗୋଟିଏ ଜାଗାରେ ବାନ୍ଧି ହୋଇ ରହେ ନାହିଁ । ଯେଉଁ ସ୍ଥାନ ଗ୍ରାସାଚ୍ଛାଦନ ପାଇଁ ଯେତେବେଳ ଯାଏଁ ଅନୁକୂଳ ସେତେବେଳଯାଏଁ ତାହା ଆପଣାର; ବ୍ୟତିକ୍ରମ ହେଲେ ପରମୁହୂର୍ତ୍ତିରେ ତାକୁ ଛାଡ଼ି ଚାଲିଯାଏ । ଏହି କାରଣରୁ ସେମାନଙ୍କୁ 'ଯାଯାବର' ବୋଲି କୁହାଯାଏ । କିନ୍ତୁ ବାସ୍ତବିକ ସେମାନେ ସେପରି ନୁହନ୍ତି । ଯେତେ ଶିକ୍ଷିତ ବା ସଭ୍ୟ ହୁଅନ୍ତୁ, ଜୀବିକାର୍ଜନର ସୁଯୋଗ ନଥିବା ସ୍ଥାନକୁ କେହି ପସନ୍ଦ କରନ୍ତିନାହିଁ । ଏ ନୀତି କେବଳ ସେ ଯୁଗର ବା ସେ ଜାତିର ନୁହେଁ, ଏହା ସାର୍ବଜନିକ ଓ ସାର୍ବକାଳୀନ । ସେଥିପାଇଁ ଆଦିବାସୀଙ୍କୁ 'ଯାଯାବର' କହିବା ନିରର୍ଥକ ।

ସେ ଯାହାହେଉ, ମାଗଧୀ ସମାଜ ଏ ଅଞ୍ଚଳରେ ପ୍ରବେଶକରିବା ଆଗରୁ ଶିକାରୀ ଜଙ୍ଗଲକୁ, କୃଷିଜୀବୀ ସମତଳ ଅଞ୍ଚଳକୁ, ମତ୍ସ୍ୟଜୀବୀ ନଦୀ ଉପତ୍ୟକାକୁ, କାରିଗର ଜନ-ଗହଳି ବସତିକୁ ଜୀବିକାର ଯୋଗ୍ୟସ୍ଥଳୀ ଭାବି ଧରି ମେଲି ରହିବାଦ୍ୱାରା ଏକା ସଂସ୍କୃତି-ସଂପନ୍ନ ଆଦିବାସୀ ଶବର ଏକାଧିକ ଶାଖାରେ ପରିଣତ ହୋଇପଡ଼ିଲା । କାଳିକ ଓ ଦୈଶିକ ବ୍ୟବଧାନ ମୌଳିକ ସଂପର୍କକୁ ଶିଥିଳ କରିବାରେ ଲାଗିଲା, ଫଳରେ ଦୀର୍ଘକାଳର ଐକ୍ୟସୂତ୍ର କ୍ରମଶଃ ଛିନ୍ନହୋଇ ପ୍ରତ୍ୟେକଙ୍କୁ ସ୍ୱତନ୍ତ୍ର ଗୋଷ୍ଠୀର ବୋଲି ପରିଚିତ କରାଇବା ଦ୍ୱାରା ସୁସଂହତ ଆଦିବାସୀ ସମାଜ ବହୁ ଦଳ ବିଶିଷ୍ଟ ହୋଇପଡ଼ିଲା । ସେହି କାରଣରୁ ପ୍ରାଗ୍‌ବୌଦ୍ଧ ରଚନାମାନଙ୍କରେ କଳିଙ୍ଗରେ କିରାତ, ନିଷାଦ, ଶବର, ଲୁବ୍‌ଧକ, ପୁଳିନ୍ଦ, ପ୍ରଭୃତି ବିଭିନ୍ନ ଅନାର୍ଯ୍ୟ ଶ୍ରେଣୀର ନାମ ଦେଖିବାକୁମିଳେ ।

ଭାରତର ପୂର୍ବଭାଗରେ କିରାତ, ପଶ୍ଚିମରେ ଯବନ ଏବଂ ମଧ୍ୟଭାଗରେ ଚତୁର୍ବର୍ଣ୍ଣୀ ଆର୍ଯ୍ୟ ରହୁଥିବା ବାୟୁପୁରାଣରୁ ସୂଚିତ ହୁଏ । ବୌଦ୍ଧଗ୍ରନ୍ଥରେ ମଧ୍ୟ କଳିଙ୍ଗରେ ବୈଶ୍ୟ, ଭୂୟାଁ ପ୍ରଭୃତି ଜାତି ରହୁଥିବା ଉଲ୍ଲେଖ ଅଛି । କଳିଙ୍ଗର ରାଜା ଶବର ଥିବା ବିଷୟ ମହାଭାରତରେ ମଧ୍ୟ ବର୍ଣ୍ଣିତ । ଏଣୁ ଦୁର୍ଗମ ପାହାଡ଼ ଶିଖରରୁ ଆରମ୍ଭକରି ସନ୍ତସନ୍ତିଆ ଉପକୂଳ ଅଞ୍ଚଳ ପର୍ଯ୍ୟନ୍ତ ମୂଳ ଆଦିବାସୀ ଗୋଷ୍ଠୀ ବିଭିନ୍ନ ଶାଖା-ଉପଶାଖାରେ ବିଭକ୍ତ ହୋଇ ରହିଥିଲେ ବୋଲି କହିହେବ । ବର୍ତ୍ତିମାନର ଓଡ଼ିଶା ପ୍ରଦେଶ ତତ୍କାଳ କଳିଙ୍ଗର

ଅର୍ଦ୍ଧାଂଶ ହେଲେ ସୁଦ୍ଧା ଏହା ଏକ ଆଦିବାସୀ ରାଜ୍ୟ ରୂପେ ସ୍ୱୀକୃତ । ଏବେ ଏଠାରେ ଆଦିବାସୀଙ୍କ ସଂଖ୍ୟା ଶତକଡ଼ା ଚାଳିଶଭାଗ ହେଲେ ସୁଦ୍ଧା ଏ ଆଦିବାସୀ ରାଜ୍ୟ—କାରଣ ସେ ଏଠାର ମୂଳ ଅଧିବାସୀ । ଗଣନାନୁସାରେ ଏମାନଙ୍କ ଗୋଷ୍ଠୀ, ଉପଗୋଷ୍ଠୀ, ଶାଖା ଉପଶାଖା ସଂଖ୍ୟା କୋଡ଼ିଏ ବାଷଠି—ବିସ୍ତୃତ ବିବରଣୀ ଯଥା ସ୍ଥାନରେ ଦିଆଯିବ । କିନ୍ତୁ ଏମାନଙ୍କ ମଧ୍ୟରେ ଶବର, ମୁଣ୍ଡା, ଜୁଆଙ୍ଗ, ଗଣ୍ଡ, ବଣ୍ଡା, କନ୍ଧ, ଭୂୟାଁ, ଲୋଧା, କୋୟା ପ୍ରଭୃତି ଶ୍ରେଣୀର ସାମାଜିକ ଚଳଣି ଓ କୌଳିକ ପରମ୍ପରା ଅନୁଶୀଳନ କଲେ ଏ ସବୁର ଉତ୍ପତ୍ତି ମୂଳ ଏକ ବୋଲି ସ୍ପଷ୍ଟ ଜଣାପଡ଼େ । ସେକଥାକୁ ସେମାନେ ବି ସଗୌରବେ ସ୍ୱୀକାର କରନ୍ତି । ଏଣୁ ବୃତ୍ତି, ବସତି ଓ ବଂଶ ଅନୁଯାୟୀ ଏମାନେ ପରସ୍ପର ବିଚ୍ଛିନ୍ନ ହୋଇ ରହିଥିବା ଅବିଶ୍ୱାସ୍ୟ ନୁହେଁ । ସକଳ ବିଭେଦ ସତ୍ତ୍ୱେ, ସେମାନଙ୍କ ମଧ୍ୟରେ ପାରମ୍ପରିକ ରୀତି ନୀତି ଅଦ୍ୟାପି ଯେପରି ସମାନ ଭାବେ ଉଜ୍ଜୀବିତ, ତାହା ଦେଖିଲେ ଆଶ୍ଚର୍ଯ୍ୟଲାଗେ । ପୂଜା ପାର୍ବଣ, ଦେବତାବିଶ୍ୱାସ, ସ୍ପଷ୍ଟବାଦିତା, ସରଳ ଜୀବନ, ସ୍ୱାଭିମାନ ସବୁ ଗୋଷ୍ଠୀରେ ସମାନ ଭାବେ ବିଦ୍ୟମାନ । ଅବଶ୍ୟ କାଳ ସ୍ରୋତରେ ଭାସମାନ ହେଲାବେଳେ ସେ ମଧ୍ୟରେ କଦବା କ୍ୱଚିତ୍ ବାହ୍ୟ ପ୍ରଭାବ ଯୁକ୍ତ-ବିଯୁକ୍ତ ଭାବେ ଦୃଶ୍ୟମାନ ହେଲେ ହେଁ ଆଦିମ ସଭ୍ୟତା ଅକ୍ଷୁଣ୍ଣ ରହିଛି, ପାଞ୍ଚହଜାର ବର୍ଷ ପରେ ମଧ୍ୟ ତାହାର ପରିବର୍ତ୍ତନ ଘଟିନାହିଁ ।

ସାଧାରଣତଃ ଶକ୍ତିଶାଳୀ ଗୋଷ୍ଠୀ ଅନ୍ୟର ଶ୍ରଦ୍ଧାଭାଜନ ହେବା ଦେଖାଯାଏ । ସେ ଦୃଷ୍ଟିରୁ ସାହସିକ 'କଳିଙ୍ଗ' ଶ୍ରେଣୀ ସେ ସମ୍ମାନ ଉପଭୋଗ କରୁଥିଲେ । ସେଥିଯୋଗୁଁ ବାସଭୂମି 'କଳିଙ୍ଗ' ନାମରେ ନାମିତ ଥିଲା ଓ ତତ୍ରତ୍ୟ ଅଧିବାସୀ 'କଳିଙ୍ଗବାସୀ' ବୋଲାଉ-ଥିଲେ । ସେହି ଗୋଷ୍ଠୀ ଉପରେ ଦେଶର ସମସ୍ତ ଦାୟିତ୍ୱ ଅର୍ପିତଥିଲା । ସେ ମଧ୍ୟ ଯଥାଶକ୍ତି ତାହା ପାଳନ କରୁଥିଲା । ଜଳସଂଳ ସୁଲଭ ସ୍ଥାନରେ ଗ୍ରାମ-ଜନପଦ, ସମତଳ ଭୂଭାଗରେ ଶସ୍ୟକ୍ଷେତ୍ର, ଜଳବହୁଳ ନଦୀ କୂଳରେ ପଥର ଘାଟ, ମତ୍ସ୍ୟଶିକାରୋପଯୋଗୀ କ୍ଷୁଦ୍ରାକାର ଡଙ୍ଗା, ପାହାଡ଼ କୋଳରେ ପୋଡ଼ୁକ୍ଷେତ ଓ ଯୁଦ୍ଧୋପଯୋଗୀ ଧନୁଶର ଅସ୍ତ୍ରଶସ୍ତ୍ର ନିର୍ମାଣରୁ ସେମାନଙ୍କ ଦକ୍ଷତା ପ୍ରମାଣିତ ହୁଏ । ତତ୍ତ୍ୱବିଦ୍‌ମାନେ କହନ୍ତି—ଏହାଙ୍କ ସମକାଳୀୟ ମଣିଷ କୋଡ଼ିଏ ପାଞ୍ଚହଜାର ବର୍ଷ ପୂର୍ବେ ଭାରତବର୍ଷରେ ବଣଜାତ 'ବାଲୁଙ୍ଗା' ନାମକ ଶସ୍ୟରୁ ପ୍ରଥମେ 'ଧାନ୍ୟ' ଆବିଷ୍କାର କରିଥିଲେ । ତାହା ଯଦି ହୁଏ କଳିଙ୍ଗର ଦକ୍ଷିଣପ୍ରାନ୍ତ ପର୍ବତଶିଖରବାସୀ ଶବରଗୋଷ୍ଠୀ ସେମଧ୍ୟରୁ ଅନ୍ୟତମ ହୋଇଥିବା ବିଶେଷ ସମ୍ଭବ । କାରଣ ଏବେ ସୁଦ୍ଧା କୋରାପୁଟ ମାଳ ଅଞ୍ଚଳର ପାର୍ବତ୍ୟ ଗୋଷ୍ଠୀ 'ବାଲୁଙ୍ଗା'ରୁ ଧାନ୍ୟ ଉତ୍ପାଦନ ପ୍ରଣାଳୀ ଅବଲମ୍ବନ କରିବା ଦେଖାଯାଏ । ଏହାଛଡ଼ା, ସମୁଦ୍ର ଉପକୂଳ ନଦୀ ମୁହାଣମାନଙ୍କରେ ବନ୍ଦର ନିର୍ମାଣ କରି ମଧ୍ୟ ଦୂରଦୂରାନ୍ତର ଦ୍ୱୀପ ସହିତ ସମ୍ପର୍କ ରକ୍ଷି ଆସିଥିବା ପ୍ରମାଣ ରହିଛି । ମାର୍କଣ୍ଡେୟ ପୁରାଣରେ ଉଲ୍ଲେଖ ଅଛି 'ଶବର ଓ ପୁଳିନ୍ଦ'-ମାନେ ଭାରତରୁ ଯାଇ ସିଂହଳ ଅଧିବାସୀଙ୍କ ସହ ମିତ୍ରତା ସ୍ଥାପନ କରିଥିଲେ । ଦକ୍ଷିଣ ଭାରତୀୟ ଗବେଷକ ଡି. ଆର୍. ରାମଚନ୍ଦ୍ରଦିକ୍ଷିତାର୍ କହନ୍ତି—"ସିଂହଳରେ ବିଦ୍ୟମାନ

'ରତ୍ନପୁର' ନିକଟବର୍ତ୍ତୀ 'ହବର ଗ୍ରାମ'ଟି 'ଶବର ଗ୍ରାମ'ର ଅପଭ୍ରଂଶ ଶବ୍ଦ । ଭାରତୀୟ ଆଦିମ ଶବରମାନଙ୍କ ଦ୍ୱାରା ତାହା ପ୍ରତିଷ୍ଠିତ ହୋଇଥିଲା । ପୁନଶ୍ଚ ସୌର ଭାଷାରେ ପ୍ରଚଳିତ ଅଂସିଲେ=ନୌକା, ଅଂସୁଡେଂନ୍=ନୌକାର ଭିତର କୋଠରି, ଗୁଗୁଲ୍‌ତାଡଂ=ନୌକାବନ୍ଧା ଦଉଡ଼ି, ଅଲୁପେଗ୍ର=ନୌକାଭିଡ଼ା ରସି, ଅନଜଲ୍ଂ=ସମୁଦ୍ରଯାତ୍ରା ପ୍ରଭୃତି ଶବ୍ଦରୁ ମଧ୍ୟ ସେ କଥା ପ୍ରମାଣିତ ହୁଏ । ଏଣୁ ଶବରମାନେ ସାଗର ମାର୍ଗରେ ଯାଇ ସେଠାରେ ସ୍ଥାୟୀ ବସତି ସ୍ଥାପନ କରିଥିଲେ କହିବା ଅଯୌକ୍ତିକ ନୁହେଁ । ଏଣୁ ସୂତ୍ରଯୁଗ କାଳରେ ଶବର ଅଧିକୃତ କଳିଙ୍ଗ ଏକ ସଭ୍ୟଦେଶ ଭାବେ ନିଜକୁ ପ୍ରତିଷ୍ଠିତ କରିଥିଲା କହିଲେ ଅସଙ୍ଗତ ହେବ ନାହିଁ ।

ଏଣେ କିନ୍ତୁ ପରସ୍ପର ସଂଲଗ୍ନ କଳିଙ୍ଗ ଓ ମଗଧର ସାମାଜିକ ତଥା ଆର୍ଥିକ ଆଭିମୁଖ୍ୟ ଥିଲା ପରସ୍ପରର ବିପରୀତ । ଗୋଟିଏ ପ୍ରସାରଧର୍ମୀ ଆର୍ଯ୍ୟସଭ୍ୟତାର ଉଚ୍ଛ୍ୱଳ ତରଙ୍ଗ ମାଳାରେ ବୁଡ଼ିରହିଥିଲାବେଳେ ଅନ୍ୟଟି ନିଚ୍ଛକ ପାର୍ବତ୍ୟ ସଭ୍ୟତାର ଆବରଣ ଭିତରେ କୌଳିକ ପରମ୍ପରା ଅବ୍ୟାହତ ରଖି ଧୀରେ ଧୀରେ ଅଗ୍ରସର ହେଉଥିଲା । ନବାଗତ ଅଣଆଦିବାସୀ ସମାଜ ଅମାର୍ଜିକ ମାଗଧୀ ଜନତା ଉପରେ ଅଖଣ୍ଡ ପ୍ରଭାବ ବିସ୍ତାର କରି ଅହେତୁକ ସଙ୍କଟ ସୃଷ୍ଟି କରୁଥିଲା । ଏବେ ମଧ୍ୟ ବିହାର ପ୍ରଦେଶସ୍ଥ ସାନ୍ତାଳପ୍ରଗଣା ଆଦିବାସୀ ସଂପ୍ରଦାୟର ଅବସ୍ଥା ଅନୁଧ୍ୟାନ କଲେ ଏହାର ସତ୍ୟତା ପ୍ରମାଣିତ ହୁଏ । ବିହାର, ମଧ୍ୟପ୍ରଦେଶ, ବଙ୍ଗଳା, ଓଡ଼ିଶା ମଝିରେ ନିଘଞ୍ଚ ପର୍ବତ ମାଳ ଭିତରେ ଅବସ୍ଥିତ ସାନ୍ତାଳ ପ୍ରଗଣା । ମୂଳ ଅଧିବାସୀ ସାନ୍ତାଳ-ଶବର, ଯେଉଁମାନେ ମଗଧର ଆଦିମତମ ଅଧିବାସୀ—ଆଦିବାସୀ । ତାଙ୍କ ବ୍ୟତୀତ ଅନ୍ୟ କାହାରି ଅସ୍ତିତ୍ୱ ନଥିଲା ଯେଉଁଠି । କିନ୍ତୁ ଏବେ ସମଗ୍ର ମଗଧ (ବିହାର ପ୍ରଦେଶ) ଗ୍ରୁଡ଼ନ୍ତୁ, ଏକା 'ସାହେବଗଞ୍ଜ' ଜିଲ୍ଲା ଜନସଂଖ୍ୟାର ମାତ୍ର ପଞ୍ଚସ୍ତରିଶ ଭାଗ ହେଉଛନ୍ତି ସାନ୍ତାଳ-ଶବର । ଜଙ୍ଗଲି ଜାତି । ବଣ ପର୍ବତର କାଠ ବାଉଁଶ ଏବଂ କୃଷିକର୍ମ ତାହାଙ୍କର ପାରମ୍ପରିକ ବୃତ୍ତି । ସ୍ପଷ୍ଟବାଦିତା ଓ ସରଳବିଶ୍ୱାସ ତାହାଙ୍କ ସ୍ୱଭାବଜ ଗୁଣ । ସ୍ଥାନାନ୍ତରାଗତ ଅଣଆଦିବାସୀ ବଣିକଙ୍କ ପ୍ରବଞ୍ଚନାର ଶିକାର ହୋଇ ସମତଳ ଭୂମି ଗ୍ରୁଡ଼ି ଅଗମ୍ୟ ଜଙ୍ଗଲ ଭିତରେ ଆଶ୍ରୟ ନେଇ ରହିଛନ୍ତି ସେତିକି ନୁହେଁ, ଏବେ ବି ସେମାନେ ନିର୍ଜନ ବଣରେ ରହି ଅନ୍ୟର ଲୋଲୁପ ଦୃଷ୍ଟିକୁ ଏଡ଼ାଇ ପାରି ନାହାନ୍ତି । ସାନ୍ତାଳ ବସତି ଭିତରେ ନିର୍ବାଧ ପ୍ରବେଶ କରି ସେମାନେ ତାଙ୍କର ବାସ-ଗ୍ରାସ ଛଡ଼ାଇ ନେବାରେ ତିଳେ ମାତ୍ର ଲଜ୍ଜା ବୋଧ କରୁନାହାନ୍ତି । ବିଶ୍ୱାସଘାତକତା ଓ ମିଥ୍ୟା ପ୍ରତାରଣାର ଶରବ୍ୟ ହୋଇ ସାନ୍ତାଳ, ଶବର, କୋଧା ପ୍ରମୁଖଙ୍କ ସ୍ୱାଧିକାର ଓ ଅଭିମାନ ବୋଦୁଲିମାନ ହୋଇପଡ଼ୁଛି । ପଶ୍ଚିମମୁଖୀ ସଭ୍ୟତାର କର୍ଣ୍ଣଧାରମାନେ ସମାଜ'ତନ୍ତ୍ର'ଭିତରକୁ ଟାଣିନେଇ ତାଙ୍କୁ ଅନ୍ତଃସାର-ଶୂନ୍ୟ କରିବାରେ ଲଗିଛନ୍ତି ଏବଂ ସେଥିପାଇଁ ବିବିଧ କୌଶଳ ଅବଲମ୍ବନ କରାହୋଇଛି । ଆଧୁନିକ ସଭ୍ୟତାର ପ୍ରଚଣ୍ଡ ସୂର୍ଯ୍ୟାଲୋକ ତଳେ ଏତାଦୃଶ ଅନିଷ୍ଟକାରୀ କୃତ୍ରିମତା ଯଦି ହେପରୁଆ ଭାବେ ପ୍ରଚଳିତ ହୋଇପାରେ ତେବେ ସଭ୍ୟତାରମ୍ଭକାଳୀନ କୁହେଳିକା

ମଧ୍ୟରେ ତାହାକୁ କି ବୀଭତ୍ସ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥିବ କିଏ କହିବ ! ଏଣୁ ଆଦିବାସୀଙ୍କୁ କଳେବଳେ କୌଶଳେ ସ୍ଥାନାନ୍ତରିତ କରାଇ ଚତୁର୍ବର୍ଣ୍ଣୀ ଗୋଷ୍ଠୀ ମଗଧକୁ ଅଧିକାର କରିନେଇଯିବାରେ କିଛି ବିଚିତ୍ରତା ନଥିଲା ।

ଷଷ୍ଠ ଶତାବ୍ଦୀକୁ ଐତିହାସିକମାନେ ମଗଧ ସାମ୍ରାଜ୍ୟର ଭିତ୍ତି ସ୍ଥାପନ କାଳ ବୋଲି ଧରି ନିଅନ୍ତି । କିନ୍ତୁ ମଗଧ ଓ କଳିଙ୍ଗ ବହୁପୂର୍ବରୁ ଜନବହୁଳ ଅଞ୍ଚଳରୂପେ ଖ୍ୟାତି ଲାଭ କରିଥିଲା । ଦୁଇଟିଯାକ ଥିଲା ଅନାର୍ଯ୍ୟ ଅଧିକୃତ । ସୂତ୍ରଯୁଗୀୟ ଗ୍ରନ୍ଥରେ ଦୁଇଟିଯାକ 'ମ୍ଲେଚ୍ଛ' ଦେଶରୂପେ ବର୍ଣ୍ଣିତ, କିନ୍ତୁ ଯେତେବେଳେ ତାହା ଆର୍ଯ୍ୟ ଅଧିକୃତ ହୁଏ ସେତେବେଳେ ଆଉ 'ଅପବିତ୍ର' ହେଲାନାହିଁ, ବରଂ ପବିତ୍ର ଦ୍ୱିଜାଧ୍ୟୁଷିତ ଅଞ୍ଚଳରୂପେ ଶାସ୍ତ୍ରାନୁମୋଦନ ଲାଭ କଲା । ମଗଧର (କୀକଟ) ଶବର ରାଜାଙ୍କୁ ପରାସ୍ତ କରି କ୍ଷେତ୍ରବଂଶୀ ଆର୍ଯ୍ୟରାଜାଙ୍କ ସିଂହାସନ ଅଧିକାର କଥାରୁ ତାହାହିଁ ସୂଚିତ ହୁଏ ।

ଏଣେ କିନ୍ତୁ, ଖ୍ରୀ.ପୂ. ଅଷ୍ଟମ ଶତାବ୍ଦୀରେ 'କରକଣ୍ଡୁ' ନାମକ ଜଣେ କଳିଙ୍ଗରାଜା ଜୈନଧର୍ମର ପୃଷ୍ଠପୋଷକ ଥିଲେ ବୋଲି ଜୈନଗ୍ରନ୍ଥରେ ଉଲ୍ଲେଖ ଅଛି । ବାସ୍ତବିକ ସେତେବେଳକୁ ବ୍ରାହ୍ମଣ୍ୟଧର୍ମର ପ୍ରତିଦ୍ୱନ୍ଦ୍ୱୀ ଭାବେ ଜୈନଧର୍ମ ଗଢ଼ି ଉଠିଥିଲା । ତାହା ଥିଲା ଖାଣ୍ଟି ବେଦ ବିରୋଧୀ । ବେଦବର୍ଣ୍ଣିତ ତତ୍ତ୍ୱକୁ ତାହା ସ୍ୱୀକାର କରେ ନାହିଁ । ବୈଦିକ ଧର୍ମରେ ଚାତୁର୍ବର୍ଣ୍ଣ୍ୟ ପ୍ରଥା ମୁଖ୍ୟସ୍ଥାନ ଲାଭ କରିଥିଲାବେଳେ ଜୈନଧର୍ମ ଥିଲା ଜାତି-ବର୍ଣ୍ଣ ଭେଦ ଶୂନ୍ୟ । ମୋକ୍ଷ ପ୍ରାପ୍ତିର ଅପରିହାର୍ଯ୍ୟ ଅଙ୍ଗ ବୈଦିକ ଯାଗଯଜ୍ଞାଦି କର୍ମକୁ ଜୈନମାନେ ସ୍ୱୀକାର କରନ୍ତି ନାହିଁ । ଜୈନମତରେ 'ଅହିଂସା ପରମୋଧର୍ମଃ, କିନ୍ତୁ ବୈଦିକ ଦୃଷ୍ଟିରେ 'ସର୍ବମେଧେ ସର୍ବଂ ହିଂସ୍ୟାତ୍' । ବୈଦିକ ମତରେ ବେଦବାକ୍ୟ 'ଅପୌରୁଷେୟ' ବୋଲି ଗୃହୀତ ହେଲାବେଳେ ଜୈନ ଦୃଷ୍ଟିରେ ତାହା ଆଦୌ ପ୍ରାମାଣିକ ନୁହଁ । ବୈଦିକ କ୍ରିୟାକର୍ମ ନିଷ୍ପତ୍ତି କାଳରେ ପରିଧେୟ ଅପରିହାର୍ଯ୍ୟ; ଅଥଚ ଜୈନଧର୍ମରେ ଦିଗମ୍ବର ପ୍ରଥା ବିଧିସମ୍ମତ । ବ୍ରାହ୍ମଣ୍ୟଧର୍ମ ଈଶ୍ୱର ବିଶ୍ୱାସ ପ୍ରଧାନ; କିନ୍ତୁ ଜୈନମାନେ କର୍ମ ଉପରେ ପ୍ରାଧାନ୍ୟ ଆରୋପ କରନ୍ତି । ବୈଦିକ ମତରେ ସଂସ୍କୃତ ଦେବଭାଷା ରୂପେ ସ୍ୱୀକୃତ; କିନ୍ତୁ ଜୈନମାନେ ତାହା ସ୍ୱୀକାର କରନ୍ତି ନାହିଁ । ବ୍ରାହ୍ମଣ ବିନା ବୈଦିକ ଧର୍ମାନୁଷ୍ଠାନର ଅନ୍ୟ କେହି ଅଧିକାରୀ ନଥିଲାବେଳେ, ଆବ୍ରହ୍ମଚଣ୍ଡାଳ ଜୈନଧର୍ମ ଗ୍ରହଣ କରିବାରେ ବାଧାନଥିଲା । ଏ ଦୃଷ୍ଟିରୁ ଜୈନଧର୍ମ ପ୍ରତି ଉପେକ୍ଷିତ ଜନସାଧାରଣ ଆକୃଷ୍ଟ ହେବା ସ୍ୱାଭାବିକ । ସେଥିଯୋଗୁ କଳିଙ୍ଗ ନରପତି 'କରକଣ୍ଡୁ' ଜୈନଧର୍ମର ତ୍ରୟୋଦଶ ତୀର୍ଥଙ୍କର 'ପାର୍ଶ୍ୱନାଥ'ଙ୍କୁ ସାଗ୍ରହେ ସ୍ୱଦେଶକୁ ନିମନ୍ତ୍ରଣ କରିନେଇଥିଲେ । ସେତିକବେଳେ କଳିଙ୍ଗରେ 'କରକଣ୍ଡ ବିହାର' ନାମରେ ଏକ ଜୈନପୀଠ ନିର୍ମିତ ହୋଇଥିଲା ବୋଲି ଜୈନଗ୍ରନ୍ଥ କହେ । ସମ୍ଭବତଃ ତା'ର ନାଁ ଥିଲା 'ଜୀନପଦ ଭବନ' । ଜୀନବର ପାର୍ଶ୍ୱନାଥଙ୍କ ପବିତ୍ର ପାଦ ସଙ୍କେତ ସେଠାରେ ଥିବା ଯୋଗୁ ତାହା ସେହି ନାମରେ ନାମିତ ଥିଲା ବୋଲି ମନେହୁଏ । ଏଣୁ କହିପାରୁ କଳିଙ୍ଗ ଖ୍ରୀ:ପୂ: ଅଷ୍ଟମ ଶତାବ୍ଦୀ ସରିକି ଧର୍ମସଚେତନ

ରାଜ୍ୟରୂପେ ଖ୍ୟାତି ଲାଭ କରିସାରିଥିଲା । ଅବଶ୍ୟ ବୃହଦାକାର ନଗର ବା ସ୍ତୂପମାନ ଗଠିତ ହୋଇଥିଲା କି ନାହିଁ ଜଣାପଡ଼େ ନାହିଁ ; ବୋଧହୁଏ ନଥିଲା, କାରଣ ଦୁଇଶହ ବର୍ଷ ପରବର୍ତ୍ତୀ 'ବିମ୍ବିସାର'ଙ୍କ ମଗଧ ସାମ୍ରାଜ୍ୟ ସ୍ଥାପନ ହେଲାବେଳକୁ ସେ ଅଞ୍ଚଳରେ କୁଆଡ଼େ ଅଠରହଜାର କ୍ଷୁଦ୍ରଗ୍ରାମ କେବଳ ରହିଥିଲା ଯାହାକୁ ଏକଶାସନାଧୀନ ରଖିବା ପାଇଁ ସେ ନାନାବିଧ ଉପାୟରେ ନାତିକ୍ଷୁଦ୍ର ଜନପଦ ଓ ମହାଜନପଦମାନ ନିର୍ମାଣ କରାଇଥିଲେ । ଏହା ଐତିହାସିକମାନେ କହନ୍ତି । ଦୁଇଶହ ବର୍ଷ ପରେ ମଗଧର ଅବସ୍ଥା ବିଚାରକଲେ କରକଣ୍ଡୁକାଳୀନ କଳିଙ୍ଗରେ ମହାନଗରୀମାନ ଗଢ଼ି ଉଠିଥିଲା ବୋଲି କହିବା ସମୀଚୀନ ମନେହୁଏ ନାହିଁ । ବରଂ କଳିଙ୍ଗରେ ମଧ୍ୟ ତାଦୃଶ କ୍ଷୁଦ୍ରଗ୍ରାମ ଓ ଜନପଦ ରହିଥିଲା ଯାହାକୁ ଜନନାୟକମାନେ ସ୍ୱବ୍ୟକ୍ତିତ୍ୱ ବଳରେ ଏକଚ୍ଛତ୍ରାଧୀନ ରଖିଥିଲେ ବୋଲି କୁହାଯାଇପାରେ । ସେ ପରିପ୍ରେକ୍ଷୀରେ 'କରକଣ୍ଡୁ' ଥିଲେ କଳିଙ୍ଗର ଜଣେ ଏକଚ୍ଛତ୍ର ଜନନାୟକ ।

ଐତିହାସିକ ମତରେ ବିମ୍ବିସାରଙ୍କ ରାଜତ୍ୱ ସମୟକୁ ଭାରତବର୍ଷରେ କାଶୀ, କୋଶଳ, ବିଦେହ, ଅଙ୍ଗ, ଅବନ୍ତୀ, ମଦ୍ର, ବୈଶାଳୀ, କଳିଙ୍ଗ ପ୍ରଭୃତି ରାଜ୍ୟମାନ ପ୍ରତିଷ୍ଠା ପାଇ-ଆସିଥିଲା । ସେ ଗୁଡ଼ିକ ସବଦା ପରସ୍ପର ସହ କଳହରେ ମାତି କାଳାତିପାତ କରୁଥିଲେ । ବିମ୍ବିସାର ଥିଲେ ଗୌତମବୁଦ୍ଧଙ୍କ ସମସାମୟିକ ଓ ତାଙ୍କ ପିତାଙ୍କ ନାମଥିଲା 'ଭଟ୍ଟୀୟ' । ମଗଧରାଜାଙ୍କ ଅଧୀନରେ ଜଣେ ସେନାପତି ଭାବେ ସେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ବେଳକୁ ପ୍ରତିବେଶୀ ବୃଜି ଓ ମଗଧ ରାଜ୍ୟ ମଧ୍ୟରେ ଚିର ଶତ୍ରୁତା ରହିଆସିଥିଲା । ସମୟ ଓ ଅବସର ଦେଖି ଉଭୟେ ଉଭୟଙ୍କ ଉପରେ ଆକ୍ରମଣ କରୁଥିଲେ । ଅଣଆଇବାସୀ ଅଧିକୃତ ମଗଧର କେବଳ ବୃଜି ନୁହେଁ; ସୀମାନ୍ତବର୍ତ୍ତୀ ଇତର ରାଜ୍ୟଗୁଡ଼ିକ ସହିତ ମଧ୍ୟ ସୁସମ୍ପର୍କ ନଥିଲା । ଏହାର ଶକ୍ତି ଓ ପ୍ରତିପତ୍ତି କ୍ଷୁଣ୍ଣ କରିବାକୁ ସମସ୍ତେ ସୁଯୋଗ ଅପେକ୍ଷାରେ ରହିଥାନ୍ତି । ଏ ଅବସରରେ ଚତୁର ସେନାପତି 'ଭଟ୍ଟୀୟ' ବିଶ୍ୱାସଘାତକତା କରି ମଗଧରାଜାଙ୍କୁ ଗାଦିଚ୍ୟୁତ କଲେ ଏବଂ ନିଜକୁ ରାଜା ରୂପେ ଘୋଷଣା କଲେ । ଶତ୍ରୁକୁ ଉଚିତ ଶିକ୍ଷା ଦେବା ସକାଶେ ରାଜ୍ୟର ସମସ୍ତ ସେନାବାହିନୀକୁ 'ବୃଜି' ଗୋଷ୍ଠୀନକୁ ପ୍ରେରଣ କରିଦିଅନ୍ତି । ପ୍ରତିବେଶୀ ଅଙ୍ଗରାଜ ତାହା ଜାଣି ଆକ୍ରମଣ ଚଳାଇ ମଗଧର ଏକ ବିଶାଳ-ଭୂଖଣ୍ଡ ନିଜ ଶାସନାଧୀନ କରିନିଅନ୍ତି । ବୃଜି ରାଜ୍ୟ ଜୟକରି ମଗଧରାଜା ସ୍ୱଦେଶ ପ୍ରତ୍ୟା-ବର୍ତ୍ତନ କରି ଦେଖନ୍ତି ଯେ ମଗଧର ବହୁଅଂଶ ଅଙ୍ଗରାଜ୍ୟର କବଳରେ । ପ୍ରଜାବର୍ଗ ନୈରାଶ୍ୟ ଜର୍ଜରିତ ଓ ସ୍ୱୟଂ ରାଜା ଯୁଦ୍ଧକ୍ଲାନ୍ତ , ସେନାବାହିନୀ କ୍ଷତବିକ୍ଷତ । ତେଣୁ ବୃଦ୍ଧ ରାଜା 'ଭଟ୍ଟୀୟ' ମଗଧର ପୂର୍ବଗୌରବକୁ ପୁନଃ ପ୍ରତିଷ୍ଠିତ କରିବା ଲକ୍ଷ୍ୟରେ ପଞ୍ଚଦଶବର୍ଷୀୟ ପୁତ୍ର 'ବିମ୍ବିସାର'ଙ୍କୁ ରାଜପଦ ପ୍ରଦାନକରି ସ୍ୱଇଚ୍ଛାରେ ଅବସର ଗ୍ରହଣ କରନ୍ତି । ଅଭିଷିକ୍ତ ହେବା ମାତ୍ରେ ବିମ୍ବିସାର ପରାଜିତ ବୃଜି ସୈନ୍ୟଙ୍କୁ ମଗଧବାହିନୀରେ ଅନ୍ତର୍ଭୁକ୍ତ କରାଇ ଏକ ବିଶାଳ ସୈନ୍ୟବାହିନୀ ଗଢ଼ିବାରେ ଅଗ୍ରାଧିକାର ଦିଅନ୍ତି ଏବଂ ତାରି ବଳରେ

ପିତୃପରାଜୟର ପ୍ରତିଶୋଧ ସ୍ୱରୂପ ଅଙ୍ଗରାଜ୍ୟ ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇ ଅପହୃତ ଅଂଶ ସମେତ ସମଗ୍ର ଅଙ୍ଗରାଜ୍ୟକୁ ସ୍ୱାଧିକାରଭୁକ୍ତ କରନ୍ତି । ବୌଦ୍ଧ ଗ୍ରନ୍ଥମାନଙ୍କରେ ଏହାଙ୍କ ବୀରତ୍ୱଗାଥା ବହୁଭାବେ ବର୍ଣ୍ଣିତଥିବା ଦେଖାଯାଏ । ସେଥିରେ କିନ୍ତୁ ତାହାଙ୍କୁ ହର୍ଯ୍ୟଙ୍କ 'କୁଳୋଦ୍‌ଭବ' ବୋଲି କୁହାଯାଇଛି । ଐତିହାସିକମାନେ ତାଙ୍କୁ 'ନାଗବଂଶୀ' ବୋଲି କହନ୍ତି । ସେ ଯାହାହେଉ ତାଙ୍କ ରାଜତ୍ୱକାଳରେ ମଗଧର ଅଧିକାଂଶ ପ୍ରଜା 'ଶୂଦ୍ର' ଶ୍ରେଣୀର ଥିଲେ ବୋଲି ଇତିହାସ କହେ । ବୋଧହୁଏ ମଗଧର ଶାସନଭାର ସେତେବେଳକୁ ଆଦିବାସୀଙ୍କ ହାତରୁ ଯାଇ ଶୂଦ୍ରାଧୀନ ହୋଇପଡ଼ିଥିଲା । ଶୂଦ୍ର ବୋଇଲେ ଜନ୍ମଶୂଦ୍ର କି ବର୍ଣ୍ଣଶୂଦ୍ର କହିହୁଏନାହିଁ ।

ଜାତିଭେଦ ବିଷ କିନ୍ତୁ ସେତେବେଳେ କଳିଙ୍ଗ ଭୂମିକୁ ସ୍ପର୍ଶ କରିନଥିଲା । କାରଣ ସେଠାର ଲୋକସମାଜ ଥିଲା ଖାଣ୍ଟି ଆଦିବାସୀ ବା ବନବାସୀ । ସେମାନଙ୍କ ସାମାଜିକ ଚଳଣି ଅନ୍ୟଠାରୁ ସ୍ୱତନ୍ତ୍ର ଥିଲା । ସେମାନେ ପ୍ରକୃତିର ସନ୍ତାନ, ପ୍ରକୃତିରୁ ଉତ୍ପନ୍ନ ଏବଂ ସେଥିରେ ହିଁ ବିଲୀନ ହୁଏ ତାଙ୍କ ଜୀବନ । ପ୍ରକୃତି କୋଳରେ ରହି ଋତୁଚକ୍ରର ପରିବର୍ତ୍ତନ ସହିତ ଆପଣାକୁ ସୁନ୍ଦର ରୂପେ ସଜାଡ଼ିଦେଇପାରୁଥିଲେ । କ୍ଷୁଧା, ତୃଷା ମେଣ୍ଟାଇବା ପାଇଁ ପ୍ରକୃତି କୋଳରୁ ଜଳ ଫଳ ସଂଗ୍ରହକରି ତାହା ଏକ ଅଦୃଶ୍ୟ ଶକ୍ତିବୋଲି ମାନିନେଇଥିଲେ । ତେଣୁ ବୃକ୍ଷ, ପର୍ବତ, ଝରଣାଦିକୁ ଦେବତା ଜ୍ଞାନରେ ପୂଜାକରିଆସିଥିଲେ ଓ ତାଙ୍କର ଆଦର୍ଶରେ ବଞ୍ଚି ରହିଥିଲେ । ବୃକ୍ଷ ସମାନ ପୃଥିବୀ ଦିହରୁ ଉପାଦାନ ସଂଗ୍ରହ କରି ବଞ୍ଚି ରହିବା ଥିଲା ତାର ଆଦର୍ଶ । ବୃକ୍ଷଧର୍ମୀ ସେ । ତେଣୁ ଧର୍ମରେ ଜାତିଭେଦ ବିଷ ଆସିବ କେଉଁଠୁ ? ସମସ୍ତେ ମଣିଷ । ସମସ୍ତେ ଦୀକ୍ଷିତ ସେହି ଧର୍ମରେ । ତେଣୁ ଦୃଶ୍ୟମାନ ବସ୍ତୁ ଛାଡ଼ି ଶବର ଅଦୃଷ୍ଟ କଳ୍ପନାରେ ବିଶ୍ୱାସ ରଖେନାହିଁ । ଅଦୃଶ୍ୟ ମଧ୍ୟରେ ମୃତ ପିତୃପୁରୁଷ ହିଁ ତାର ସହାୟକ ରୂପେ ବିବେଚିତ । ଏତାଦୃଶ ଧର୍ମଧାରଣା ବିଶିଷ୍ଟ ଆଦିବାସୀ ସମାଜରେ ସାର୍ବଜନୀନ ଜୈନଧର୍ମ ପ୍ରସାର ଲାଭ କରିବା ଅସ୍ୱାଭାବିକ ନଥିଲା । ବିଶେଷତଃ ବୃକ୍ଷ ପାଷାଣ ସମେତ ସମସ୍ତ ପ୍ରାକୃତିକ ବସ୍ତୁ ପ୍ରାଣବନ୍ତ ରୂପ ଜୈନବିଶ୍ୱାସ ବନବାସୀଙ୍କ ମନକୁ ଯଥେଷ୍ଟ ସ୍ପର୍ଶକରିଥିଲା । ଫଳରେ କରକଣ୍ଡୁଙ୍କ ଅମଳର ତୀର୍ଥଙ୍କର ପାର୍ଶ୍ୱନାଥଙ୍କ ଉପଦେଶ ବନବାସୀଙ୍କୁ ମୁଗ୍ଧ କରିଥିବ ଏବଂ ସ୍ମୃତିସୂଚକ 'ଜୀନପଦ ଭବନ' ନିର୍ମିତ ହୋଇଥିବ । ସେହି ଦିନୁ ଜୈନଧର୍ମ ଦୀର୍ଘ କାଳ ଧରି କଳିଙ୍ଗରେ ସଞ୍ଜୀବିତଥିଲା ।

ଏଣେ ବିମ୍ବିସାରଙ୍କ ମଗଧ ସେତେବେଳେ କି ପ୍ରକାର ପରିବର୍ତ୍ତନର ସମ୍ମୁଖୀନ ହୋଇଥିଲା ଦେଖିବାର କଥା । ଆଗରୁ କୁହାଯାଇଛି—ଆର୍ଯ୍ୟାବର୍ତ୍ତଆଡ଼ୁ ଅଣଆଦିବାସୀ ମଗଧ ଭିତରକୁ ପଶିଆସି ସ୍ଥାନୀୟ ଆଦିବାସୀଙ୍କ ମଧ୍ୟରେ ଭେଦଭାବ ସୃଷ୍ଟି କରିବା ଦ୍ୱାରା ସେମାନଙ୍କ ଭିତରେ ଚିରକାଳରୁ ରହିଆସିଥିବା ବନ୍ଧୁତା ଶିଥିଳ ହୋଇପଡ଼ିଥାଏ । ଚତୁରତାର ସହିତ ନବାଗତ ଗୋଷ୍ଠୀ ପରୋକ୍ଷଭାବେ ସେଥିରେ ଇନ୍ଧନ ପ୍ରୟୋଗ କରିଥିଲେ । ଫଳରେ ବିଶ୍ୱାସ ଅଭାବରୁ ପରସ୍ପରକୁ ସେମାନେ ସନ୍ଦେହ ଦୃଷ୍ଟିରେ ଦେଖିବାକୁ

ଲାଗନ୍ତି ଏବଂ ଆସ୍ତେ ଆସ୍ତେ ନବାଗତ ଗୋଷ୍ଠୀର କ୍ରୀଡ଼ନକ ହୋଇ ପଡ଼ନ୍ତି । ଅବଶ୍ୟ ତାଦୃଶ ଅବସ୍ଥା ସୃଷ୍ଟି ହେବାକୁ ଯେ ଶତାଧିକ ବର୍ଷ ଲାଗିଥିବ ସେଥିରେ ସନ୍ଦେହ ନାହିଁ, କାରଣ 'ବୃଜି' ରାଜ୍ୟଗୋଷ୍ଠୀ ସମେତ ବତ୍ସ, କାଶୀ, କୋଶଳ ପ୍ରଭୃତି ରାଜ୍ୟ ମଧ୍ୟରେ ଯେଉଁ ଯୁଦ୍ଧ ସଂଘଟିତ ହୋଇଆସୁଥିଲା ତାହା କୁଆଡ଼େ ଶତାବ୍ଦୀବ୍ୟାପୀ ଥିଲାବୋଲି ଇତିହାସ କହେ । ସେଗୁଡ଼ିକ କେବଳ ଆଦିବାସୀ ଅଧିକୃତ ଅଞ୍ଚଳ ନଥିଲା, କେତେକ ମଧ୍ୟ ଆର୍ଯ୍ୟଶାସନାଧୀନ ଥିଲା । ସୀମା ବିସ୍ତାର ଲକ୍ଷ୍ୟରେ ହେଉ, ପ୍ରତିପତ୍ତି ପ୍ରଦର୍ଶନ ପାଇଁ ହେଉ ବା ଧନସମ୍ପତ୍ତି ଲୁଣ୍ଠନ ଆଶାରେ ହେଉ, ଶ୍ରେଷ୍ଠ ବଡ଼ କଳହମାନ ସର୍ବଦା ଲାଗି ରହିଥିଲା । କିନ୍ତୁ ଶେଷରେ ଅର୍ଥାତ୍ ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀ ସରିକି ଅନ୍ୟ ରାଜାମାନଙ୍କୁ ପରାଜିତ କରି ମଗଧ ଏକ ଶକ୍ତିଶାଳୀ ଦେଶ ରୂପେ ମୁଣ୍ଡ ଟେକି ଉଠିଛି—ତାହାକୁ ହିଁ ମଗଧ ସମ୍ରାଜ୍ୟର ପ୍ରାରମ୍ଭିକ ଉତ୍ଥାନ କୁହାଯିବ ।

ବିମ୍ବିସାର ଥିଲେ ଚତୁର ଓ ସାହସୀବନ୍ତ ରାଜା । ତାଙ୍କ ଅମଳରେ ମଗଧର ସାମାଜିକ ଓ ରାଜନୈତିକ ଅବସ୍ଥା କ'ଣ ଥିଲା ନିଶ୍ଚିତ ଭାବେ ଜଣା ନପଡ଼ିଲେ ସୁଦ୍ଧା ତାହା ଯେ ଏକ ସମୃଦ୍ଧିଶାଳୀ ରାଜ୍ୟରୂପେ ପ୍ରସିଦ୍ଧି ଲାଭ କରିଥିଲା ଏଥିରେ ସନ୍ଦେହ ନାହିଁ । ବିଶେଷତଃ ଦୀର୍ଘକାଳର ଶତ୍ରୁମାନଙ୍କୁ ପରାଜିତ କରିପାରିଥିବା କାରଣରୁ ତାହାଙ୍କ ସମ୍ମାନ ବହୁ ଗୁଣ ବୃଦ୍ଧି ପାଇଥିଲା । କିନ୍ତୁ ଦୀର୍ଘକାଳ ଯୁଦ୍ଧର ଘନଘଟା ଯୋଗୁ ମଗଧ ଘୋର ଆର୍ଥିକ ସଙ୍କଟର ସମ୍ମୁଖୀନ ହୁଏ । ଆଭ୍ୟନ୍ତରୀଣ ଅବସ୍ଥା ଛିନ୍ନଭିନ୍ନ ହୋଇପଡ଼େ । ଅହରହ ଯୁଦ୍ଧର ଅଶାନ୍ତି ମଧ୍ୟରେ ଆତଙ୍କିତ ରହିବା ଅପେକ୍ଷା ଦେଶତ୍ୟାଗୀ ହୋଇ ନିରାପଦ ରହିବାକୁ ମଗଧବାସୀ ଇଚ୍ଛୁକ ହୋଇଉଠନ୍ତି । ବିଶେଷକରି ସୀମାନ୍ତବର୍ତ୍ତୀ କଳିଙ୍ଗ ରାଜ୍ୟର ଅଧିବାସୀ ଶାନ୍ତିରେ ଜୀବନ ଯାପନ କରୁଥିବା ହେତୁ ନିମ୍ନ ଓ ମଧ୍ୟବିତ୍ତ ଜନତା ସେ ଭିତରକୁ ଉଠି ଆସିବାକୁ ଉତ୍କଣ୍ଠିତ ହୁଅନ୍ତି । ବିସ୍ତାରିତ ଭୂଖଣ୍ଡ ଏବଂ ସ୍ଥାନୀୟ ବନବାସୀଙ୍କ ଉଦାରତା ସେମାନଙ୍କୁ ସ୍ଥାୟୀବାସ ନିମିତ୍ତ ଉତ୍ସାହିତ କରେ । ପୁନଶ୍ଚ ଉର୍ବର ସମତଳ ଓ ନଦୀମାତୃକ ସ୍ଥାନମାନଙ୍କରେ ଶସ୍ୟ ଉତ୍ପାଦନ କରିବା ସେମାନଙ୍କ ପକ୍ଷେ କଷ୍ଟକର ମନେହୋଇନଥିଲା । କହିବା ବାହୁଲ୍ୟ, ନବାଗତ ଶ୍ରେଣୀ ମଧ୍ୟରୁ ଅଧିକାଂଶ ଥିଲେ ଆର୍ଯ୍ୟାବର୍ତ୍ତର କୃଷିଜୀବୀ ବା ଶୂଦ୍ର, ଯେଉଁମାନେ ଚତୁର୍ବର୍ଣ୍ଣୀ ସମ୍ପ୍ରଦାୟର ପକ୍ଷପାତ ବିଚାରରୁ ମୁକ୍ତି ଲଭିବା ପାଇଁ ମଗଧ ଭିତରକୁ ପଳାଇ ଆସିଥିଲେ । ଆର୍ଯ୍ୟସମାଜରେ ରହି ସୁଦ୍ଧା ସେମାନେ ଥିଲେ ସେଠାରେ ଅନାର୍ଯ୍ୟଶ୍ରେଣୀଭୁକ୍ତ । ଗୁଣ-କର୍ମ-ଭିତ୍ତିକ ବର୍ଣ୍ଣବିଭାଗ କାଳକ୍ରମେ ଜାତିଭିତ୍ତିକ ହୋଇ କୃଷି ପ୍ରଭୃତି ଶ୍ରମସାଧ୍ୟକର୍ମ ଆର୍ଯ୍ୟାବର୍ତ୍ତରେ ନିମ୍ନଶ୍ରେଣୀର ବୋଲି ବିବେଚିତ ହୋଇଥାଏ । କିନ୍ତୁ ବନବାସୀ ଅଧ୍ୟୁଷିତ କଳିଙ୍ଗରେ ସେହି ଭେଦଭାବର ବୀଜ ଅଙ୍କୁରିତ ହୋଇନଥିଲା । ସବୁ କର୍ମ ଥିଲା ଏଠାରେ ସମାନ ଶ୍ରେଣୀର । ତେଣୁ ନିଷ୍କପଟ ସ୍ଥାନୀୟ ଜନତା ଆଗନ୍ତୁକଙ୍କ ସହିତ କାନ୍ଧକୁ କାନ୍ଧ ମିଳାଇ ସମାନଭାବେ ଦେଶର ଉନ୍ନତି ସାଧନରେ ଅଗ୍ରସର ହେବାରେ

ପ୍ରତିବନ୍ଧକ ନଥିଲା । ଫଳରେ କଳିଙ୍ଗରେ ଏକ ନୂତନଶକ୍ତି ସଂଗ୍ରୁହିତ ହେବାକୁ ଲାଗେ । ଅପରପକ୍ଷେ ରାଜାରୂପେ ଅଧିଷ୍ଠିତ ହେଲାପରେ ବିମ୍ବିସାର ମଗଧକୁ ଅଧିକ ବଳଶାଳୀ କରି ଗଢ଼ିବା ଉଦ୍ଦେଶ୍ୟରେ ସାଧାରଣ ପ୍ରଜାଙ୍କଠାରୁ ପ୍ରଚୁର ଧନ ଓ ପଦାର୍ଥ ସଂଗ୍ରହ କରିବାରେ ମନ ବଳାନ୍ତି । ଦୀର୍ଘକାଳ ଯୁଦ୍ଧବ୍ୟାପୃତ ମଗଧର ଆର୍ଥିକ ଅଭିବୃଦ୍ଧି ଘଟାଇବା, ସମ୍ଭାବ୍ୟ ଶତ୍ରୁ ବିରୁଦ୍ଧରେ ସର୍ବଦା ଜାଗ୍ରତ ରହିବା ଓ ଚତୁରଙ୍ଗ ବଳ ବଢ଼ାଇବା ଲକ୍ଷ୍ୟରେ ରାଜଭାଗ ମାତ୍ରାତୀତ ବୃଦ୍ଧି କରନ୍ତି । ଫଳରେ ନିମ୍ନବିତ୍ତ ଓ ମଧ୍ୟବିତ୍ତ ସମ୍ପ୍ରଦାୟ ଶ୍ୱାସରୁଦ୍ଧ ହୋଇ ଦେଶତ୍ୟାଗୀ ହୋଇପଡ଼ନ୍ତି । ପଶ୍ଚାତ୍ତରେ କଳିଙ୍ଗକୁ ପଳାଇଆସିବା ପାଇଁ କପିଶାନଦୀ ପାର ହେବା ତାଙ୍କ ପକ୍ଷେ କଷ୍ଟକର ନଥିଲା । କୃଷିବଳ ମାଗଧୀ ଜନତା ସେଠାକୁ ଯାଇ ନଦୀକୂଳ ସ୍ଥାନମାନଙ୍କରେ ଦଳଦଳ ବାସକରିବାକୁ ଲାଗନ୍ତି ଏବଂ ଧୀରେ ଧୀରେ ପକ୍ଷ ବିସ୍ତାର କରି କ୍ରମେ ବୈତରଣୀ ଏପରିକି ମହାନଦୀ ପର୍ଯ୍ୟନ୍ତ ବିଛେଇ ହୋଇ ପଡ଼ନ୍ତି । ସ୍ଥାନୀୟ ଅଧିବାସୀଙ୍କ ସହିଷ୍ଣୁତା, ସ୍ୱାଧୀନଚିନ୍ତା, ସରଳ ଜୀବନ, ଜାତିଭେଦଶୂନ୍ୟତାଦି ଉଦାରମାନବିକ ଗୁଣ ଉଭୟ ଗୋଷ୍ଠୀକୁ ନିକଟତର କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରେ । କିନ୍ତୁ ଆର୍ଯ୍ୟାବର୍ତ୍ତର ବର୍ଣ୍ଣବିଭାଗ ମଧ୍ୟରେ ସେମାନେ ଥିଲେ ନିମ୍ନଶ୍ରେଣୀର ପ୍ରଜା । ଅନ୍ୟ ଦୁଇଟି 'ବର୍ଣ୍ଣପତି' ଓ 'କ୍ଷେତ୍ରପତି' ସେମାନେ ଥିଲେ ଉଚ୍ଚତର ବର୍ଣ୍ଣର । ଏତଦ୍‌ବ୍ୟତୀତ ଆଉ ଏକ ମଣିଷ ଗୋଷ୍ଠୀ ଥିଲେ ଯାହାଙ୍କୁ ନିଷାଦ କୁହାଯାଉଥିଲା । ସମୁଦାୟ ପ୍ରଜା 'ପଞ୍ଚମାନବୀ' ନାମରେ ଅଭିହିତ ହେଉଥିଲେ । 'ନିଷାଦ' କହିଲେ ବନବାସୀ ଶ୍ରେଣୀକୁ ବୁଝାଉଥିଲା । ବର୍ଣ୍ଣଧର୍ମୀ 'ଶୂଦ୍ର' ଥିଲା ପ୍ରକାରାନ୍ତରେ ସେହି ଶ୍ରେଣୀର । ଶବର, ଲୁବ୍‌ଧକ, ବନ୍ଧୁ, ବନଗୁ, ଅନ୍ଧ୍ର, କଳିଙ୍ଗ୍, ବ୍ୟାଧ ପ୍ରଭୃତିକୁ ନିଷାଦ କୁହାଯାଉଥିଲା । ଉକ୍ତ 'ନିଷାଦ' ବା 'ଶବର' ଶ୍ରେଣୀର ଏକତମ ଶାଖା ଥିଲା 'କଳି' । ସେମାନେ ହିଁ ପଶ୍ଚିମଭାରତରେ 'କଳି' (ମହାଦେବକଳି) ଏବଂ ପୂର୍ବ ଭାରତରେ 'କଳିଙ୍ଗ୍' ନାମରେ ପ୍ରସିଦ୍ଧ ଥିଲେ । ତାଙ୍କର ସହିତ ଆଗନ୍ତୁକ ଶୂଦ୍ରଙ୍କ ସାଯୁଜ୍ୟ ମିଶ୍ରଣ ଘଟି ଦକ୍ଷିଣ ପୂର୍ବ ଭୂଖଣ୍ଡରେ 'କଳିଙ୍ଗ ସଭ୍ୟତା' ଉତ୍ପତ୍ତି ଲାଭ କରିଥିଲା ।

କପିଶା ତୀରରୁ ମହାନଦୀ କୂଳ ପର୍ଯ୍ୟନ୍ତ ବିସ୍ତୃତ ନଦୀମାତୃକା ଭୂମି ସେତେବେଳେ ନିବିଡ଼ ବୃକ୍ଷଲତାଦିରେ ପରିପୂର୍ଣ୍ଣ ଥିଲେ ସୁଦ୍ଧା ଉର୍ବର କୃଷି କ୍ଷେତ୍ର ଗଠନ ପାଇଁ ଅନୁପଯୁକ୍ତ ନଥିଲା । ସମସ୍ତେ ଥିଲେ କୃଷିଜୀବୀ । ତା ବୋଲି ମାନସିକ ଓ ଶାରୀରିକ ଶକ୍ତି ଅନୁରୂପ ଅନ୍ୟାନ୍ୟ ବୃତ୍ତିମାନ ଯେ ଗ୍ରହଣ କରାଯାଉନଥିଲା ତା ନୁହେଁ; କିନ୍ତୁ କୃଷି ଥିଲା ମୁଖ୍ୟ ବୃତ୍ତି । ସେଥିଯୋଗୁ ପାର୍ବତ୍ୟ ଭାଷାରେ ସେମାନଙ୍କୁ 'ଓଡ଼୍‌ମାରଙ୍ଗ୍' କୁହାଯାଉଥିଲା । ଏହା ଏକ ସୌରି ଭାଷାର ଶବ୍ଦ । 'ଓଡ଼୍'—କୃଷି, ମାରଙ୍ଗ୍—ମଣିଷ । ଓଡ଼-ମାରଙ୍ଗ୍ ଅର୍ଥ 'ଚଷା ଲୋକ' । କୃଷିଜୀବୀ ସ୍ଥାନୀୟ ଆଦିବାସୀ ଓ ନବାଗତ ଗୋଷ୍ଠୀ ଉଭୟେ 'ଓଡ଼୍' ନାମରେ ନାମିତ ଥିଲେ । 'ଓଡ଼ିଶା' ଏହାର ହିଁ ରୂପାନ୍ତର । 'ଉଡ୍ର' ଓଡ଼ିଶାର ସଂସ୍କୃତାୟିତ ଉଚ୍ଚାରଣ । 'ଉଡ୍ର' ଶବ୍ଦ କଳିଙ୍ଗ ଦେଶ ଅର୍ଥରେ ଆର୍ଯ୍ୟ ଗ୍ରନ୍ଥମାନଙ୍କରେ ବହୁଳ ପ୍ରଯୁକ୍ତ ।

କିନ୍ତୁ ସମଗ୍ର କଳିଙ୍ଗକୁ ତାହା ବୁଝାଉନଥିଲା । 'କଳିଙ୍ଗ'ରେ 'ଉଡ୍ର' ଥିଲା ଏକ 'ବିଷୟ' ବା ଅଂଶବିଶେଷ । ତାମ୍ରଶାସନ ଓ ଶିଳାଲେଖମାନଙ୍କରୁ ଏହାର ପ୍ରମାଣ ମିଳେ । ପାଲିଗ୍ରନ୍ଥ ବର୍ଣ୍ଣିତ 'ଓଡ଼କ୍' ପ୍ଲିନିଙ୍କ ନିର୍ଦ୍ଦିଷ୍ଟ 'ଓରଟ୍ସ୍' (Orctes) ଓ ହୁଏନ୍‌ସାଂଙ୍କ ଲିଖିତ ଉଚା (U-cha) 'ଓଡ୍' ଶବ୍ଦର ବିକୃତ ଉଚ୍ଚାରଣ ମାତ୍ର । 'କଳି' ନାମାନୁଯାୟୀ 'କଳିଙ୍ଗ' ହେଲାପରି 'ଓଡ୍' ଅଞ୍ଚଳ 'ଉଡ୍ର' ରୂପେ ଅଭିହିତ ହୋଇଥିବା ସମ୍ଭାବନା । ଏଣୁ 'କଳିଙ୍ଗ' ଗଙ୍ଗାଠାରୁ ଗୋଦାବରୀ ନଦୀ ମଧ୍ୟସ୍ଥ ପାହାଡ଼ ପର୍ବତ ସମେତ ସମଗ୍ର ଭୂଖଣ୍ଡକୁ ବୁଝାଉଥିଲା ବେଳେ ସୀମିତ ଭୂଭାଗ 'ଉଡ୍ର' ନାମରେ ପରିଚିତ ଥିଲା । ଏହା ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀ ଅର୍ଥାତ୍ ସୂତ୍ରଯୁଗ ଶେଷପାଦ ବେଳକୁ ସଂଘଟିତ ହୋଇଥିଲା ବୋଲି କହିଲେ ଅଯୌକ୍ତିକ ହେବନାହିଁ ।

ଭୂମି ସୁଜଳା ସୁଫଳା, ଦେଶ ଶତ୍ରୁଭୟଶୂନ୍ୟ, କୃଷି ବାଣିଜ୍ୟ ନିର୍ବିଘ୍ନ, ପ୍ରଜାସମାଜ କର୍ତ୍ତବ୍ୟନିଷ୍ଠ ରହିଲେ ରାଜ୍ୟର ଉନ୍ନତି ଅବଶ୍ୟମ୍ଭାବୀ । ଏ ପରିପ୍ରେକ୍ଷୀରେ ଦେଖିଲେ 'କଳିଙ୍ଗ' ବିକାଶଶୀଳ ରାଜ୍ୟରୂପେ ଗଢ଼ିଉଠିବାରେ କୌଣସି ଅନ୍ତରାୟ ନଥିଲା । କିନ୍ତୁ ପଡ଼ୋଶୀ ରାଜ୍ୟ ବିଶେଷକରି ମଗଧ ରାଜାଙ୍କ ମନରେ ତାହା ଅସୂୟା ଓ ଅନ୍ତର୍ଦାହର କାରଣ ହୋଇପଡ଼ିଥିଲା । ତତ୍କାଳ ମଗଧର ରାଜନୈତିକ ଓ ସାମାଜିକ ଅବସ୍ଥାର ସ୍ପଷ୍ଟ ଚିତ୍ର ନମିଳିଲେ ସୁଦ୍ଧା ସେଠାରେ ନିମ୍ନବର୍ଣ୍ଣୀ ଓ ଆଦିବାସୀ ଅକଥନୀୟ ଅତ୍ୟାଚାରର ଶିକାର ହୋଇଥିଲେ, ଏକଥା ମିଥ୍ୟା ନୁହେଁ । ଏତେବେଳକୁ କଳିଙ୍ଗର ଅବସ୍ଥା ଭିନ୍ନ ଥିଲା । ଏହାର ପ୍ରତ୍ୟେକ ଗ୍ରାମ ଥିଲା ସ୍ୱାଧୀନ । ପ୍ରଜାବର୍ଗ ସ୍ୱ ସ୍ୱ କର୍ମରେ ବ୍ୟାପୃତ ଥିଲେ । ଆର୍ଥିକ ସ୍ୱଚ୍ଛଳତାର ଅଭାବ ନଥିଲା । କାହା ପ୍ରତି କାହାର ବିଦ୍ୱେଷ ନଥିଲା । ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ଓ ସଂହତି ଦୃଢ଼ମୂଳ ରହିଥିଲା । ଜନସମାଜ ନିର୍ବାଚିତ ବ୍ୟକ୍ତି ଉପରେ ସମସ୍ୟା ସମାଧାନର ଦାୟିତ୍ୱ ଅର୍ପଣ କରି ନିଶ୍ଚିନ୍ତ ରହୁଥିଲେ । ଏଣୁ ଗ୍ରାମ ଗୋଷ୍ଠୀ ମଧ୍ୟରେ ଅନାବିଳ ଭ୍ରାତୃଭାବ ରହିଆସିଥିଲା । ଜନ୍ମଭୂମିର ମାନ ରକ୍ଷା ପାଇଁ ସମସ୍ତେ ପ୍ରତିଜ୍ଞାବଦ୍ଧ ଥିଲେ । ବାହ୍ୟଶତ୍ରୁର ଆକ୍ରମଣ ଆଶଙ୍କା ତାଙ୍କ ମନକୁ ସ୍ପର୍ଶ କରିନଥିଲା । 'ମୁଖିଆ'ଙ୍କ ନିର୍ଦ୍ଦେଶରେ ସମସ୍ତ ଜନପଦ ଯଥାରୀତି ପରିଚାଳିତ ହୋଇଆସୁଥିଲା । ଗ୍ରାମବାସୀ ଥିଲେ ଗ୍ରାମମୁଖ୍ୟଙ୍କ ଅନୁଗତ ଓ ଗ୍ରାମନାୟକ ଥିଲେ ପ୍ରଜାନୁରକ୍ତ । ଉତ୍ତରପୂର୍ବ ଭାରତର ଖାସି ପର୍ବତମାଳା ଓ କଳିଙ୍ଗର ଅଗମ୍ୟ ପାହାଡ଼ିଆ ଆଦିବାସୀ ସମାଜରେ ସେହି ପ୍ରଥା ଅଦ୍ୟାପି ପ୍ରଚଳିତ । ସେହି କାରଣରୁ ବିଭିନ୍ନ ସମୟରେ କଳିଙ୍ଗରେ କୈବର୍ତ୍ତ, ଅହିର (ଐର), ନାଗ, ଚେଦି ପ୍ରଭୃତି ଏକାଧିକ ଶବରରାଜା ଶାସନ କରୁଥିବା ଜଣାପଡ଼େ । ସ୍ଥୂଳତଃ ସେତେବେଳେ କଳିଙ୍ଗରେ ପ୍ରଜାତାନ୍ତ୍ରିକ ଶାସନ ଥିଲା ବୋଲି କହିପାରୁ ।

ସେହି ଦୃଷ୍ଟିରେ କଳିଙ୍ଗର 'ରାଜା'ଥିଲେ 'କରକଣ୍ଡୁ' । 'ରାଜା' ଶବ୍ଦରୁ ଅନୁମିତ ହୁଏ, ସେତେବେଳକୁ ହୁଏତ ସେ ମଗଧର ଆଦର୍ଶରେ ନିଜକୁ ରାଜାରୂପେ ଅଭିହିତ କରିଥିବେ, ନୁହେଁ ତ ଗ୍ରାମ ମୁଖ୍ୟଙ୍କଦ୍ୱାରା ନିର୍ବାଚିତ ହୋଇ ସେହି ପଦବୀରେ ଅଧିଷ୍ଠିତ ହୋଇଥିବେ ।

କିନ୍ତୁ ପରଂପରା ଦେଖିଲେ ପ୍ରଥମ ଅପେକ୍ଷା ଦ୍ୱିତୀୟ ଅନୁମାନ ଅଧିକ ଯୁକ୍ତିସଂଗତ ମନେହୁଏ । କାରଣ ଶତ୍ରୁ ଆକ୍ରମଣ ବା ଆକସ୍ମିକ ବିପଦବେଳେ ଦୂରଦୂରାନ୍ତର ଗ୍ରାମ୍ୟ ମୁଖ୍ୟଙ୍କ ସମ୍ମିଳିତ ସହଯୋଗ ସହଜସାଧ୍ୟ ନଥିବା ହେତୁ ଯୋଗସୂତ୍ର ରକ୍ଷାକାରୀ ଭାବେ ଜଣେ ସାର୍ବଭୌମ କ୍ଷମତାସମ୍ପନ୍ନ ବ୍ୟକ୍ତି 'ରାଜା' ନାମରେ ନିର୍ବାଚିତ ହୋଇଥିବା ଅସ୍ୱାଭାବିକ ନୁହେଁ । ଗ୍ରାମମୁଖ୍ୟଙ୍କ ଉପରେ ନିର୍ଦ୍ଦିଷ୍ଟ ଜନପଦର ଦାୟିତ୍ୱ, ରାଜ୍ୟର ସାମୂହିକ ରକ୍ଷଣାବେକ୍ଷଣ ଭାର ନ୍ୟସ୍ତ ଥିଲାପରି ରାଜାଙ୍କ ଇଙ୍ଗିତରେ ରାଜ୍ୟ ପରିଚାଳିତ ହେଉଥିଲା । ତଥାପି ସଂକଟ କାଳରେ 'ଗ୍ରାମୀଣ'ଙ୍କ ଭୂମିକା ନଗଣ୍ୟ ନଥିଲା । ସେମାନଙ୍କ ପରାମର୍ଶ ବିନା ରାଜା କର୍ତ୍ତବ୍ୟ ନିର୍ଦ୍ଧାରଣ କରୁନଥିଲେ । ପାହାଡ଼ ଶିଖରରୁ ଆରମ୍ଭ କରି ସମତଳ-ବାସୀ ପର୍ଯ୍ୟନ୍ତ କେହି ରାଜାଙ୍କୁ ଅବମାନନା କରୁନଥିଲେ । ସେହିପରି ଜଣେ ନିର୍ବାଚିତ ରାଜା ଥିଲେ 'କରକଣ୍ଡୁ' । ନିଶ୍ଚିତ ଭାବେ ସେ ଜଣେ ଆଦିବାସୀ ଶ୍ରେଣୀର ଥିବେ ବୋଲି ଅନୁମାନ । ତା' ନହୋଇଥିଲେ ସେ ଶବର ପ୍ରଜାଙ୍କର କଦାପି ଆସ୍ଥାଭାଜନ ହୋଇ ନଥାନ୍ତେ କିମ୍ବା ତାହାଙ୍କ ନିର୍ଦ୍ଦେଶକୁ ବିନା ଦ୍ୱିଧାରେ ପାଳନ କରାଯାଇନଥାନ୍ତା । ସେତେ-ବେଳକୁ 'ଅର୍ଦ୍ଧମାଗଧୀ' ସଭ୍ୟତା ପ୍ରଭାବିତ ଉତ୍ତର କଳିଙ୍ଗରେ ବୃତ୍ତିଭିତ୍ତିକ ଜାତିଭେଦ ପ୍ରଥା ଧୀରେ ଧୀରେ ମୁଣ୍ଡ ଟେକି ଉଠୁଥିଲା । 'ଅର୍ଦ୍ଧମାଗଧୀ' କହିବାର ଅଭିପ୍ରାୟ ଏହି କି, ଉତ୍ତରଭାରତୀୟ ବର୍ଣ୍ଣଭେଦ ନୀତିଦ୍ୱାରା ସ୍ଥାନୀୟ ଆଚାର ବିଚାର, ଭାଷା ଭୂଷା ପ୍ରଭୃତିରେ ଆଖିଦୃଶିଆ ପରିବର୍ତ୍ତନ ସଂଘଟିତ ହୋଇପଡ଼ୁଥିଲା । ନବାଗତ ସଭ୍ୟତାର ମାନବୀୟ ଗୁଣାବଳୀ ଆଦାନ ପ୍ରଦାନ ଯୋଗୁ 'ଓଡ଼' ଶବର ସଭ୍ୟତା ଯେପରି ଏକ ନବୀନ ରୂପ ଧାରଣ କରୁଥିଲା ଅନ୍ୟ ଦିଗରେ ସେହିପରି 'ଶାବରୀ' ସମ୍ମିଶ୍ରଣରେ ମାଗଧୀର 'ଅର୍ଦ୍ଧମାଗଧୀ' ରୂପେ ଘଟାନ୍ତର ଘଟିଥିଲା । ଉତ୍ତରକାଳରେ ଉଭୟେ 'ଓଡ୍ରୀ' ନାମରେ ଆତ୍ମପ୍ରକାଶ କରିଥିଲେ । ପ୍ରସଙ୍ଗକ୍ରମେ ଏହା ସ୍ପଷ୍ଟ କରାଯିବ । ଆଗରୁ କୁହାଯାଇଛି, କପିଶାରୁ ମହାନଦୀ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ 'ଉଡ୍ର ବିଷୟ' ରୂପେ ପରିଚିତ ଥିଲା ଏବଂ ତାହା ଥିଲା ଉପରୋକ୍ତ 'ଓଡ୍ରୀ' ସଭ୍ୟତାର କେନ୍ଦ୍ରସ୍ଥଳୀ । କିନ୍ତୁ ମହାନଦୀର ଦକ୍ଷିଣ ପଟକୁ ଅର୍ଥାତ୍ ଗୋଦାବରୀ ନଦୀ ପର୍ଯ୍ୟନ୍ତ କଳିଙ୍ଗର ସଭ୍ୟତା ଉପରେ 'ଅର୍ଦ୍ଧମାଗଧୀ' ପ୍ରଭାବ ପଡ଼ି ନଥିଲା । ପାରମ୍ପରିକ ସଭ୍ୟତା, ସଂସ୍କୃତି, ବେଶଭୂଷା, ଭାଷା ସବୁ ସେଠାରେ ଥିଲା ଅକ୍ଷୁଣ୍ଣ—ଅପରିବର୍ତ୍ତିତ । କୌଳିକ ବିଧି, ଦେବତା ବିଶ୍ୱାସ, ବାଣିଜ୍ୟ ବ୍ୟବସାୟ, ଖାଦ୍ୟପେୟ, ପରିଧେୟ କୌଣସିଟିରେ ପରିବର୍ତ୍ତନ ଘଟି ନଥିଲା । ପୁରୁଷାନୁକ୍ରମିକ ପଶୁପକ୍ଷୀ ଶିକାର, ଫଳମୂଳାଦି ଆହାର, ବଲ୍‌କଲ ପରିଧାନ, ଏପରିକି ନିର୍ବସ୍ତ୍ର ରହିବା ବିଧି ମଧ୍ୟ ନିଃସଙ୍କୋଚରେ ପାଳିତ ହୋଇଆସୁଥିଲା । ପର୍ବତବାସୀଙ୍କ ତୁଳନା ସମତଳବାସୀ ମଧ୍ୟ ଇତର ସଭ୍ୟତାର କାଉଁରି ସ୍ପର୍ଶରେ ଆସିନଥିଲେ । ମଗଧାଗତ ବର୍ଣ୍ଣଶ୍ରେଣୀ ସାହାଯ୍ୟରେ ଉତ୍ତର କଳିଙ୍ଗ ନବଦିଗନ୍ତର ସନ୍ଧାନରେ ଲାଗିଥିଲାବେଳେ ଦକ୍ଷିଣ ଭୂଭାଗ ସୀମିତ ପରିସର ମଧ୍ୟରେ ଅନାବିଲ ଆଦିବାସୀ ସଭ୍ୟତାକୁ ପୂର୍ବବତ୍ ଜୀବନ୍ତ କରି ରଖିଥିଲା । ସେହି କାରଣରୁ

ସମଗ୍ର କଳିଙ୍ଗ ପରିବର୍ତ୍ତେ ଏହି ଅଞ୍ଚଳକୁ ଅଧିକ ଗର୍ହିତ ଦେଶ ବୋଲି କୁହାଯାଉଥିଲା । ବ୍ରହ୍ମାଣ୍ଡ ପୁରାଣରେ ଉକ୍ତ ଅଛି "ଋଷିକୁଲ୍ୟାଂ ସମାସାଦ୍ୟ ଯାବତ୍ ବୈତରଣୀ ନଦୀ, କଳିଙ୍ଗ ଦେଶଃ ପ୍ରଖ୍ୟାତୋ ଦେଶାନାଂ ଗର୍ହିତସ୍ତଦା ।" ବୈତରଣୀ ବୋଧହୁଏ ବଂଶଧାରାର ନାମାନ୍ତର । ପାର୍ଶ୍ୱନାଥଙ୍କ ଆଗମନ ଯୋଗୁ କଳିଙ୍ଗର 'ଉଡ୍ର' ଖଣ୍ଡରେ ଜୈନ ଧର୍ମ ଯେପରି ପ୍ରାଧାନ୍ୟ ବିସ୍ତାର କରିଥିଲା ଅବଶିଷ୍ଟ ଭାଗ ଉପରେ ସେପରି କରିପାରିନଥିଲା । ତେଣୁ କଳିଙ୍ଗର ଦକ୍ଷିଣ ଭାଗ 'କାଳିଙ୍ଗୀ' ଏବଂ ଉତ୍ତର ଭାଗ 'ଔଡ୍ରୀ' ସଭ୍ୟତାର ପୀଠସ୍ଥଳୀ ରୂପେ ରହିଥିଲା । ମଗଧ ଆଡ଼ୁ ପ୍ରବାହିତ ନିରବଚ୍ଛିନ୍ନ ଜନସ୍ରୋତ ଦକ୍ଷିଣ ଭାଗରେ ପ୍ରବେଶ କରିନଥିବା ଯୋଗୁ ସ୍ଥାନୀୟ ଶବର ସମାଜ ସେଠାରେ ଆଧିପତ୍ୟ ବିସ୍ତାର କରି ରହି-ଥିଲେ ଏବଂ ଦେଶୀୟ ସଭ୍ୟତା ଅନାବିଳ ଥିଲା । ଫଳରେ ସୁବିଶାଳ କଳିଙ୍ଗ ରାଜ୍ୟ ଉତ୍ତର ଓ ଦକ୍ଷିଣ ଭାବେ ସାଂସ୍କୃତିକ କ୍ଷେତ୍ରରେ ଦ୍ୱିଧା ବିଭକ୍ତ ହେଲେ ସୁଦ୍ଧା ଗୋଟିଏ ଅଂଶ 'ଉଡ୍ର' ବା ଉତ୍କଳ ନାମରେ ଅଭିହିତ ହେଉଥିବେଳେ 'କଳିଙ୍ଗ' ଶବ୍ଦ ଦ୍ୱାରା ସମଗ୍ର ରାଜ୍ୟ ଚିହ୍ନିତ ହୋଇଆସୁଥିଲା । ପାର୍ଶ୍ୱନାଥଙ୍କ ବୃତ୍ତାନ୍ତରୁ ସେଇ ସୂଚନା ହିଁ ମିଳେ ।

ବିଶେଷ ପ୍ରାସଙ୍ଗିକ ନ ହେଲେ ସୁଦ୍ଧା ଏ କଥା ସ୍ମରଣ ରଖିବା ଉଚିତ ଯେ ଖ୍ରୀ:ପୂ: ଅଷ୍ଟମ ଶତାବ୍ଦୀ ଅର୍ଥାତ୍ ପାର୍ଶ୍ୱନାଥଙ୍କ ଆଗମନଠାରୁ ଜୈନଧର୍ମର ଶେଷ ତୀର୍ଥଙ୍କର ମହାବୀର ପର୍ଯ୍ୟନ୍ତ, ଉତ୍ତର ପଟୁ ଧର୍ମ ପ୍ରଚାର କିମ୍ବା ଅନ୍ୟ କୌଣସି ଲକ୍ଷ୍ୟରେ କଳିଙ୍ଗକୁ କେହି ଆସିଥିବା ସୂଚନା ମିଳେ ନାହିଁ । ଦକ୍ଷିଣ ପଟୁ କିନ୍ତୁ ଖ୍ରୀ:ପୂ: ସପ୍ତମ ଶତାବ୍ଦୀରେ 'ଅଶ୍ମକ' ରାଜା କଳିଙ୍ଗ ଆକ୍ରମଣ କରିଥିଲେ ବୋଲି ଜୈନ ଧର୍ମଗ୍ରନ୍ଥରୁ ଜଣାପଡ଼େ । ଫଳାଫଳର ଯଦିଚ କୌଣସି ନିର୍ଦ୍ଦିଷ୍ଟ ସୂଚନା ମିଳେ ନାହିଁ ତଥାପି ତଦ୍ୱାରା ତତ୍ରସ୍ଥ କଳିଙ୍ଗ ବା ବଂଶଧାରା ନଦୀ ପର୍ଯ୍ୟନ୍ତ ଭୂଭାଗ 'ଅଶ୍ମକ' ରାଜ୍ୟ ଅନ୍ତର୍ଭୁକ୍ତ ହୋଇପଡ଼ିଥିବା ଅନୁମାନ ହୁଏ । 'ଅଶ୍ମକ' ଗୋଦାବରୀ ସେପଟେ ଏକ ଦାକ୍ଷିଣାତ୍ୟ ରାଜ୍ୟ । ତାହା ଗୋଦାବରୀ ନଦୀ ତୀରସ୍ଥ 'ପୈଧାନ' ବୋଲି ବର୍ତ୍ତମାନ ଚିହ୍ନିତ । ତେଣୁ ନଦୀ ପାର ହୋଇ ଅଶ୍ମକ ରାଜା ହଠାତ୍ ଆକ୍ରମଣ ଚଳାଇ କଳିଙ୍ଗରୁ ଖଣ୍ଡେ ଅଧିକାର କରିନେବା ଆଶ୍ଚର୍ଯ୍ୟ ନୁହେଁ ।

ସେ ଯାହାହେଉ, ଖ୍ରୀ:ପୂ: ଷଷ୍ଠ ଶତକଟି ଭାରତର ଧାର୍ମିକ ଇତିହାସର ଏକ ବୈପ୍ଳବିକ ଅଧ୍ୟାୟ ବୋଲି କୁହାଯାଏ । ଏଥିରେ ଜୈନଗୁରୁ ମହାବୀର ବର୍ଦ୍ଧମାନ ଓ ବୌଦ୍ଧ ଧର୍ମ ପ୍ରତିଷ୍ଠାତା ଗୌତମବୁଦ୍ଧ ଉଭୟେ ଜନ୍ମ ଗ୍ରହଣ କରି ସ୍ୱ ସ୍ୱ ଧର୍ମ ପ୍ରଚାର ଦ୍ୱାରା ଭାରତୀୟ ସମାଜରେ ବିପ୍ଳବର ବୀଜ ବପନ କରିଥିଲେ । ଉଭୟ ଧର୍ମ ବୈଦିକ ପୃଷ୍ଠଭୂମି ଉପରେ ଗଢ଼ି ଉଠିଥିଲେ ସୁଦ୍ଧା କେହି ହେଲେ ବେଦ ବିଶ୍ୱାସୀ ନଥିଲେ । ଉଭୟେ ନିରୀଶ୍ୱରବାଦୀ ଓ ଉଭୟଙ୍କର ଯାଗଯଜ୍ଞାଦି କ୍ରିୟା କାଣ୍ଡରେ ଆସ୍ଥା ନଥିଲା । ଉଭୟ ମତରେ ଜୀବନ ଦୁଃଖପୂର୍ଣ୍ଣ ଏବଂ ସତ୍‌କର୍ମ ଦ୍ୱାରା ସେଥିରୁ ମୁକ୍ତି ମିଳେ । ଉଭୟେ ଉଚ୍ଚ କ୍ଷତ୍ରିକୁଳସମ୍ଭୂତ ଏବଂ ବର୍ଣ୍ଣ ବିଦ୍ୱେଷୀ ଥିଲେ । ମୁଖ୍ୟତଃ ବଣିକମାନଙ୍କୁ ବୈଶ୍ୟ ଓ କୃଷିବଳ ଶୂଦ୍ରଙ୍କୁ ସ୍ୱଧର୍ମ ଦୀକ୍ଷିତ କରାଇବା ଲାଗି ଧର୍ମାନ୍ତର ଗ୍ରହଣ ପ୍ରତି ଜାତି ବର୍ଣ୍ଣ ନିର୍ବିଶେଷରେ ଉତ୍ସାହିତ କରାଯାଉଥିଲା ।

ଉଭୟ ମତରେ ଅହିଂସା ଓ ଚରିତ୍ର ଗଠନ ଉପରେ ସମାନ ପ୍ରାଧାନ୍ୟ ଅର୍ପିତ ଥିଲା । ଜୈନ ସମ୍ପ୍ରଦାୟର ଶ୍ରମଣ ଶ୍ରମଣୀ ପରି ବୌଦ୍ଧ ଧର୍ମରେ ଭିକ୍ଷୁ ଭିକ୍ଷୁଣୀ ମଧ୍ୟ ସମାନ ମର୍ଯ୍ୟାଦା ପାଇ ଆସୁଥିଲେ । ଏତେ ସାମଞ୍ଜସ୍ୟ ସତ୍ତ୍ୱେ ଉଭୟ ସମ୍ପ୍ରଦାୟ ମଧ୍ୟରେ ଯେଉଁ ଗୁରୁତର ପାର୍ଥକ୍ୟ ପରିଲକ୍ଷିତ ହୁଏ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଜୈନଧର୍ମ କହେ ଦାରୁ, ପାଷାଣ, ଜଳ, ଅଗ୍ନି ସମସ୍ତ ପ୍ରାକୃତିକ ପଦାର୍ଥରେ ଆତ୍ମସତ୍ତା ବିଦ୍ୟମାନ । କିନ୍ତୁ ବୌଦ୍ଧଧର୍ମରେ ତାହା ଆଦୌ ସ୍ୱୀକାର କରାଯାଏ ନାହିଁ । ସମସ୍ତ ପ୍ରକାର ହିଂସା ଜୈନଧର୍ମରେ କଡ଼ାକଡ଼ି ନିଷିଦ୍ଧ ଥିଲାବେଳେ ବୌଦ୍ଧମାନେ ସ୍ଥାନବିଶେଷରେ ସେଥିରେ କୋହଳ ମନୋଭାବ ପୋଷଣ କରନ୍ତି । କଠୋର ସାଧନାଦ୍ୱାରା ନିର୍ବାଣ ସମ୍ଭବ ବୋଲି ଜୈନମାନେ ସ୍ୱୀକାର କରନ୍ତି; କିନ୍ତୁ ତଥାଗତ ମାର୍ଗ ଅନୁସରଣରେ ହିଁ ତାହା ସମ୍ଭବବୋଲି ବୌଦ୍ଧମାନଙ୍କ ବିଶ୍ୱାସ । ଗୃହସ୍ଥ ନାରୀ ବା ପୁରୁଷ ନିର୍ବାଣର ଅଧିକାରୀ ନୁହନ୍ତି ବୋଲି ଜୈନ ଧର୍ମର କଥାକୁ ବୌଦ୍ଧଧର୍ମ ସ୍ୱୀକାର କରେ ନାହିଁ । ଜୀବଦ୍ଦଶାରେ ମନୁଷ୍ୟର ନିର୍ବାଣ ଲାଭ ସମ୍ଭବ ନୁହେଁ ବୋଲି ଜୈନ କହୁଥିଲାବେଳେ ବୌଦ୍ଧ ବିଶ୍ୱାସରେ ତାହା ଆଦୌ ଅସମ୍ଭବ ନୁହେଁ । କିନ୍ତୁ କୌତୁକର ବିଷୟ, ଜୈନ ଧର୍ମଗୁରୁ ମହାବୀର ଓ ବୌଦ୍ଧଧର୍ମ ପ୍ରତିଷ୍ଠାତା ତଥାଗତ ଉଭୟେ ସମସାମୟିକ ଏବଂ ଉଭୟଙ୍କ ଜନ୍ମ ଉତ୍ତରାପଥରେ । ଏଣୁ ମତପ୍ରଚାର କାଳରେ ଉଭୟେ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେବା ସ୍ୱାଭାବିକ । ସର୍ବତ୍ର ସେୟା ଘଟିଛି ଏବଂ କଳିଙ୍ଗରେ ମଧ୍ୟ । ଅତଏବ ଦୁଇଟିଯାକ ଧର୍ମ କଳିଙ୍ଗର ବୈଶ୍ୟ ଓ ଶୂଦ୍ରଙ୍କ ମଧ୍ୟରେ ବେଶ୍ ଲୋକପ୍ରିୟ ହୋଇଉଠିଥିଲା । କିନ୍ତୁ ପାର୍ଶ୍ୱନାଥଙ୍କ ସମୟରୁ ରହି ଆସିଥିବା ଜୈନଧର୍ମ ପ୍ରତି ଲୋକ-ବିଶ୍ୱାସ ମହାବୀରଙ୍କ ଆଗମନ ଫଳରେ ସମଧିକ ବୃଦ୍ଧି ପ୍ରାପ୍ତ ହୋଇଥିଲା ।

ମହାବୀରଙ୍କ ଆଗମନ ପରଠୁ ଜୈନଧର୍ମର ପ୍ରଧାନ ପୀଠସ୍ଥଳୀ 'ଉଡ୍ର' ବିଷୟ ପାର୍ଥିବ ସମ୍ପଦ ଅପେକ୍ଷା ଆଧ୍ୟାତ୍ମିକ ଓ ଧାର୍ମିକ କ୍ରିୟାକଳାପ ଦ୍ୱାରା ସମଗ୍ର ଭାରତୀୟ ସମାଜର ଦୃଷ୍ଟି ଆକର୍ଷଣ କରିଥିଲା । ତେଣୁ ଖ୍ରୀ:ପୂ: ଚତୁର୍ଥ ଶତାବ୍ଦୀର ମଗଧ ମହାରାଜା ମହାପଦ୍ମ, ଧାର୍ମିକ କାରଣ ଯୋଗୁଁ ହେଉ ବା ଧନ ସମ୍ପଦ ଲୋଭରେ ହେଉ ଆକସ୍ମିକ ଆକ୍ରମଣ ଚଳାଇ କଳିଙ୍ଗର ଉପାସନା ପୀଠରୁ 'ଜିନାସନ' ଅପହରଣ କରି ନେଇଥିଲେ । ଏଣୁ ଜଣାପଡ଼େ, ଖ୍ରୀ:ପୂ: ଚତୁର୍ଥ ଶତାବ୍ଦୀ ପରଠୁ 'ଉଡ୍ର' ବିଷୟ ସମେତ ସମଗ୍ର କଳିଙ୍ଗ ଏକ ଦିଗରେ ଧନ ଜନ ଗୋପ ଲକ୍ଷ୍ମୀରେ ଭରପୂର ଥିଲାବେଳେ ଅନ୍ୟଦିଗରେ ଆଧ୍ୟାତ୍ମିକ କ୍ଷେତ୍ରରେ ମଧ୍ୟ ପ୍ରଭୂତ ଉନ୍ନତି ସାଧନ କରିଥିଲା । ବହିର୍ବାଣିଜ୍ୟ ଓ ବିଦେଶଯାତ୍ରା କ୍ଷେତ୍ରରେ ପ୍ରତିଷ୍ଠା ଅର୍ଜନ କରିଥିଲା । ପ୍ରଜାବର୍ଗ ସୁଖଶାନ୍ତିରେ ରହିଥିଲେ । ନିପଟ ଅହିଂସାଧର୍ମୀ ଥିବାହେତୁ କାହାରି ପ୍ରତି ଈର୍ଷ୍ୟାଭାବ ନଥିଲା । ସଦ୍ଭାବସ୍ଥାନ ମଧ୍ୟରେ ଯେଝା ପରିସର ଭିତରେ ରହି ସରଳ ଜୀବନ ଯାପନ କରୁଥିଲେ । କିନ୍ତୁ ସରଳତା ସର୍ବତ୍ର ଗୁଣବାଚ୍ୟ ନୁହେଁ—ସ୍ଥଳବିଶେଷରେ ତାହା ଦୁର୍ବଳତା ବିବେଚିତ ହୁଏ—ବିଶେଷତଃ ଦେଶ ବା ଜାତି ପକ୍ଷରେ । ସରଳ ଉପାୟରେ ରାଜ୍ୟରକ୍ଷା ବା ଶତ୍ରୁ ସଂହାର ସହଜ ବ୍ୟାପାର ନୁହେଁ । ଏହାଦ୍ୱାରା

ଦୁର୍ବଳ ଶତ୍ରୁଠାରେ ମଧ୍ୟ ଆତ୍ମସମର୍ପଣ କରିବାକୁ ପଡ଼େ । କଳିଙ୍ଗ ଭାଗ୍ୟରେ ବି ସେଇଆ ଘଟିଛି । କଠୋର ଶାସନ ଓ ଦୃଢ଼ ସେନାବାହିନୀ ଅଭାବରୁ ନିଷ୍ପେଷିତ କଳିଙ୍ଗ ଜାତି ରାଜ୍ୟଲୋଭୀ ନନ୍ଦରାଜାଙ୍କ ଅଧୀନସ୍ଥ ହୋଇପଡ଼ିଛି । ଧନ ଲୁଣ୍ଠନ ସଙ୍ଗେ ସଙ୍ଗେ ଧର୍ମବିଶ୍ୱାସର ପ୍ରାଣକେନ୍ଦ୍ର 'ଜିନାସନକୁ' ବଳାତ୍କାର ହରଣ କଲାବେଳେ ମଧ୍ୟ କଳିଙ୍ଗବାସୀ ନୀରବ ଦ୍ରଷ୍ଟା ଭାବେ ଗୃହିରହିଛନ୍ତି । ପ୍ରତିରୋଧ ଅଭାବରୁ ମହାନଦୀ ପର୍ଯ୍ୟନ୍ତ ନିବାଧରେ ମାଡ଼ିଆସି ସମଗ୍ର ଉତ୍ତର କଳିଙ୍ଗକୁ ନିଜ ସାମ୍ରାଜ୍ୟଭୁକ୍ତ କରିନେଇଛନ୍ତି—ଯଦିଓ ଅଗମ୍ୟ ଗିରିଶଙ୍କୁଳ ଶବର ଭୂମି ଆଡ଼କୁ ଆଗେଇପାରିନାହାନ୍ତି ।

ଯାହାହେଉ ଦୁଃଖ ମଣିଷର ପରମ ଗୁରୁ । ଉକ୍ତ ପରାଜୟ ଗ୍ଲାନି କଳିଙ୍ଗର ସୁପ୍ତଶକ୍ତି ଜାଗ୍ରତକରି ନବଜୀବନ ଦେବାରେ ଯେପରି ସହାୟକଥିଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ଦୋଷ ଦୁର୍ବଳତା ହୃଦୟଙ୍ଗମ କରି ସେହିଦିନୁ କଳିଙ୍ଗ ନିଜକୁ ସାମରିକ ଜାତିରୂପେ ଗଢ଼ି ତୋଳିବାପାଇଁ ଦୃଢ଼ସଂକଳ୍ପ ହୋଇଉଠିଲା । ଆତ୍ମରକ୍ଷା ନିମିତ୍ତ ଅସ୍ତ୍ରଶସ୍ତ୍ର ସମେତ ଦୁର୍ଦ୍ଧାନ୍ତ ସେନାବାହିନୀର ପ୍ରୟୋଜନୀୟତା ଅନୁଭବ କଲା ଓ ରଣସଜ୍ଜାରେ ସଜ୍ଜିତହୋଇ ତତ୍କାଳୀନ ଭାରତବର୍ଷରେ ଏକ ଅପରାଜେୟ ଜାତିରୂପେ ଉଭା ହେଲା ।

ସେତେବେଳକୁ କିନ୍ତୁ କଳିଙ୍ଗର ପୂର୍ବ ସୁଷମା ଆଉ ନଥିଲା । ଅଙ୍ଗହାନି ଘଟି ଉତ୍ତର ଆଡ଼ୁ ମହାନଦୀ ଓ ଦକ୍ଷିଣ ପଟେ ବଂଶଧାରା ପର୍ଯ୍ୟନ୍ତ ଅଞ୍ଚଳ ମଗଧ ଓ ଅଶ୍ମକ ରାଜ୍ୟାନ୍ତର୍ଗତ ଥିବାଯୋଗୁ ଶାଖାରହିତ ଗଣ୍ଡି ପରି ପଡ଼ିରହିଥିଲା । କଳିଙ୍ଗ କହିଲେ କେବଳ 'ମଧ୍ୟ କଳିଙ୍ଗ'କୁ ବୁଝାଉଥିଲା । ଉତ୍ତରକଳିଙ୍ଗ ଅର୍ଦ୍ଧମାଗଧୀ ଦ୍ୱାରା ପ୍ରଭାବିତ ହେଲାବେଳେ ଦକ୍ଷିଣ କଳିଙ୍ଗ 'ଅଶ୍ମକ' ସଂସର୍ଗରେ ଦ୍ରାବିଡ଼ ସଭ୍ୟତା ଦ୍ୱାରା ଆଚ୍ଛନ୍ନ ହୋଇପଡ଼ିଥିଲା । ଉଭୟ କଳିଙ୍ଗର ଭାଷା ଭୂଷା, ଆଚାର ବ୍ୟବହାର, ସାମାଜିକ ଚଳଣି ଇତ୍ୟାଦି ଦେଶାନୁରୂପ ପରିବର୍ତ୍ତିତ ହେଲା । କିନ୍ତୁ ମଧ୍ୟକଳିଙ୍ଗର ଆଦିବାସୀ ଶବର ସଭ୍ୟତା ଥିଲା ଅନାବିଳ ଓ ଅପରିବର୍ତ୍ତିତ । ଫଳରେ ଆବହମାନ କାଳରୁ ଚାଲିଆସୁଥିବା କାଳିଙ୍ଗୀ ପରମ୍ପରା ସେଠାରେ ବାଧାପ୍ରାପ୍ତ ହୋଇନଥିଲା । ଆକୃତି ସଂକୁଚିତ ହେଲେ ସୁଦ୍ଧା ପ୍ରକୃତି ଅକ୍ଷତ ଥିଲା—ବରଂ ଉତ୍ତରୋତ୍ତର ବୃଦ୍ଧିହେଉଥିଲା କହିଲେ ଚଳେ । ବହିର୍ବାଣିଜ୍ୟ, ନୌଚାଳନା, କୃଷିକର୍ମ, ଶସ୍ୟ ଉତ୍ପାଦନ, ନୂତନ ବୃତ୍ତି ସମ୍ପାଦନ, ଆଭ୍ୟନ୍ତରୀଣ ବ୍ୟବସାୟ, ଗ୍ରାମ ଗଠନ, ନଗର ନିର୍ମାଣାଦି କୌଣସି ପାର୍ଥିବ ବିଭୂତିରେ ସେ ନ୍ୟୂନ ନଥିଲା । ବିଶେଷତଃ ଗଜାଶ୍ୱ ଚାଳନା ଓ ଅସ୍ତ୍ରଶସ୍ତ୍ରାଦି ପରିଚାଳନାରେ ସେ ଏତେଦୂର ନୈପୁଣ୍ୟ ଲାଭ କରିଥିଲା ଯାହା ଯୋଗୁ ଏକ ଅମିତ ବିକ୍ରମୀ ସାହସିକ ଜାତି ରୂପେ ମାନ୍ୟତା ଦେବାକୁ ଇତର ରାଜ୍ୟ କୁଣ୍ଠା ବୋଧକରୁନଥିଲେ । ସାରକଥା, ଆଗଙ୍ଗା ଗୋଦାବରୀ ବିସ୍ତୃତ କଳିଙ୍ଗର ମାନ ରକ୍ଷା କରିବାକୁ ସେତେବେଳେ ମଧ୍ୟକଳିଙ୍ଗ ହିଁ ସମର୍ଥ ଥିଲା ।

ତେଣେ ଉତ୍ତରପ୍ରାନ୍ତ ଆର୍ଯ୍ୟାବର୍ତ୍ତରେ କି ପ୍ରକାର ଅବସ୍ଥା ଥିଲା ଦେଖିବା କଥା । ଶହ ଶହ ବର୍ଷର ଅକ୍ଳାନ୍ତ ଚେଷ୍ଟାରେ ସିନ୍ଧୁ ସଭ୍ୟତାର ଉଚ୍ଛେଦ ସାଧନ କରି ସୁଦ୍ଧା ଆର୍ଯ୍ୟସମାଜ

ନିର୍ବିଘ୍ନ ଜୀବନ ଯାପନ କରିପାରୁନଥିଲେ । ଋଗ୍‌ବେଦରୁ ଜଣାପଡ଼େ, ଶୁଷ୍ଣ, କୌଳିତର, ବର୍ଚ୍ଚି ପ୍ରଭୃତି ପ୍ରଭୃତି ଆର୍ଯ୍ୟେତର ଜାତିର ବହୁ ବୀରଯୋଦ୍ଧା ସମୟେ ସମୟେ ଅପ୍ରତ୍ୟାଶିତ ଆକ୍ରମଣକରି ସେମାନଙ୍କୁ ଏପରି ଅସ୍ତବ୍ୟସ୍ତ କରିପକାଉଥିଲେ ଯେ ଦେବତା ସାହାଯ୍ୟ ବିନା ସେମାନଙ୍କର ଗତ୍ୟନ୍ତର ନଥିଲା । କିନ୍ତୁ ବାହୁବଳରେ ହେଉ ବା ଦେବତା ପ୍ରସାଦରେ ହେଉ, ସେମାନଙ୍କ ଉପଦ୍ରବ ଶେଷରେ ପ୍ରଶମିତହୋଇଛି । ଆର୍ଯ୍ୟାବର୍ତ୍ତରେ ଶାନ୍ତି ଫେରି ଆସିଛି ସନ୍ଦେହ ନାହିଁ । ମାତ୍ର ଜାତୀୟ ବିପଦ ଅତିକ୍ରାନ୍ତ ହେଲା ପରେ ପାରସ୍ପରିକ ସୌହାର୍ଦ୍ଦ୍ୟ ଓ ସଦ୍ଭାବ ଯେପରି ଶିଥିଳ ହୋଇପଡ଼େ, ଆଭ୍ୟନ୍ତରୀଣ କନ୍ଦଳ ସେହିପରି ମଥା ଟେକି ଉଠେ । ସେଇଆ ଘଟିଛି ସେଇଠି । ଗୋତ୍ର, ବଂଶ, ଶାଖା ଗରିମା ଦର୍ଶାଇବା ପାଇଁ ସମସ୍ତେ ବ୍ୟାକୁଳ ହୋଇଉଠନ୍ତି । ଗୁଣ କର୍ମ ପ୍ରଧାନ ଚତୁର୍ବର୍ଣ୍ଣ୍ୟ ପ୍ରଥାର ଧ୍ୱଂସସ୍ତୂପ ଉପରେ ବଂଶାନୁକ୍ରମିକ ଜାତିଭେଦ ସୌଧ ନିର୍ମିତ ହୋଇ-ପଡ଼ିଛି । ସୁଭଗମନ୍ୟ 'କ୍ଷେତ୍ରପତି' ଓ 'ବର୍ଣ୍ଣପତି' ଅପର ବର୍ଣ୍ଣକୁ ସ୍ୱ ସ୍ୱ ଅଧୀନସ୍ଥ ରଖିବା ଲାଗି ଆପ୍ରାଣ ଉଦ୍ୟମ ଆରମ୍ଭ କରନ୍ତି । ପ୍ରତିଦ୍ୱନ୍ଦ୍ୱିତା ଓ ମନୋମାଳିନ୍ୟ ଉଭୟ ବର୍ଣ୍ଣରେ ଅଙ୍କୁରିତ ହୋଇ କ୍ରମେ କ୍ରମେ ମହାଦ୍ରୁମରେ ପରିଣତ ହୋଇପଡ଼େ । ଫଳରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସେମାନେ କ୍ଷୁଦ୍ର କ୍ଷୁଦ୍ର ଭୂଖଣ୍ଡରେ ସ୍ୱତନ୍ତ୍ରଭାବେ ରାଜ୍ୟମାନ ସ୍ଥାପନ କରିବାରେ ଲାଗନ୍ତି । ବର୍ଣ୍ଣପତି ସମାଜରେ ଅଙ୍ଗୀର, ଅଗସ୍ତି, ଜମଦଗ୍ନି, କଶ୍ୟପ, ବଶିଷ୍ଠ, ଶ୍ୟାବାଶ୍ୱ, ପୁରୁଣୀତ, ବାମଦ, ସପ୍ତବ୍ରଧ୍ୱ, ଭରଦ୍ୱାଜ, ଗବିଷ୍ଠିର, କୁତ୍ସ, କକ୍ଷିବାନ୍, କଣ୍ୱ, ବିଶ୍ୱାମିତ୍ର, ମେଧାତିଥି, ଉଶନା, ଗୌତମ, ମୁଦ୍‌ଗଲ ପ୍ରଭୃତି ଗୋତ୍ର ଓ ପ୍ରବର ମାନ ଯେପରି ଗଢ଼ିଉଠେ, ସେହିପରି ପୁରୁ, କୁରୁ, ଜହ୍ନୁ, ସୂର୍ଯ୍ୟ, ସୋମ, ଚନ୍ଦ୍ରରଥ, ଅର୍ଣ୍ଣ, ଯଦୁ, ତୁର୍ବସୁ, ନିମି ପ୍ରଭୃତି କ୍ଷତ୍ରିୟ ବଂଶମାନ ସୃଷ୍ଟିହୋଇପଡ଼େ । ଖାଲି ସେତିକି ନୁହେଁ, ସ୍ୱାର୍ଥଜଡ଼ିତ ନଗଣ୍ୟ କାରଣ ଯୋଗୁଁ ପରସ୍ପର ମଧ୍ୟରେ ପ୍ରଚଣ୍ଡ ସଂଗ୍ରାମର ସୂତ୍ରପାତ ହୋଇ ଏକାଧିକ ବଂଶ ନିଶ୍ଚିହ୍ନ ହୋଇପଡ଼ିଥିବା ଜଣାଯାଏ । ଉକ୍ତ ବିପଦ୍-ଘଟା ମଧ୍ୟରେ ଆତ୍ମରକ୍ଷା ପାଇଁ ଅସମର୍ଥ ବ୍ୟକ୍ତିର ସ୍ଥାନାନ୍ତରିତ ହେବାଛଡ଼ା ଅନ୍ୟ ଗତି ନଥିଲା । ସମାଜର ଗୌଣଶ୍ରେଣୀ ଦୁଇଟି ଉକ୍ତ ଦୁରବସ୍ଥାର ପ୍ରଧାନ ଶରବ୍ୟ ହେଲେ ସୁଦ୍ଧା ଉଚ୍ଚବର୍ଣ୍ଣ ସେଥିରୁ ବାଦ୍‌ପଡ଼ିନଥିଲା । ବିଧି ନିଷେଧ ନିମାନ୍ତ ଇତରଜାତି ଅଧ୍ୟୁଷିତ ଅଞ୍ଚଳକୁ ପଳାଇବା ଥିଲା ତାଙ୍କର ଏକମାତ୍ର ପନ୍ଥା । ସେଥିଦ୍ୱାରା କିନ୍ତୁ ଦୁଇଟି ଲକ୍ଷ୍ୟ ସିଦ୍ଧି ଘଟିଥିଲା । ଏକରେ ଆତ୍ମରକ୍ଷା, ଦ୍ୱିତୀୟରେ ସଂସ୍କୃତିର ପରିପ୍ରସାର । ସେଥିଯୋଗୁ ଅପାଂକ୍ତେୟ ହେଲେ ସୁଦ୍ଧା ଦକ୍ଷିଣଭାରତୀୟ ଦ୍ରାବିଡ଼ ସମାଜରେ ବ୍ରାହ୍ମଣ୍ୟ ଧର୍ମୀମାନେ ନିଃସଙ୍କୋଚରେ ଅନୁପ୍ରବେଶ କରିଥିଲେ । ଦ୍ରାବିଡ଼ୀୟ ସଭ୍ୟତାର ନିଗଡ଼ ଆବରଣ ଭିତରେ ସୁଦ୍ଧା ବୈଦିକ ଧର୍ମର ସଂପ୍ରସାରଣ ଓ ଯାଗଯଜ୍ଞାଦି କ୍ରିୟାନୁଷ୍ଠାନର ଯେଉଁ ମୂଳଭିତ୍ତି ସ୍ଥାପନ ହେଲା ତଦ୍ୱାରା ଜାତି-ବର୍ଣ୍ଣଭେଦ ଶୂନ୍ୟ ଦ୍ରାବିଡ଼ ସମାଜରେ ବୈପ୍ଳବିକ ପରିବର୍ତ୍ତନ ଘଟି 'ପଞ୍ଚଦ୍ରାବିଡ଼' ନାମରେ ନୂତନ

ବ୍ରାହ୍ମଣ ସମ୍ପ୍ରଦାୟ ସୃଷ୍ଟି ହୋଇପଡ଼ିଲା ଏବଂ ତାହା ଥିଲା ଦକ୍ଷିଣ-ଭାରତୀୟ ସମାଜରେ ଜାତିପ୍ରଥାର ଅସ୍ତମାରମ୍ଭ ।

ଉକ୍ତ ଘଟଣାମାନ ସୂତ୍ର-ଯୁଗରେ ଘଟିଥିବା ବିଶେଷ ସମ୍ଭାବନା; କାରଣ ଏ ଯୁଗ ଲିଖିତ ଗ୍ରନ୍ଥମାନଙ୍କରେ କାଶୀ, ଗାନ୍ଧାର, କେକୟ, କୌଶାମ୍ବୀ, ଅବନ୍ତୀ, ବତ୍ସ ପ୍ରଭୃତି ବହୁ କ୍ଷୁଦ୍ରରାଜ୍ୟର ନାମୋଲ୍ଲେଖ ସଙ୍ଗେ ସଙ୍ଗେ ଅଗସ୍ତି, ଯାଜ୍ଞବଲ୍କ୍ୟ, ପୌଲୋମି ପ୍ରମୁଖ ବ୍ରହ୍ମର୍ଷିଙ୍କୁ ଦକ୍ଷିଣ-ଭାରତୀୟ ରୂପେ ଚିତ୍ରଣ କରାହୋଇଛି । ଦେଶାନ୍ତର ଗମନ ବିଧି ଶିଥିଳିତ ହୋଇଛି । ବହୁ ଅନାର୍ଯ୍ୟ ରାଜଦରବାର ବେଦଜ୍ଞ ବ୍ରାହ୍ମଣ ଓ ଆର୍ଯ୍ୟ ଋଷିଙ୍କ ଦ୍ୱାରା ଅଳଂକୃତ ହେବା ଉଲ୍ଲେଖ ଅଛି । ଏସବୁ ଦେଖିଲେ ଅନୁମାନ ହୁଏ, ଋଗ୍‌ବେଦ କାଳର ଅଖଣ୍ଡ ଆର୍ଯ୍ୟାବର୍ତ୍ତ ସୂତ୍ରଯୁଗ ବେଳକୁ ଖଣ୍ଡ ବିଖଣ୍ଡିତ ହୋଇ କ୍ଷୁଦ୍ର କ୍ଷୁଦ୍ର ଜନପଦରେ ପରିଣତ ହୋଇପଡ଼ିଥିଲା । ସେତିକି ନୁହେଁ, ଏକାଧିକ କାରଣରୁ ନିମ୍ନବର୍ଣ୍ଣୀ ପ୍ରଜାଙ୍କ ନିରବଚ୍ଛିନ୍ନ ଦେଶତ୍ୟାଗ ଆର୍ଯ୍ୟାବର୍ତ୍ତରେ ଅଭାବନୀୟ ସଙ୍କଟର ମୁଖ୍ୟ କାରଣ ରୂପେ ଦେଖାଦେଇଥିଲା । ଆର୍ଯ୍ୟ, ଅନାର୍ଯ୍ୟ, ଉଚ୍ଚ, ନୀଚ, ଅଙ୍ଗ, ବଙ୍ଗ, ନଗରବାସୀ, ବନବାସୀ ରୂପ ଇତରବିଶେଷ ଭାବନା ସମାଜର ମେରୁଦଣ୍ଡ ଦୋହଲାଇ ଦେଉଥିଲା । କେହି ପ୍ରତିବାଦ କରୁନଥିଲେ, କରିବା ସାହସ ବି କାହାର ନଥିଲା । କିନ୍ତୁ ସବୁଦିନେ ସମାନ ଯାଏ ନାହିଁ । ଭାରତୀୟ ଭାଗ୍ୟାକାଶରେ ଦୀପ୍ତିମନ୍ତ ସୂର୍ଯ୍ୟସ୍ୱରୂପ ଆବିର୍ଭୂତ ହେଲେ ସୂର୍ଯ୍ୟବଂଶୀ କ୍ଷତ୍ରିୟ ରାଜା 'ଦଶରଥ' ଓ ତାଙ୍କ ପୁତ୍ର 'ରାମ' । ତାହାଙ୍କ ଦୃଷ୍ଟିକୁ ଏଡ଼ାଇ ପାରି ନଥିଲା ଉକ୍ତ ଭେଦଭାବନାର ଘୃଣକୀଟ । ତା'ର ମୂଳୋତ୍ପାଟନର ପ୍ରଥମ ପଦକ୍ଷେପ ସ୍ୱରୂପ ଅଯୋଧ୍ୟା ରାଜା ଦଶରଥ ଅନାର୍ଯ୍ୟ କୋଶଳ ଦେଶ ରାଜକନ୍ୟା କୌଶଲ୍ୟାଙ୍କୁ ବୈଦିକ ରୀତିରେ ବିବାହ କରି ଆଣି ଅନ୍ତଃପୁରରେ ପଟ୍ଟମହିଷୀ ଭାବେ ରଖିଥିଲେ । ତାଙ୍କ ଗର୍ଭଜାତ ସନ୍ତାନ ରାମ । ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ଥିଲେ ସେ । ତେଣୁ ଆର୍ଯ୍ୟ-ଅନାର୍ଯ୍ୟ, ଶବର-ଶ୍ରମଣ, ସ୍ତ୍ରୀ-ପୁରୁଷ, ନଗରବାସୀ-ବନବାସୀ ସମସ୍ତଙ୍କ ପ୍ରତି ସମଦୃଷ୍ଟି ରହିଥିଲା ତାଙ୍କର । ଫଳରେ ସବୁଶ୍ରେଣୀର ସହଯୋଗରେ ପ୍ରତିଷ୍ଠିତ ହୋଇଥିଲା ରାମରାଜ୍ୟ । ତାଙ୍କ ପ୍ରବର୍ତ୍ତିତ ଉଦାର ଭାବନା ବହୁକାଳଯାଏଁ ଆର୍ଯ୍ୟାବର୍ତ୍ତରେ ଶାନ୍ତି ସ୍ଥାପନ କରିବାରେ ସହାୟକ ଥିଲା; କିନ୍ତୁ ସୂତ୍ରଯୁଗ ବେଳକୁ ଅପ୍ରତ୍ୟାଶିତ ଭାବେ ଯେଉଁ କୃଷ୍ଣମେଘ ଭାରତାକାଶରେ ଘୋଟି ଆସିଲା, ତାହା କୁରୁ ପାଞ୍ଚାଳ ଯୁଦ୍ଧ ବା ଭାରତ ମହାସମର ନାମରେ ଖ୍ୟାତ । ଭରତବଂଶୀ ଭାଇ-ଭାଇଙ୍କ ଭିତରେ ଘଟି ଥିବା ହେତୁ ତାହାକୁ କୁରୁ-ପାଣ୍ଡବ ଯୁଦ୍ଧ ବୋଲି କୁହାଯାଏ । ପୂର୍ବରୁ ବିଭିନ୍ନ ରାଜନ୍ୟବର୍ଗ ମଧ୍ୟରେ ଯେ କଳି-କନ୍ଦଳ ସଂଘଟିତ ହେଉନଥିଲା ସେ କଥା ନୁହେ । ସେଥିଯୋଗୁ ଏକାଧିକ ରାଜ୍ୟ ଧ୍ୱଂସ ପାଇଛି, ରାଜକୁଳ ନିର୍ମୂଳ ହୋଇଛି ସତ, ତଥାପି ମହାଭାରତ ଭଳି ସର୍ବଗ୍ରାସୀ ମହାସମର କେବେ ଅନୁଷ୍ଠିତ ହୋଇ ନଥିଲା । ତାହା ଥିଲା ଅଶ୍ରୁତପୂର୍ବ ଏବଂ ଅଦୃଷ୍ଟପୂର୍ବ ସମର । ଯେଉଁଥିରେ କେତେ ସଂଖ୍ୟକ ରାଜବଂଶ ଲୋପ ପାଇଲା, କେତେ ବୀର, ସେନାପତି, ଚତୁରଙ୍ଗ ଦଳ

କୃତାନ୍ତ କବଳରେ ପଡ଼ିଲେ ତା'ର ଇୟତ୍ତା ନାହିଁ ; କାରଣ ମହାଭାରତରେ ଲେଖାଅଛି —ପାଣ୍ଡବଙ୍କ ପକ୍ଷରେ ଯେଉଁମାନେ ଯୋଗ ଦେଇଥିଲେ ସେମାନେ ହେଲେ ପାଞ୍ଚାଳ ରାଜା ଦ୍ରୁପଦ, ମତ୍ସ୍ୟଦେଶ ରାଜା ବିରାଟ, ଚେଦି ରାଜା ଧୃଷ୍ଟକେତୁ, ସତ୍ୟବାଚ ରାଜା ଯୁଯୁଧାନ, ଜରାସନ୍ଧ ପୁତ୍ର ଜୟତ୍ସେନ, ପାଣ୍ଡ୍ୟ ଦେଶର ରାଜା ଓ କଳିଙ୍ଗର ନିଷାଦରାଜ । ତେଣେ କୌରବ ପକ୍ଷୀୟ ରାଜା ହେଉଛନ୍ତି, ଉତ୍ତରଦେଶୀୟ ପାର୍ବତ୍ୟରାଜା ହରିଦ୍‌ବର୍ଣ୍ଣ ଭଗଦତ୍ତ, ମଦ୍ର ଦେଶର ରାଜା ଶଲ୍ୟ, ଭୋଜରାଜା କୃତବର୍ମା, ସିନ୍ଧୁ-ସୌବୀର ରାଜା ଜୟଦ୍ରଥ, କାମ୍ବୋଜ ରାଜା ସୁଦକ୍ଷିଣ, ଦାକ୍ଷିଣାତ୍ୟ ମାହେଷ୍ମତୀପୁରୀ ରାଜା ନୀଳ, ଅବନ୍ତୀ ଦେଶ ରାଜା ନନ୍ଦ-ଉପନନ୍ଦ, କେକୟ ଦେଶ ରାଜା ଭୂରିଶ୍ରବା । କୌରବ ଓ ପାଣ୍ଡବଙ୍କ ସହିତ ଅନ୍ୟ ରାଜାଙ୍କ ସୈନ୍ୟ ମିଶି ସମୁଦାୟ ଅଠର ଅକ୍ଷୌହିଣୀ ଥିଲା ଏବଂ ଅଠର ଦିନରେ ଯୁଦ୍ଧର ପରିସମାପ୍ତି ଘଟିଥିଲା । ଯୁଦ୍ଧ ଶେଷରେ ଏକ ଅକ୍ଷୌହିଣୀ ମାତ୍ର ସେନା ଜୀବିତ, ସତର ଅକ୍ଷୌହିଣୀ ନିହତ । ଏକ ଅକ୍ଷୌହିଣୀ ସେନା କହିଲେ—୨୧୮୭୦ ସଂଖ୍ୟକ ହାତୀ + ୨୧୮୭୦ ସଂଖ୍ୟକ ରଥ + ୬୫୬୧୦ ସଂଖ୍ୟକ ଘୋଡ଼ା + ୧୦୯୩୫୦ ସଂଖ୍ୟକ ପଦାତି— ମୋଟ—୨୧୮୭୦୦ ଚତୁରଙ୍ଗ ସେନା । ଏ ସଂଖ୍ୟାର ଅଠର ଗୁଣ ଅର୍ଥାତ୍ ୩୯୩୬୬୦୦ ସେନାମଧ୍ୟରୁ ବଞ୍ଚିରହିବା ସଂଖ୍ୟା ମାତ୍ର ୨୧୮୭୦୦ । ଏ ଗଣନାରୁ ଯୁଦ୍ଧର ଭୟାବହତା ସହଜେ ଅନୁମେୟ । ଏହାର କୁପରିଣତି କେବଳ ଆର୍ଯ୍ୟାବର୍ତ୍ତ ଭିତରେ ସୀମାବଦ୍ଧ ନଥିଲା । ଭାରତର ଚତୁରନ୍ତ ସୀମା ମଧ୍ୟରେ କ୍ଷୁଦ୍ରାତିକ୍ଷୁଦ୍ର ଜନପଦ ସମେତ ସୁବୃହତ ସାମ୍ରାଜ୍ୟ-ମାନଙ୍କୁ ମଧ୍ୟ କବଳିତ ନକରି ଛାଡ଼ିନଥିଲା । ତଦ୍ୱାରା ଅଧିକାଂଶ ନଗରୀ-ମହାନଗରୀ, ରାଜବଂଶ, ଜ୍ଞାନ ବିଜ୍ଞାନ କୌଶଳ ସନ୍ଧାନ ପାଇଁ ଦେଶରୁ ଅନ୍ତର୍ହିତ ହୋଇପଡ଼ିଲା । ଆବହମାନ କାଳରୁ ପ୍ରଚଳିତ ମହାଭାରତୀୟ ସଂସ୍କୃତି ଦେହରେ ପ୍ରଚଣ୍ଡ ଆଘାତ ଲାଗି ମୃତ ପ୍ରାୟ ହୋଇପଡ଼ିଲା । ଯାହା ଅବଶିଷ୍ଟ ରହିଲା ତାହା କେବଳ କଙ୍କାଳ ମାତ୍ର । ବ୍ରହ୍ମତେଜ ଓ କ୍ଷାତ୍ରବୀର୍ଯ୍ୟ ବଳରେ ଦୀପ୍ତିମନ୍ତ ଭାରତୀୟ ସଂସ୍କୃତି ଯାହା ସମଗ୍ର ବିଶ୍ୱର ପଥପ୍ରଦର୍ଶକ ହୋଇ ଆସିଥିଲା ଅଠର ଦିନ ଭିତରେ ଆଖି ପିଛୁଳାକେ ଅସ୍ତ ହୋଇପଡ଼ିଲା । ବେଦ, ବେଦାଙ୍ଗ, କୃଷି, ବାଣିଜ୍ୟ, ରାଜନୀତି, ଅର୍ଥନୀତି ସବୁର ବିଲୁପ୍ତି ଘଟିଲା, କେହି ଜାଣି ପାରିଲେ ନାହିଁ । ସେହି ମହାନ୍ଧକାର ଅପସାରିତ ହେବାକୁ କେତେଶହ ବର୍ଷ ଅତିବାହିତ ହୋଇଥିବ ଅନୁମାନ କରିବା କଷ୍ଟସାଧ୍ୟ । ତଥାପି ତାହା ହେବାକୁ ହଜାରେ ବର୍ଷରୁ କମ୍ ଲାଗିନଥିବ । ଏଣୁ କହିପାରୁ ଖ୍ରୀ: ପୂ: ଅଷ୍ଟମ ଶତାବ୍ଦୀ ପର୍ଯ୍ୟନ୍ତ ସଭ୍ୟତା ଓ ସଂସ୍କୃତି କ୍ଷେତ୍ରରେ ଆର୍ଯ୍ୟାବର୍ତ୍ତ ପୁନଃ ପ୍ରତିଷ୍ଠିତ ହେବା ଲାଗି ଯଥାସାଧ୍ୟ ଚେଷ୍ଟା କରି ଆସୁଥିଲା । କିନ୍ତୁ ତତ୍ତ୍ୱଦର୍ଶୀ ମୁନିଋଷିଙ୍କ ମୁଷ୍ଟିମେୟତା ହେତୁ ଋକ୍ ମନ୍ତ୍ର ସମେତ ବୈଦିକ କ୍ରିୟା କାଣ୍ଡରେ ଯେଉଁ ଅର୍ଥ ଅର୍ଥାନ୍ତର ଓ ସ୍ୱାର୍ଥାନ୍ୱେଷୀ ବିବୃତିମାନ ପ୍ରକାଶିତ ହେଲା ତାହା ଥିଲା ନିଷ୍କାମ ଭାବନା ପରିବର୍ତ୍ତେ ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧିମୂଳକ । ବେଦପ୍ରାମାଣ୍ୟ ଚିନ୍ତାଶୀଳ ମନୀଷୀଙ୍କ ବୈବାଦିକ ବିଷୟ ହୋଇପଡ଼ିଲା । ଫଳରେ ତାହା ଚାର୍ବାକ, ଜୈନ,

ବୌଦ୍ଧାଦି ପରବର୍ତ୍ତୀ ଅବୈଦିକ ଧର୍ମର ଭିତ୍ତିଭୂମି ହୋଇଉଠିଲା । ଏଥିପାଇଁ ଯାଗ-ଯଜ୍ଞାଦି କ୍ରିୟା କାଣ୍ଡ ଯେତିକି ନୁହେଁ, ତାହାର ବ୍ୟାଖ୍ୟା ବ୍ୟାଖ୍ୟାନ୍ତର ଥିଲା ତତୋଽଧିକ ଦାୟୀ ।

ଅବୈଦିକ ଧର୍ମବିଶ୍ୱାସ ମଧ୍ୟରେ ପ୍ରଥମେ ଜନ୍ମ ଲାଭ କରେ 'ଚାର୍ବାକ୍' । ଏକାଧାରରେ ତାହା ଥିଲା ଈଶ୍ୱରବିରୋଧୀ ଓ ବେଦବିରୋଧୀ । ସେ ମତରେ ଦୃଶ୍ୟମାନ ବସ୍ତୁ ଛଡ଼ା ଅଦୃଶ୍ୟବସ୍ତୁ କଳ୍ପନା ଅବାନ୍ତର । ଯାହା ପ୍ରତ୍ୟକ୍ଷ ଇନ୍ଦ୍ରିୟଗ୍ରାହ୍ୟ, ତାହା ହିଁ ସତ୍ୟ—ଅନ୍ୟ ସବୁ ମିଥ୍ୟା । ସ୍ୱାର୍ଥ ସିଦ୍ଧି ହିଁ କେବଳ ମନୁଷ୍ୟର ସର୍ବସ୍ୱ । ସେଥି ସକାଶେ ଋଣ କରି ଘୃତ ପିଆଯାଇପାରେ, ନିର୍ବିଘ୍ନରେ ପରଧନ ହରଣ କରାଯାଇ ପାରେ; ଈଶ୍ୱର, ଜନ୍ମାନ୍ତର ପ୍ରଭୃତି ନିର୍ବୋଧ କଳ୍ପନା । ପାପ ପୁଣ୍ୟ ସବୁ ଅବାନ୍ତର କଥା । ମୋଟାମୋଟି କହିଲେ ତାହା ଥିଲା ଏକ ସ୍ୱାର୍ଥସର୍ବସ୍ୱ ନାସ୍ତିକ ଧାରଣା । ତେଣୁ ବୌଦ୍ଧିକ ସମାଜର ସଚେତନ ମନରେ ତାହା ଦୀର୍ଘକାଳ ତିଷ୍ଠି ନପାରି ଆପେ ଆପେ ମଉଳି ପଡ଼ିଲା; କିନ୍ତୁ ତା'ର ମୂଳଦୁଆ ଉପରେ ମୁଣ୍ଡଟେକି ଉଠିଲା ନିରୀଶ୍ୱରବାଦୀ ଜୈନ ଧର୍ମ । ଉଚ୍ଚ-ନୀଚ-ଭେଦ-ଶୂନ୍ୟ ସରଳ ଆଚରଣ ପଦ୍ଧତି ଉପରେ ପ୍ରତିଷ୍ଠିତ ହେବା ଯୋଗୁ ଉପେକ୍ଷିତ ଶ୍ରେଣୀ ମଧ୍ୟରେ ତାହା ଆଶୁ ଗ୍ରହଣୀୟ ହୋଇପଡ଼େ । ଦେଖୁ ଦେଖୁ ଭାରତର ବିଭିନ୍ନ ପ୍ରାନ୍ତରେ ଲୋକପ୍ରିୟତା ଅର୍ଜନ କରେ । ଏ କଥା କହିବାର ଉଦ୍ଦେଶ୍ୟ, ବୈଦିକ ମନ୍ତ୍ରଭାଗର ତ୍ରୁଟିପୂର୍ଣ୍ଣ ବ୍ୟାଖ୍ୟାନ ହେତୁ ଆର୍ଯ୍ୟାବର୍ତ୍ତରେ ଯେଉଁ ସାଂସ୍କୃତିକ ଅବକ୍ଷୟ ଦେଖାଦେଲା ତଦ୍ୱାରା ରାଜନୀତି ଓ ଲୋକନୀତି ସମ୍ପୂର୍ଣ୍ଣ ଦୁର୍ବଳ ହୋଇପଡ଼ିଲା । ଦିନ ଥିଲା ଯେତେବେଳେ ବୈଦିକ ସଂସ୍କୃତି, କି ବୌଦ୍ଧିକ, କି ଆର୍ଥିକ, କି ସାମାଜିକ, କି ନୈତିକ ସକଳ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇ ଉନ୍ନତିର ଚରମସୀମା ସ୍ପର୍ଶ କରିଥିଲା । ପ୍ରତିବେଶୀ ଚୀନ, ପାରସ୍ୟ, ମଧ୍ୟ-ଦେଶୀୟ ରାଜନ୍ୟମଣ୍ଡଳୀ ଜ୍ଞାନ ବିଜ୍ଞାନ ସନ୍ଧାନ କ୍ଷେତ୍ରରେ ଆର୍ଯ୍ୟାବର୍ତ୍ତକୁ ଆଦର୍ଶସ୍ଥଳୀ ରୂପେ ବାଛି ନେଇଥିଲେ । ତକ୍ଷଶିଳାର ସାର୍ବଜନୀନ ବିଶ୍ୱବିଦ୍ୟାଳୟ କେବଳ ପଡ଼ୋଶୀ ଦେଶ ନୁହେଁ, ସମଗ୍ର ପୃଥିବୀର ଦୃଷ୍ଟି ଆକର୍ଷଣ କରିଥିଲା । ତତ୍ତ୍ୱସନ୍ଧିତ୍ସୁ ବିଦ୍ୱାନ୍‌ମାନେ ବିଭିନ୍ନ ଦିଗରୁ ଆସି ସକଳ ବିଦ୍ୟାରେ ପାରଙ୍ଗମ ହୋଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଶିକ୍ଷା ସଦୃଶ ରାଜ୍ୟଶାସନ ଓ ବାଣିଜ୍ୟ-ବ୍ୟବସାୟରେ ମଧ୍ୟ ଏହାର ବିଚକ୍ଷଣତା ପ୍ରଦର୍ଶିତ ହୋଇ ନଥିଲା ନୁହେଁ । ଚୀନ୍ ପାରସ୍ୟ ସମେତ ବହୁ ଦୂର ଦୂରାନ୍ତର ରାଜ୍ୟ ସହିତ ଏହାର ବାଣିଜ୍ୟିକ କାରବାର ପ୍ରତ୍ୟକ୍ଷ ଭାବେ ଚାଲି ଆସୁଥିଲା । କହିବାକୁ ଗଲେ ସୂତ୍ର ଯୁଗ ପର୍ଯ୍ୟନ୍ତ ସାରା ପୃଥିବୀରେ ଭାରତ ସର୍ବୋତ୍କୃଷ୍ଟ ଦେଶ ମଧ୍ୟରେ ପରିଗଣିତ ଥିଲା । ସମସ୍ତେ ଏହାର ବନ୍ଧୁତା କାମନା କରୁଥିଲେ । ମାତ୍ର ଆଭ୍ୟନ୍ତରୀଣ ବିବାଦ ଓ ପାରସ୍ପରିକ କଳହ, ବିଶେଷତଃ ମହାଭାରତ ଯୁଦ୍ଧର ପ୍ରଳୟଙ୍କରୀ ପରିଣାମ, ତାକୁ ଏତେଦୂର ଦୁର୍ବଳ କରିପକାଇଲା, ଯଦ୍ୱାରା ବିଦେଶୀ ଶକ୍ତିବୃନ୍ଦ ପ୍ରତ୍ୟକ୍ଷ ବିରୋଧାଚରଣ କରିବାକୁ ତିଳେମାତ୍ର ଶଙ୍କା ବୋଧ କଲେ ନାହିଁ । ଦୀର୍ଘକାଳ ମିତ୍ରତା ସୂତ୍ରରେ ଆବଦ୍ଧ ପାରସ୍ୟ ରାଜା ପାର୍ବତ୍ୟ ମାର୍ଗ ଦେଇ ଭାରତ

ବିରୁଦ୍ଧରେ ଅଭିଯାନ ଚଳାଇଲେ । ଏହା ବୌଦ୍ଧ-ଜାତକ କଥାରେ ଲିପିବଦ୍ଧ । ହିରୋଡ଼ୋଟସ୍, ଷ୍ଟ୍ରାବ୍, ଅରିଷ୍ଟ ପ୍ରମୁଖ ଗ୍ରୀକ୍ ଦେଶୀୟ ଐତିହାସିକମାନେ ମଧ୍ୟ ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀର ପାରସ୍ୟ ରାଜା 'ସାଇରସ୍' ପ୍ରଥମେ ଭାରତ ଆକ୍ରମଣ କରିଥିବା କଥା ଲେଖିଛନ୍ତି । ସେ କୁଆଡ଼େ ସିନ୍ଧୁ ନଦୀର ପଶ୍ଚିମରେ ଥିବା 'ଗାନ୍ଧାର' ରାଜ୍ୟକୁ ନିଜ ଶାସନାଧୀନ କରି ରଖିଥିଲେ ଏବଂ ଉତ୍ତର କାଳରେ ତାଙ୍କ ନାତି ଦାରିୟୁସ୍ ପଞ୍ଜାବର ଉତ୍ତରଭାଗ ପର୍ଯ୍ୟନ୍ତ ମାଡ଼ି ଆସି ତାହାକୁ ପାରସ୍ୟର ଏକ 'ସତ୍ରପ' (ପ୍ରଦେଶ)ରେ ପରିଣତ କରିଥିଲେ । ପାରସ୍ୟର ତାହା ଥିଲା ବିଂଶତମ ପ୍ରଦେଶ । ଏଥିରୁ ଅନୁମାନ ହୁଏ, ଉତ୍ତରାପଥର ରାଜ୍ୟମାନଙ୍କ ମଧ୍ୟରୁ କୌଣସି ରାଜା ସେତେବେଳକୁ ବିଦେଶୀ ଆକ୍ରମଣର ପ୍ରତିରୋଧ କରିବାକୁ ସମର୍ଥ ନଥିଲେ—ଯଦିଚ ଭାରତ ଯୁଦ୍ଧରେ ସେମାନେ ଅମିତ ପରାକ୍ରମଶାଳୀ ଯୋଦ୍ଧା ଭାବେ ବର୍ଣ୍ଣିତ । ଦୀର୍ଘକାଳର ଅନ୍ତର୍ବିବାଦ ଓ ଆଭ୍ୟନ୍ତରୀଣ ଶତ୍ରୁତା ଦ୍ୱାରା ପରସ୍ପରଠାରୁ ବିଚ୍ଛିନ୍ନ ରହିଥିବା ହେତୁ ସେମାନେ ଦୁର୍ବଳ ହୋଇପଡ଼ିଥିଲେ । ତେଣୁ ଏକାକୀ ଶତ୍ରୁର ସମ୍ମୁଖୀନ ହେବାପାଇଁ କାହାର ସାହସ ନଥିଲା । ମିଳିତ ପ୍ରତିରୋଧ ଅସମ୍ଭବ ଥିଲା । ତେଣୁ ପାରସ୍ୟରାଜା ବିନାଯୁଦ୍ଧରେ ଦେଶ ଭିତରକୁ ପଶିଆସିଲେ । ସଂହତିର ଅଭାବ ବିଦେଶୀଙ୍କୁ ଆକ୍ରମଣ କରିବାର ସାହସ ଯୋଗାଇଥିଲା ।

ଉଲ୍ଲିଖିତ ଦୁର୍ବଳତାର ସୁଯୋଗ ନେଇ ଅଙ୍ଗ, ମଗଧ, ଅବନ୍ତୀ ପ୍ରମୁଖ ଆର୍ଯ୍ୟେତର ରାଜା ଅସଂହତ ଆର୍ଯ୍ୟାବର୍ତ୍ତ ଭିତରୁ କେତେ ରାଜ୍ୟ କବଳିତ କରିନେଲେ । ସେହି ଅବସରରେ ବିମ୍ବିସାରଙ୍କ ପୁତ୍ର ଅଜାତଶତ୍ରୁ ଓ ତାଙ୍କର ଉତ୍ତରାଧିକାରୀ 'ଶିଶୁନାଗ'ବଂଶୀ ରାଜାମାନେ ମଗଧରାଜ୍ୟର ସୀମା ସମ୍ପ୍ରସାରିତ କରିବାପାଇଁ ଉତ୍ସୁକ ହୋଇଉଠିଲେ । ଲୋଭପରବଶ ନନ୍ଦବଂଶୀ ରାଜାମାନେ ଦୁର୍ବଳ ରାଜ୍ୟମାନେ ଆକ୍ରମଣ ଚଳାଇ ନିଜ ସାମ୍ରାଜ୍ୟଭୁକ୍ତ କରିବାକୁ ଟିକେ ସୁଦ୍ଧା ପଶ୍ଚାତ୍ପଦ ହେଲେ ନାହିଁ । ମଗଧ ଏକ ଶକ୍ତିଶାଳୀ ସାମ୍ରାଜ୍ୟରେ ପରିଣତ ହେଲା । ତା ସତ୍ତ୍ୱେ ରାଜ୍ୟ ଲିପ୍ସା ବ୍ୟାଧି ଦ୍ୱାରା 'କଳିଙ୍ଗ' ସଂକ୍ରମିତ ନହୋଇ କୃଷି ବାଣିଜ୍ୟାଦି କ୍ଷେତ୍ରରେ ନିଜର ଆଶାତୀତ ଉନ୍ନତି ସାଧନ କରିଥିଲା ବୋଲି ଆଗରୁ କୁହାଯାଇଛି । ବହିର୍ବାଣିଜ୍ୟ, ସମୁଦ୍ରଯାତ୍ରା, ଧର୍ମଧାରଣା ସକଳ ଦିଗରେ ସେ ପାରଦର୍ଶିତା ଅର୍ଜନ କରିଥିଲା । ରାଜ୍ୟ ବିସ୍ତାର କାର୍ଯ୍ୟରେ ମଗଧ ବ୍ୟାପୃତ ଥିବା ସ୍ଥଳେ କଳିଙ୍ଗ ସାମାଜିକ ସୁଖ-ସମୃଦ୍ଧି ଓ ଧନ-ସମ୍ପତ୍ତି ବଢ଼ାଇବା ଦିଗରେ ମନପ୍ରାଣ ଢାଳିଥିଲା । ଅନ୍ୟରାଜ୍ୟ ଆକ୍ରମଣ ଚିନ୍ତା ତା ମନକୁ ସ୍ପର୍ଶ କରି ନଥିଲା ଏବଂ ଅପର ପକ୍ଷେ ଅନ୍ୟର ଆକ୍ରମଣ ଆଶଙ୍କା ତା'ର କଳ୍ପନା ବହିର୍ଭୂତ ଥିଲା । ପରସ୍ୱ ଲୁଣ୍ଠନ ଓ ରାଜ୍ୟାପହରଣ ତା ଦୃଷ୍ଟିରେ ଥିଲା ମହାପାପ-- ଜଘନ୍ୟ ଅପରାଧ ତେଣୁ ଆଭ୍ୟନ୍ତରୀଣ ଶାନ୍ତି-ଶୃଙ୍ଖଳା ରକ୍ଷା ନିମିତ୍ତ ଯେତିକ ଆବଶ୍ୟକ ତଦପେକ୍ଷା ଅଧିକ ବଳର ପ୍ରୟୋଜନୀୟତା ଉପଲବ୍ଧି କରି ନଥିଲା । ଏହି ସୁଯୋଗ ଦେଖି ବୋଧହୁଏ, ମଗଧ ରାଜ କଳିଙ୍ଗର ଉତ୍ତର ଭୂ-ଭାଗକୁ ବଳପୂର୍ବକ ଅଧିକାର କରିନେଲେ । ସ୍ୱାଭିମାନୀ କଳିଙ୍ଗ ସେନା ସେହିଦିନୁ ଅପମାନର

ପ୍ରତିଶୋଧ ନେବା ସକାଶେ ଉତ୍ସୁକ ହୋଇ ଉଠିଲେ । ପରାଜୟ ଜନିତ ଗ୍ଲାନି ସଂଗ୍ରାମ ସମର୍ଥ ଚତୁରଙ୍ଗ ବାହିନୀ ଗଢ଼ିବା ସକାଶେ ତାହାଙ୍କୁ ପ୍ରରୋଚିତ କରିଥିଲା । ଗ୍ରାମେ ଗ୍ରାମେ ସଂଗଠନ ଗଢ଼ାଯାଇ ଯୁଦ୍ଧ କୌଶଳ ଶିକ୍ଷା ଦିଆଗଲା । ଆବାଳବୃଦ୍ଧବନିତା ମହାଉତ୍ସାହରେ ଅଂଶ ଗ୍ରହଣ କରିବାକୁ ବାହାରି ପଡ଼ିଲେ—ଏପରିକି ସମର୍ଥ ଯୁବତୀମାନେ ମଧ୍ୟ ଶସ୍ତ୍ର ଚାଳନା ଶିକ୍ଷା କରିବାକୁ ଲଜ୍ଜା ବୋଧ କଲେ ନାହିଁ । ପ୍ରବୀଣ ଜନନାୟକଙ୍କ ନିୟନ୍ତ୍ରଣରେ ଯୁବବାହିନୀମାନ ଗଠିତ ହୁଏ । ଫଳରେ ଗ୍ରାମ ସମୂହ ଯୁଦ୍ଧ ଶିବିର ପରି ଶତ୍ରୁ ଆକ୍ରମଣର ସମ୍ମୁଖୀନ ହେବାପାଇଁ ସଦା ଜାଗ୍ରତ ହୋଇ ରହିଲେ ।

ସେ ସମୟରେ ଗ୍ରୀକ୍ ସେନାପତି 'ଆଲେକ୍‌ଜାଣ୍ଡାର୍'ଙ୍କ ଭାରତ ଆକ୍ରମଣ ଏକ ଉଲ୍ଲେଖଯୋଗ୍ୟ ଘଟଣା । 'ଆଲେକ୍‌ଜାଣ୍ଡାର୍' ଯେପରି ଜଣେ ଦୁର୍ଦ୍ଦାନ୍ତ ସେନାନାୟକ ସେହିପରି ଅତି ମାତ୍ରାରେ ଯଶୋଲିପ୍ସୁ ଥିଲେ । ପ୍ରତିପତ୍ତିଶାଳୀ ପାରସ୍ୟ ରାଜାଙ୍କ ବିଶାଳ ସାମ୍ରାଜ୍ୟକୁ ଆୟତ୍ତ କରିବା ଉଦ୍ଦେଶ୍ୟରେ ସେ ପଞ୍ଜାବ ପର୍ଯ୍ୟନ୍ତ ଭାରତ ଅଞ୍ଚଳ ଭିତରକୁ ମାଡ଼ିଯିବା ପାଇଁ ସ୍ୱ-ସେନାବାହିନୀକୁ ଆଦେଶ ଦିଅନ୍ତି । ପରସ୍ପର ବିରୋଧୀ ରାଜାମାନଙ୍କ ପକ୍ଷେ ପରାଜୟ ସ୍ୱୀକାର କରିବା ଛଡ଼ା ପ୍ରତିରୋଧ କରିବାର ଉପାୟ ନଥିଲା । ତଥାପି ସେତେବେଳର ସ୍ୱାଭିମାନୀ 'ପୁରୁ' ରାଜାଙ୍କ ବୀରୋଚିତ ଆଚରଣ ଆଲେକ୍‌ଜାଣ୍ଡାର୍‌ଙ୍କୁ ଯେପରି ସ୍ତମ୍ଭୀଭୂତ କରିଦେଇଥିଲା ତାହାର ପଟାନ୍ତର ନାହିଁ । ତା'ରି ଫଳରେ ହୃତରାଜ୍ୟ ପୁରୁଙ୍କ ହସ୍ତରେ ସମ୍ମାନେ ପ୍ରତ୍ୟର୍ପଣ କରି ସେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଏତାଦୃଶ ଦୁରବସ୍ଥା ଉତ୍ତରାପଥ ମଧ୍ୟରେ କେବଳ ସୀମାବଦ୍ଧ ଥିଲା । ଏହାର ବିପର୍କିୟା ମଗଧ ପର୍ଯ୍ୟନ୍ତ ବ୍ୟାପି ନଥିଲା । ପରାଜୟର ତିକ୍ତ ସ୍ୱାଦୁ ମଗଧ ରାଜା ଆସ୍ୱାଦନ କରି ନଥିଲେ । ରାଜ୍ୟ ପ୍ରସାରଣ ଲିପ୍‌ସା ତାଙ୍କ ମନରୁ ଦୂର ହୋଇ ନଥିଲା । ସେହି କାରଣରୁ ଇକ୍ଷ୍ୱାକୁ, ପାଞ୍ଚାଳ, କାଶୀ, କଳିଙ୍ଗ, ହୈହୟ, ଶୂରସେନାଦି ଦେଶର ରାଜାମାନଙ୍କୁ ବଶତା ସ୍ୱୀକାର କରାଇଥିଲେ । ସଂସ୍କୃତ, ପୁରାଣ ଓ ବୌଦ୍ଧ ଜାତକ କଥାରେ ଏହାର ବହୁ ଉଲ୍ଲେଖ ରହିଛି । କିନ୍ତୁ ପରବର୍ତ୍ତୀ କାଳରେ ଉତ୍ତରାଧିକାରୀ ରାଜାଙ୍କ ଅଯୋଗ୍ୟତା ଓ ଦୁର୍ବଳତାର ସୁଯୋଗ ନେଇ ଆକ୍ରାନ୍ତ ରାଜ୍ୟଗୁଡ଼ିକରେ ବିଦ୍ରୋହ ବହ୍ନି ଜଳି ଉଠିଲା । ଯାହାହେଉ ସେତେବେଳର ମୌର୍ଯ୍ୟବଂଶ ପ୍ରତିଷ୍ଠାତା 'ବୃଷଳ' ଚନ୍ଦ୍ରଗୁପ୍ତଙ୍କ ଆବିର୍ଭାବ ମଗଧ ପକ୍ଷେ ଏକ ଶୁଭ ଲକ୍ଷଣ ଥିଲା । ତକ୍ଷଶିଳାର ବିଚକ୍ଷଣ କୂଟନୀତିଜ୍ଞ ଚାଣକ୍ୟଙ୍କ ସାହାଯ୍ୟରେ ମଗଧ ରାଜା ନନ୍ଦଙ୍କୁ ଗାଦିଚ୍ୟୁତ କରି ସେ ସିଂହାସନ ଅଧିକାର କରନ୍ତି । ତାଙ୍କରି ଯୋଗୁ ଚନ୍ଦ୍ରଗୁପ୍ତ ବ୍ରାହ୍ମଣ୍ୟ ଧର୍ମ ପ୍ରତି ବିଶେଷ ଭକ୍ତି ଓ ଶ୍ରଦ୍ଧା ପ୍ରଦର୍ଶନ କରି ଆସିଥିଲେ ।

କେବଳ ମଗଧ ନୁହେଁ, କଳିଙ୍ଗର ଉତ୍ତରଭାଗରେ ମାଗଧୀ ଜନତା ଓ ସ୍ଥାନୀୟ ଅଧିବାସୀଙ୍କ ସାଯୁଜ୍ୟ ମିଶ୍ରଣ ଯୋଗୁ ଯେଉଁ ଅଭିନବ ସଭ୍ୟତା ଗଢ଼ି ଉଠିଥିଲା । ସେଥିରେ ମଧ୍ୟ ବ୍ରାହ୍ମଣଙ୍କ ଅବଦାନ ଥିଲା ସର୍ବାପେକ୍ଷା ବୃହତ୍ତର । କଳିଙ୍ଗ କାହିଁକି ସମଗ୍ର ଭାରତ

ବର୍ଷରେ ମାର୍ଜିତ ସଂସ୍କୃତି ଓ ଜାତୀୟ ଚେତନା ସୃଷ୍ଟି କରିବାରେ ବ୍ରାହ୍ମଣ ଜାତି ଥିଲା ଅନନ୍ୟ ସାଧାରଣ । ଶାସ୍ତ୍ର ପୁରାଣ ମାଧ୍ୟମରେ ନୀତି ଉପଦେଶ ଦେବା ମାନବିକ କର୍ତ୍ତବ୍ୟ ବୋଲି ସେମାନେ ବିବେଚନା କରୁଥିଲେ । କୃଷି କ୍ଷେତ୍ରରୁ ତତ୍ତ୍ୱଜ୍ଞାନ ଯାଏଁ ଏଭଳି କୌଣସି ବିଷୟ ନାହିଁ ଯାହା ସେମାନେ ଗ୍ରନ୍ଥ ମଧ୍ୟରେ ଲିପିବଦ୍ଧ ନକରିଛନ୍ତି । କୃଷକ, ବଣିକ, ଶାସକ, ଯାଜକ ପ୍ରତ୍ୟେକଙ୍କ ମାର୍ଗ ନିର୍ଦ୍ଦେଶକ ଥିଲେ ସେମାନେ । ଶୁକ୍ରନୀତିସାର, କୃଷିପରାଶର, ଅର୍ଥଶାସ୍ତ୍ର, ଗୃହ୍ୟସୂତ୍ର, କାମତନ୍ତ୍ର, ଚିକିତ୍ସାଶାସ୍ତ୍ର ସବୁର ଲେଖକ ଅଟନ୍ତି ବ୍ରାହ୍ମଣ । ତା'ଛଡ଼ା ଧର୍ମ-କର୍ମ ମାଧ୍ୟମରେ ସମୁଦାୟ ମାନବ ଶ୍ରେଣୀକୁ ଏକ ସୂତ୍ରରେ ବାନ୍ଧି ରଖିବା କୌଶଳ ସେମାନଙ୍କ ବିନା ଅନ୍ୟ କାହାରିକୁ ଜଣା ନଥିଲା । ଜାତକର୍ମ, ବିବାହ, ପୂଜାପାଠ, ଅନ୍ତ୍ୟେଷ୍ଟି ପ୍ରଭୃତିକୁ ସାର୍ବଜନୀନ କରାଇ ଜାତିବର୍ଣ୍ଣ ନିର୍ବିଶେଷରେ ଜନସାଧାରଣଙ୍କ ଶ୍ରଦ୍ଧାଭାଜନ ହୋଇ 'ବର୍ଣ୍ଣପତି'ର ମର୍ଯ୍ୟାଦା ସବୁକ୍ଷେତ୍ରରେ ରକ୍ଷା କରି ଆସିଥିଲେ । ସେହି କାରଣରୁ ବୋଧହୁଏ ସେମାନେ ନିମ୍ନ ବର୍ଣ୍ଣର କର୍ମ କୃଷି ଅର୍ଥସୂଚକ 'ଓଡ୍' ବା 'ଉଡ୍ର' ଶବରଶ୍ରେଣୀ ଅଧ୍ୟୁଷିତ ସ୍ଥାନକୁ ଉନ୍ନତ କଳା ବ୍ୟଞ୍ଜକ 'ଉତ୍କଳ' ନାମରେ ନାମିତ କରିଥିଲେ ।

ପ୍ରଥମାବସ୍ଥାରେ କିନ୍ତୁ 'ଉତ୍କଳ' ଥିଲା 'ଉଡ୍ର ବିଷୟ' ଏକ କ୍ଷୁଦ୍ର ଜନପଦ । ବୌଦ୍ଧ ଜାତକରେ ଲେଖା ଅଛି—'ତସ୍ମିଂ ସମୟେ ତପସ୍ସୁ ଭଲ୍ଲିକ ନାମା ଦ୍ୱେ ବଣିଜା ସକଟ ସତେ ହିଂ ଉକ୍କଳ ଜନପଦା ମଜ୍ଝିମ ଦେଶଂ ଗଚ୍ଛଂନ୍ତି' । ଏଠାରେ 'ମଧ୍ୟଦେଶ'କୁ 'ମଜ୍ଝିମ ଦେଶ' କହି ଉତ୍କଳକୁ 'ଉକ୍କଳ ଜନପଦ' ବୋଲି ଦର୍ଶାଇବା ଦ୍ୱାରା ପ୍ରଥମେ ତାହା 'ଜନପଦ' ଏବଂ ପରେ 'ଅଂଚଳ' ଅର୍ଥରେ ପ୍ରଯୁକ୍ତ ହୋଇଥିଲା ବୋଲି ଜଣାପଡ଼େ । ତେଣୁ ଏ ଭୂଭାଗ ପ୍ରଥମେ 'କଳିଙ୍ଗ' ଏବଂ ପରେ 'କୃଷିପ୍ରଧାନ ଜାତି' ନାମରେ 'ଉଡ୍ର ବିଷୟ' ରୂପେ ଚିହ୍ନିତ ହୋଇ ଶେଷରେ ଆର୍ଯ୍ୟ ବ୍ରାହ୍ମଣଙ୍କ ଦ୍ୱାରା ଉତ୍କଳ ନାମରେ ନାମିତ ହୋଇଛି ବୋଲି ସ୍ପଷ୍ଟ ଅନୁମିତ ହୁଏ । ସେହି କାରଣରୁ ଏହା କେତେବେଳେ 'କଳିଙ୍ଗ', କେତେବେଳେ 'ଉଡ୍ର' ଓ ଆଉ କେତେବେଳେ 'ଉତ୍କଳ' ବୋଲି ବୈଦିକ, ସଂସ୍କୃତ, ପାଳି, ପ୍ରାକୃତ ସବୁ ଗ୍ରନ୍ଥରେ ଉଲ୍ଲିଖିତ ।

ମନେହୁଏ 'ଜନପଦ' ଭାବେ 'ଉତ୍କଳ' ଏବର ଯାଜପୁର ଅଂଚଳକୁ ପ୍ରଥମେ ବୁଝାଉଥିଲା । ଖ୍ରୀ:ପୂ: ଷଷ୍ଠ ଶତାବ୍ଦୀ ବେଳକୁ ଆର୍ଯ୍ୟବ୍ରାହ୍ମଣ ଗୋଷ୍ଠୀର ଧାରାବାହିକ ଆଗମନ ଓ ଯଜ୍ଞାଦି କ୍ରିୟାନୁଷ୍ଠାନଦ୍ୱାରା ଏହା ପବିତ୍ର ବିବେଚିତ ହୋଇଥିଲା । ସ୍ଥାନୀୟ ଅଧିବାସୀଙ୍କ ଦ୍ୱାରା ପାରମ୍ପରିକ ଭାବରେ ଉପାସିତ ଗ୍ରାମଦେବତା 'ବିରଜା'ଙ୍କୁ ବ୍ରାହ୍ମଣ ସମାଜ ଯଜ୍ଞପୀଠାଧିଷ୍ଠାତ୍ରୀ ଭାବେ 'ଆଜ୍ୟପା' ନାମ ଦେଇ ବୈଦିକ ରୀତିରେ ପୂଜାର୍ଚ୍ଚନାଦି କରିଥିଲେ । ତେଣୁ 'ବିରଜା' ଓ 'ଆଜ୍ୟପା' 'ବିରଜା'ଙ୍କ ନାମାନ୍ତର ବୋଲି ବୁଝାଯାଇଛି । 'ଆଜ୍ୟପା' ଶବ୍ଦରୁ ଦେବୀଙ୍କର ବୈଦିକତା ସ୍ପଷ୍ଟ ପ୍ରକଟିତ ହୁଏ । 'ଆଜ୍ୟପା' ଅର୍ଥ ଯେ 'ଆଜ୍ୟ ବା ଘୃତ ପାନ କରନ୍ତି । ଏହା ଦ୍ୱାରା ସେ 'ଯାଗ ସମ୍ଭୂତା' ବୋଲି

ଯେପରି ପ୍ରମାଣିତ ହୁଅନ୍ତି, ସେହିପରି ଯଜ୍ଞାଧିଷ୍ଠାତ୍ରୀ ଭାବେ ମଧ୍ୟ ଯାଗସ୍ଥଳୀ 'ଯାଜନଗର' ରୂପେ ଅଭିହିତ ହୋଇ ଆଦ୍ୟାଦେବୀ 'ବିରଜା'ଙ୍କ ଅଧିଷ୍ଠାନ ହେତୁ 'ବିରଜାକ୍ଷେତ୍ର' ନାମରେ ବି ପ୍ରସିଦ୍ଧ ଥିଲା । ସଂସ୍କୃତ ମହାଭାରତରେ ଉକ୍ତ ଅଛି, "କଳିଙ୍ଗ ରାଜ୍ୟର ବୈତରଣୀ ନଦୀ କୂଳରେ 'ବିରଜାକ୍ଷେତ୍ର' ଅବସ୍ଥିତ । ଖ୍ରୀ: ପୂ: ତୃତୀୟ ଶତକର ପ୍ରାକ୍-କାଳରେ ମହାଭାରତ ଲେଖା ଶେଷ ହୋଇଛି ବୋଲି ପଣ୍ଡିତମାନେ କହନ୍ତି । କିନ୍ତୁ ବ୍ରହ୍ମପୁରାଣରେ ବର୍ଣ୍ଣିତ ଅଛି, 'କୁରୁ ପାଣ୍ଡବ ଯୁଦ୍ଧରେ ଯୋଗ ନଦେଇ କୃଷ୍ଣଭ୍ରାତା ବଳରାମ ତୀର୍ଥାଟନ ଉଦ୍ଦେଶ୍ୟରେ 'ଯାଜନଗର'ରେ ପହଞ୍ଚିଥିଲେ । ତତ୍ରତ୍ୟ ଯାଜ୍ଞିକ ବ୍ରାହ୍ମଣ-ମାନେ ତାଙ୍କୁ ପ୍ରାର୍ଥନା କଲେ ଯେ ଗିରିଶିଖରବାସୀ 'କନ୍ଦରାସୁର' ସର୍ବଦା ଯାଗଯଜ୍ଞ ଧ୍ୱଂସ କରିବାରେ ଲାଗିଛି—ସେ ଉପଦ୍ରବରୁ ତାଙ୍କୁ ରକ୍ଷା କରନ୍ତୁ । ବଳରାମ ଯାଇ ତାକୁ ଯୁଦ୍ଧରେ ପରାସ୍ତ ଓ ନିହତ କଲେ ।' ଏଠାରେ 'କନ୍ଦରାସୁର' ଶବ୍ଦ ଗୁହାବାସୀ ଶବର ସଂପ୍ରଦାୟକୁ ସୂଚିତ କଲାପରି ଲାଗେ । କାରଣ ସେହିମାନେ ପ୍ରଥମାବସ୍ଥାରେ ଯାଗଯଜ୍ଞାଦି କର୍ମର ପ୍ରବଳ ବିରୋଧ କରି ଆସିଥିଲେ । ରୂପକଛଳରେ ତାଙ୍କୁ 'କନ୍ଦରା ନିବାସୀ ଅସୁର' ଭାବେ ଚିତ୍ରଣ କରାହୋଇଛି । ବସ୍ତୁତଃ 'ଉଡ୍ର' ଦେଶ ମୂଳ ଅଧିବାସୀଙ୍କ ଦ୍ୱାରା ବ୍ରାହ୍ମଣ-ମାନେ ସଭ୍ୟତାର ନବୋନ୍ମେଷକାଳରେ ବହୁ ବାଧା ବିଘ୍ନର ସମ୍ମୁଖୀନ ହୋଇଥିଲେ । ସେଥିପାଇଁ ବୌଦ୍ଧଧର୍ମୀମାନେ କମ୍ ପରିମାଣରେ ଦାୟୀ ନଥିଲେ । ବୌଦ୍ଧ 'ସଦ୍ଧର୍ମ ପୁଣ୍ଡରୀକ' ଗ୍ରନ୍ଥରେ ଲେଖାଅଛି—'ଗୌତମବୁଦ୍ଧ' 'ବିରଜା ମଣ୍ଡଳ'ରେ 'ପଦ୍ମପ୍ରଭ' ନାମଧରି ଜନ୍ମଗ୍ରହଣ କରିବେ ।' ପ୍ରତିଦ୍ୱନ୍ଦ୍ୱୀ ବ୍ରାହ୍ମଣ୍ୟ ଧର୍ମର ପୀଠସ୍ଥଳୀ ମାନଙ୍କରେ ହିଁ 'ବୁଦ୍ଧଦେବ' ଜନ୍ମନେଇଥିବା କଥା ବୌଦ୍ଧଗ୍ରନ୍ଥ ଗୁଡ଼ିକରେ ସର୍ବତ୍ର ଲିପିବଦ୍ଧ—ଯେହେତୁ ସେହି ଧର୍ମକୁ ନିନ୍ଦିତ କରିବା ସକାଶେ ସେମାନେ ଯତ୍‌ପରୋନାସ୍ତି ଚେଷ୍ଟା କରି ଆସୁ-ଥିଲେ । ଏଥିରୁ ମଧ୍ୟ 'ବିରଜାକ୍ଷେତ୍ର' ବ୍ରାହ୍ମଣମାନଙ୍କ ପୀଠ ସ୍ଥଳୀ ଥିଲା ବୋଲି ପ୍ରମାଣିତ ହୁଏ । ଏହାଛଡ଼ା ଶାରଳା ମହାଭାରତରୁ ସୂଚନା ମିଳେ—'କଳିଙ୍ଗ' ଉତ୍ତର ଓ 'ଦକ୍ଷିଣ' ଭାବେ ଦୁଇ ଭାଗରେ ବିଭକ୍ତ ଥିଲା । ଉତ୍ତର କଳିଙ୍ଗକୁ 'ବିରଜାମଣ୍ଡଳ' ଏବଂ ଦକ୍ଷିଣ ଭାଗକୁ 'ଜଗନ୍ନାଥ ମଣ୍ଡଳ' ନାମରେ ଅଭିହିତ କରାଯାଇଥିଲା । ଚିତ୍ରୋତ୍ପଳା ବା ମହାନଦୀ ଥିଲା ଉଭୟର ସୀମାରେଖା । ଅତଏବ କୁହାଯାଇପାରେ ଯେ 'କଳିଙ୍ଗ' ଶବ୍ଦ ଆଗଙ୍ଗା ଗୋଦାବରୀ ଭୂଖଣ୍ଡ ଅର୍ଥରେ ପ୍ରଯୁକ୍ତ ଥିଲାବେଳେ 'ଉତ୍କଳ' ଗଙ୍ଗା ଓ ମହାନଦୀ ମଧ୍ୟାନ୍ତର ଭାଗକୁ ସଂକେତିତ କରୁଥିଲା ଏବଂ 'ଉଡ୍ର' ଥିଲା 'ଉତ୍କଳ'ର ନାମାନ୍ତର । ଏଣୁ ତିନୋଟିଯାକ ଶବ୍ଦ ପରବର୍ତ୍ତୀ ରଚନାମାନଙ୍କରେ ସମାନ ଅର୍ଥରେ ପ୍ରୟୋଗ ହୋଇ ଆସିଥିବା ଦୃଷ୍ଟି ଗୋଚର ହୁଏ ।

# ଚତୁର୍ଥ ପ୍ରକାଶ :

# କଳିଙ୍ଗର ପ୍ରଜା ଓ ପ୍ରକୃତି

ବିଭିନ୍ନ ପର୍ଯ୍ୟାୟରେ ଏକା ଭୂଖଣ୍ଡ କଳିଙ୍ଗ ଉଡ୍ର ଓ ଉତ୍କଳ ନାମରେ କିପରି ପରିଚିତ ହୋଇ ଆସିଛି ତାହା ପୂର୍ବରୁ କୁହାଗଲା । ବର୍ତ୍ତମାନ ତାହାର ଆଭ୍ୟନ୍ତରୀଣ ପରିସ୍ଥିତି ସମ୍ବନ୍ଧରେ ଆଲୋଚନା କରାଯାଉଛି । ଗ୍ରାମପ୍ରଧାନ ରାଜ୍ୟ ଥିଲେ ସୁଦ୍ଧା କଳିଙ୍ଗ ପରବର୍ତ୍ତୀ କାଳରେ ନଗରପ୍ରଧାନ ରାଜ୍ୟରେ ପରିଣତ ହୋଇଥିଲା । 'ତୋଷଳି' ଥିଲା ତାହାର ମୂଳ ରାଜଧାନୀ । ତାହା ଭୁବନେଶ୍ୱର ନିକଟବର୍ତ୍ତୀ ଧଉଳି ପାହାଡ଼ ତଳକୁ ଅବସ୍ଥିତ ଥିବା କଥା ଅଶୋକଙ୍କ କଳିଙ୍ଗ ଶିଳାଲେଖ ଦ୍ୱାରାରୁ ପ୍ରତିପାଦିତ ହୁଏ । 'ଧଉଳି' କଳିଙ୍ଗର ନାମାନ୍ତର ମାତ୍ର । ଜିଲ୍ଲା ଅର୍ଥରେ ମହୀଶୂର, ଭାଗଲପୁର, ସମ୍ବଲପୁର ପରି ମୁମ୍ବଇ, ମାଡ୍ରାସ୍ ପ୍ରଭୃତି ସହର ନାମରେ ରାଜ୍ୟମାନ ଚିହ୍ନିତ ହେବାପରି 'କଳିଙ୍ଗ' ଅର୍ଥରେ 'ତୋଷଳି' ଶବ୍ଦ ବ୍ୟବହୃତ ହୋଇଥିବା ବିଚିତ୍ର ନୁହେଁ । ଖ୍ରୀ: ପୂ: ପଞ୍ଚମ ଶତାବ୍ଦୀରେ କଳିଙ୍ଗାଧିପତିଙ୍କ ଆମନ୍ତ୍ରଣ କ୍ରମେ ତୀର୍ଥଙ୍କର ବର୍ଦ୍ଧମାନ 'ତୋଷଳି'ରେ ଧର୍ମ ପ୍ରଚାର କାର୍ଯ୍ୟ ସାରି 'ମୋଷଳି'କୁ ଗମନ କରିଥିଲେ ବୋଲି ଜୈନ 'ଆବସକ-ଚୁଣ୍ଣି'ରେ ଲେଖାଅଛି । ସେକାଳ ମୋଷଳି ଏବକାର ଆନ୍ଧ୍ର ରାଜ୍ୟ ଭିତରେ 'ମୁସଲିପଟ୍ଟନମ୍' ଛଡ଼ା ଆଉ କିଛି ହୋଇ ନପାରେ । ଟଲେମିଙ୍କ ଲେଖାରେ ମଧ୍ୟ 'ମୋଷଳି'ର ନାମୋଲ୍ଲେଖ ରହିଛି । ଐତିହାସିକ ମେକ୍ କିଣ୍ଡ୍ଲ୍ ଗୋଦାବରୀ ଓ କୃଷ୍ଣା ନଦୀ ମଧ୍ୟସ୍ଥ ଅଞ୍ଚଳକୁ ମୋଷଳି ରୂପେ ଚିହ୍ନିତ କରନ୍ତି । ବିଚାରକଲେ ଏ ମତଟି ନିର୍ଭୁଲ ମନେହୁଏ—କାରଣ ଗୋଦାବରୀର ଉତ୍ତର ପଟେ କଳିଙ୍ଗରେ ପ୍ରଚାର କର୍ମ ସାରି ଦକ୍ଷିଣ ପଟର ମୋଷଳିକୁ ସେ ଯାଇଥିବା ବିଶେଷ ସମ୍ଭାବନା । ସେତେବେଳକୁ ତାହା ରାଜଧାନୀ କିମ୍ବା ରାଜ୍ୟର ନାମ ଥିଲା କହିହୁଏ ନାହିଁ— ସମ୍ଭବତଃ ତାହା ରାଜଧାନୀ ସହରକୁ ଲାଗିରହିଥିଲା । 'ମୁସଲିପଟ୍ଟନମ୍' ଶବ୍ଦରୁ ମଧ୍ୟ ସେଇଆ ଅନୁମିତ ହୁଏ । 'ପଟ୍ଟନମ୍' 'ପାଟଣା' ଶବ୍ଦର ବିପରିଣାମ ମାତ୍ର । ଏହାର ଅର୍ଥ, 'ବନ୍ଦର ନିକଟ ବସ୍ତି' । ପୁରୀ ଜିଲ୍ଲାର 'ମାଣିକପାଟଣା', 'ବାଲିପାଟଣା', ମାନ୍ଦ୍ରାଜର 'ଚେନାପାଟଣା', ବିହାର ରାଜଧାନୀ 'ପାଟଣା', ଆନ୍ଧ୍ର ପ୍ରଦେଶର 'ବିଶାଖାପାଟଣା', ଶ୍ରୀକାକୁଲମ୍ ଜିଲ୍ଲା 'କଳିଙ୍ଗ ପାଟଣା' ପ୍ରଭୃତି ପ୍ରୟୋଗରୁ ସେହି ସୂଚନା ମିଳେ ।

ମୂଳତଃ 'ପାଟଣା' ମୁଣ୍ଡାରି ଭାଷା ପରିବାରର ଶବ୍ଦ ବୋଲି ମନେହୁଏ । ଆଦିବାସୀ ଭାଷା ଗୋଷ୍ଠୀରେ ଏତାଦୃଶ ଶବ୍ଦର ବହୁଳ ପ୍ରଚଳନ ରହିଆସିଥିଲା । ପାଟଣା, ପାଟକ, ପାଟ, ପାଟା, ପଟୁ, ପୁଟୁ, ପାଟୁ, ପଟ ପ୍ରଭୃତି ଏବେ ବି 'ଦେଶ୍ୟ' ଶବ୍ଦରୂପେ ଓଡ଼ିଆ

ଭାଷାରେ ପ୍ରଚଳିତ । ଏ ଜାତୀୟ ବହୁ କାଳିଙ୍ଗୀ ଶବ୍ଦ ଗୋଦାବରୀ ଉତ୍ତରପଟ ତେଲୁଗୁ ଭାଷାଭାଷୀଙ୍କ ମୁହଁରେ ମଧ୍ୟ ବ୍ୟବହାର ହୋଇ ଆସୁଛି । ତାଦୃଶ ଶବ୍ଦାବଳୀକୁ ଆନ୍ଧ୍ର ଭାଷା ଭିତରେ 'କାଳିଙ୍ଗୀ ଉପଭାଷା' (dialect) ବୋଲି କୁହାଯାଏ । ସେଗୁଡ଼ିକର ଅର୍ଥହେଲା, ପାଟଣା = ବନ୍ଦର ନିକଟ ବସ୍ତି, ପାଟକ = ପୈତୃକ ବୃତ୍ତି, ପାଟ = generation, ପାଟା = ଚନ୍ଦାମୁଣ୍ଡ, ପୁଟୁ = କାଦୁଅ, ପୁଟୁ = ଗ୍ରାମ, ପାଟୁ = ଅଳଙ୍କ୍ରୁ, ପଟ = ପାର୍ଶ୍ୱ । ଏଣୁ 'ପଟନମ୍' ଯେ 'ବନ୍ଦର ସହର' ସୂଚକ ଶବ୍ଦ, ଏଥିରେ ସନ୍ଦେହ ନାହିଁ । ପୁଣି ମଧ୍ୟ ମହାବୀରଙ୍କ 'ତୋଷଲି'ରୁ 'ମୋଷଲି' ଯିବା ଉଲ୍ଲେଖ ଥିବାଯୋଗୁ କେଉଁ ତୋଷଳିରୁ ତାଙ୍କ ଯାତ୍ରା ଆରମ୍ଭ ହୋଇଥିଲା ତା' ବି ଅନୁମାନ କରିହୁଏନାହିଁ । କାରଣ ଉତ୍ତର-ତୋଷଳି ଓ ଦକ୍ଷିଣ-ତୋଷଳି ରୂପେ ତାହାର ଦୁଇଟି ନାଁ ଦେଖିବାକୁ ମିଳେ । ଖ୍ରୀ: ପୂ: ସପ୍ତମ ଶତାବ୍ଦୀରୁ ଭୂତପୂର୍ବ-କଳିଙ୍ଗ ଅଣ୍ଟକ ଶାସନାଧୀନ ଥିବାହେତୁ କଳିଙ୍ଗ ଉତ୍ତର ଓ ଦକ୍ଷିଣ ରୂପେ ଦୁଇ ଭାଗରେ ବିଭକ୍ତ ହୋଇ ପଡ଼ିଥିଲା ଏବଂ ତା'ର ଅନୁସରଣରେ 'ତୋଷଳି' ମଧ୍ୟ । ଭୂତପୂର୍ବ କଳିଙ୍ଗ ଅତିକ୍ରମ ନକଲେ ସ୍ଥଳପଥ ଦେଇ 'ମୋଷଳି' ଯିବା ସହଜ ନୁହେଁ । ମିତ୍ରରାଜାଙ୍କ ଶତ୍ରୁ ରାଜ୍ୟରେ ପ୍ରବେଶ କରି ସ୍ଥଳମାର୍ଗରେ 'ମୋଷଳି' ଯିବା ଅପେକ୍ଷା ଜଳପଥ ଯାତ୍ରାକୁ ଜୈନଗୁରୁ ବାଞ୍ଛନୀୟ ମନେକରିଥିବେ । ତେଣୁ ସିଧା-ସଳଖ ତୋଷଳିରୁ ମୋଷଳି ଯିବାର ଉଲ୍ଲେଖ ରହିଛି । ଯଦି ଦକ୍ଷିଣ-ତୋଷଳିରୁ ଯାତ୍ରାରମ୍ଭ ହୋଇଥାଏ, ତେବେ ବଂଶଧାରା ନଦୀ ମୁହାଣରେ 'କଳିଙ୍ଗ ପାଟଣା' ନଚେତ୍ ଉତ୍ତର-ତୋଷଳି ନିକଟସ୍ଥ ଚନ୍ଦ୍ରଭାଗା ନଦୀ ମୁହାଣ 'ତୋଷଲଙ୍ଗ୍' ବନ୍ଦରଠାରୁ ତାହା ହୋଇଥିବା ସମ୍ଭବ ।

ମଗଧାଧିପତି ଚଣ୍ଡାଶୋକଙ୍କ ଶାସନକାଳ ପର୍ଯ୍ୟନ୍ତ କପିଶା ଓ ଚନ୍ଦ୍ରୋତ୍ପଳା ନଦୀ ମଧ୍ୟସ୍ଥ 'ଉତ୍କଳିଙ୍ଗ' ଏକ ସୁ-ସଂସ୍କୃତ ରାଜ୍ୟ ରୂପେ ପ୍ରତିଷ୍ଠା ଲାଭ କରିଥିଲା । ଏହା ମାଗଧୀ ସଂସ୍କୃତି ଦ୍ୱାରା ପ୍ରଭାବିତ ହେଲେ ମଧ୍ୟ ଦକ୍ଷିଣ ଭାଗରେ ଅବକୃତ କାଳିଙ୍ଗୀ-ସଭ୍ୟତା ବିସ୍ତାର ଲାଭ କରିଥିଲା । ସାମାଜିକ, ସାଂସ୍କୃତିକ, ରାଜନୈତିକ, ଆର୍ଥିକ ସବୁ କ୍ଷେତ୍ରରେ ଏହାର ସ୍ୱତନ୍ତ୍ର ବିଗ୍ରହ ଧାରା ଥିବାବେଳେ ମହାନଦୀ ଉତ୍ତର ପଟକୁ 'ଉଡ୍ର ମାଗଧୀ' ରୂପ ମିଶ୍ରିତ, ସଭ୍ୟତା ଗଢ଼ି ଉଠିଥିଲା । ତାକୁ ହିଁ କହନ୍ତି 'ଉତ୍କଳୀୟ ସଭ୍ୟତା' । ସେଥିଯୋଗୁ କାଳିଦାସ କପିଶାନଦୀ ପାରହେଲେ 'ଉତ୍କଳ' ଏବଂ ତା'ପରେ 'କଳିଙ୍ଗ' ରାଜ୍ୟ ବୋଲି ରଘୁବଂଶ କାବ୍ୟରେ ସୂଚନା ଦେଇଛନ୍ତି । ସେତେବେଳକୁ ମେଦିନୀପୁର ଅଞ୍ଚଳ ସମେତ ସମଗ୍ର ଉତ୍ତର-ଓଡ଼ିଶାକୁ ଉତ୍କଳ କୁହାଯାଉଥିଲା । ପାଣିନିଙ୍କ ଅଷ୍ଟାଧ୍ୟାୟୀ ସୂତ୍ର, ବୌଦ୍ଧଗ୍ରନ୍ଥ, ଜୈନଶାସ୍ତ୍ର, ଅଶୋକଙ୍କ ଶିଳାନୁଶାସନମାନଙ୍କରୁ ଏହାର ଆଭାସ ମିଳେ ।

ଆଧୁନିକ ସମୃଦ୍ଧ ରୂପ ଉପରେ ଦୃଷ୍ଟି ରଖି ଯେପରି ଅଶୋକ-ପୂର୍ବ-କଳିଙ୍ଗର କଳ୍ପନା କରି ନହୁଏ ପୂର୍ବରୁ ସୂଚନା ଦିଆହୋଇଛି । ପ୍ରଥମାବସ୍ଥାରେ ଏ ଘନ ଜଙ୍ଗଲ ପରିବେଷ୍ଟିତ ପାର୍ବତ୍ୟ ଭୂଭାଗ ଥିଲା ଏବଂ କୃଷି ଉପଯୋଗୀ ସମତଳ ଅଞ୍ଚଳ ମଧ୍ୟ ଥିଲା ଅରଣ୍ୟାନୀ

ପରିପୂର୍ତ୍ତି । ଦଳ ଦଳ ଶିକାରୀ, ବନବାସୀ ଓ କୃଷିଜୀବୀ ତୃଣକାଷ୍ଠାଦି ସାହାଯ୍ୟରେ ସ୍ଥାନେ ସ୍ଥାନେ କୁଟୀର ରଚି ରହୁଥିଲେ । ଆବଶ୍ୟକୀୟ ଗ୍ରାସାଚ୍ଛାଦନ ଅଭାବ ଉପଲବ୍ଧି ନହେଲା ଯାଏ ସେଠାରେ ରହି ପୁଣି ନୂତନ ସ୍ଥାନ ସନ୍ଧାନରେ ସପରିବାର ଉଠିଯାଉଥିଲେ । ଅଭାବ ପରିଲକ୍ଷିତ ହେଲା ମାତ୍ରେ କାଳବିଳମ୍ବ ନକରି ସେଠାରୁ ପଳାୟନ କରୁଥିଲେ । ମୋଟାମୋଟି ସେମାନେ ଥିଲେ ଏକପ୍ରକାର ଯାଯାବର ଶ୍ରେଣୀର । ସେହି କାରଣରୁ ସେମାନଙ୍କ ରହଣିସ୍ଥାନ ବା ଗ୍ରାମର କୌଣସି ନିର୍ଦ୍ଦିଷ୍ଟ ନାମ ଦୀର୍ଘକାଳ ଅପରିବର୍ତ୍ତିତ ରହୁ ନଥିଲା । ତଥାକଥିତ ଜାତୀୟ ସଂହତି, ଜାତୀୟ ଭାବନା, ଜାତୀୟ ମମତା ତାଙ୍କ ମନରେ ବିଶେଷ ମାତ୍ରାରେ ଜାଗରିତ ହୋଇନଥିଲା । ଆବଶ୍ୟକ ବେଳେ ସ୍ଥାନୀୟ ବୟୋବୃଦ୍ଧ ଓ ଅଭିଜ୍ଞ ବ୍ୟକ୍ତିଙ୍କୁ ମାନ୍ୟତା ପ୍ରଦର୍ଶନ ପୂର୍ବକ ତାଙ୍କଠାରୁ ପରାମର୍ଶ ନିଆଯାଉଥିଲା । ନିଷ୍କପଟ ସ୍ୱଭାବ ଓ ସରଳ ବିଶ୍ୱାସ ହେତୁ କାହାପ୍ରତି କାହାର ଅହେତୁକ ବୈରଭାବ ନଥିଲା । ନିରଳସ ପରିଶ୍ରମ ବଳରେ ସମସ୍ତେ ସ୍ୱ ସ୍ୱ ଉଦର ପୋଷଣ କରୁଥିଲେ । ତାହା ଥିଲା ସେମାନଙ୍କ ଜାତିଗତ ଗୁଣ । ଏବେ ସୁଦ୍ଧା ସେ ଜାତିର ଦୈନିକ କ୍ରିୟାକଳାପ ଓ ସ୍ୱଭାବଗୁଣ ପର୍ଯ୍ୟବେକ୍ଷଣ କଲେ ସତ୍ୟତା ହୃଦୟଙ୍ଗମ କରିହୁଏ ।

କିନ୍ତୁ ଯେଉଁମାନେ ମଗଧ ଆଡ଼ୁ ଆସି ସ୍ଥାୟୀ ଅଧିବାସୀ ରୂପେ ଗଣ୍ୟ ହୋଇଥିଲେ ସେମାନଙ୍କ ଚରିତ୍ର ଥିଲା ଭିନ୍ନ ଧରଣର । ସେମାନେ ଥିଲେ ଅଧିକତର ଚତୁର ଓ ସ୍ୱାର୍ଥପର । ଏମାନଙ୍କ ପରି ସରଳବିଶ୍ୱାସୀ କିମ୍ବା ସ୍ପଷ୍ଟବାଦୀ ନଥିଲେ ସେମାନେ । ତାହା ହେବା ମଧ୍ୟ ସ୍ୱାଭାବିକ । ଅହେତୁକ ଦୁଃଖ ଦୁର୍ଦ୍ଦଶାଗ୍ରସ୍ତ ଦେଶତ୍ୟାଗୀ ଜାତି ଅପରପ୍ରତି ନିର୍ବିଘ୍ନରେ ଆସ୍ଥାବାନ୍ ହୋଇପଡ଼ିବା ସହଜ ନୁହେଁ । ଜୀବିକାର୍ଥୀ ସ୍ୱାର୍ଥସର୍ବସ୍ୱ ହେବା ନିତାନ୍ତ ସ୍ୱାଭାବିକ । ତାହାହିଁ ଘଟିଛି ସେମାନଙ୍କର । ସ୍ଥାନୀୟ ଅଧିବାସୀ, ପକ୍ଷାନ୍ତରେ ତାଦୃଶ ଦୁରବସ୍ଥାର ସମ୍ମୁଖୀନ ହୋଇ ନଥିବା ହେତୁ ତାଙ୍କ ସ୍ୱଭାବରେ କୌଣସି ପରିବର୍ତ୍ତନ ଆସି ନଥିଲା । ପୂର୍ବବତ୍ ସରଳ ଥିଲେ ସେମାନେ । ତେଣୁ ଆଗନ୍ତୁକଙ୍କ ପକ୍ଷେ ସ୍ୱାର୍ଥସାଧନ କରିବା କଷ୍ଟକର ନଥିଲା । ନବାଗତ ଗୋଷ୍ଠୀ ଉତ୍କୃଷ୍ଟ ସ୍ଥାନମାନ ବାଛି କୌଶଳପୂର୍ବକ ଆପଣାର କରି ଇତରଜାତିଙ୍କୁ ଅରଣ୍ୟବାସୀ କରାଇବାରେ କୃତକାର୍ଯ୍ୟ ହୋଇଥିଲେ । ଜୀବିକାର୍ଜ୍ଜନର ନିରାପଦ ସ୍ଥାନ ମନେକରି ଶବର ଜାତି ମଧ୍ୟ ସପରିବାର ଜଙ୍ଗଲ ଭିତରକୁ ଉଠି ଆସିବାକୁ କୁଣ୍ଠିତ ହେଲେ ନାହିଁ । ଫଳରେ ଆରଣ୍ୟକ ଓ ସମତଳବାସୀ ଭାବେ ଦୁଇଟି ପ୍ରଜାଗୋଷ୍ଠୀ ସୃଷ୍ଟି ହୋଇପଡ଼ିଲା । ବୌଦ୍ଧ ଓ ଜୈନ ଗ୍ରନ୍ଥରେ ମଧ୍ୟ ଉତ୍କଳରେ 'ବସ୍ସ ଓ ଭଞ୍ଜ' (ବୈଶ୍ୟ ଓ ବନ୍ୟ) ନାମରେ ଦୁଇଟି ଜାତି ଥିବାର ସଙ୍କେତ ରହିଛି ।

ଉକ୍ତ ଦ୍ୱିବିଧ ଜୀବନଧାରା ବ୍ୟତୀତ ପରବର୍ତ୍ତୀ ଆର୍ଯ୍ୟ ବ୍ରାହ୍ମଣ ଜାତିର ସମାଗମ ଏଠାରେ ଆଉ ଏକ ନୂତନ ସଂସ୍କୃତିର ସୂତ୍ରପାତ କରେ । ସମକାଳୀନ ଭାରତୀୟ ସଂସ୍କୃତି ମଧ୍ୟରେ ବ୍ରାହ୍ମଣ୍ୟ ସଂସ୍କୃତି ଥିଲା ଅଧିକତର ଉନ୍ନତ—ସର୍ବଶ୍ରେଷ୍ଠ । ଦୈନନ୍ଦିନ ଜୀବନଚର୍ଯ୍ୟାରୁ ଆରମ୍ଭ କରି ଗଭୀର ଆଧ୍ୟାତ୍ମିକ ତତ୍ତ୍ୱ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଏହାର ଉତ୍କୃଷ୍ଟତା

ପ୍ରତିପାଦିତ । ଇତର ଜାତି ସେଥିପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ । ତେଣୁ ସଂସ୍କାରଶୂନ୍ୟ କୃଷିଜୀବୀ ମନରେ ଉଚ୍ଚାଟ ଜନ୍ମାଇ ସମ୍ମାନ ଓ ଭକ୍ତିଭାଜନ ହେବା ବ୍ରାହ୍ମଣ୍ୟ ଜାତି ପକ୍ଷରେ କଷ୍ଟସାଧ୍ୟ ହେଲା ନାହିଁ । ଆର୍ଯ୍ୟେତର ଜାତି ମଧ୍ୟରେ ବର୍ଣ୍ଣିପତି ବ୍ରାହ୍ମଣଙ୍କ ଅବାଧ ପ୍ରବେଶ ଯୋଗୁଁ ପ୍ରଥମପକ୍ଷ ଆପଣାକୁ ଯେତିକ ଧନ୍ୟ ମନେକଲେ ଅପରପକ୍ଷ ଆଶାତୀତ ଭକ୍ତି ଓ ସମ୍ମାନର ଅଧିକାରୀ ହୋଇ ତତୋଽଧିକ ଆପ୍ୟାୟିତ ହେଲେ । ଦ୍ୱିବିଧ ଗୋଷ୍ଠୀର ସାନ୍ନିଧ୍ୟ ଫଳରେ ଯେଉଁ ସଂସ୍କୃତିର ଆବିର୍ଭାବ ଘଟେ ତାହାର ନାମ ହେଲା 'ଉତ୍କ୍ର ସଂସ୍କୃତି' ବା 'ଉତ୍କଳ ସଂସ୍କୃତି' ।

ଉତ୍ତର-କଳିଙ୍ଗରେ ଉପରୋକ୍ତ ପରିବର୍ତ୍ତନ ସଂଘଟିତ ହେଲାବେଳେ ଦକ୍ଷିଣ-କଳିଙ୍ଗର ଅବସ୍ଥା କି ପ୍ରକାର ଥିଲା ଦେଖିବାର କଥା । ଦକ୍ଷିଣ-କଳିଙ୍ଗ କହିଲେ ଏବର ପୁରୀ ଜିଲ୍ଲାରୁ ଆରମ୍ଭ କରି ଗଞ୍ଜାମ, ଫୁଲବାଣୀ, ବୌଦ୍ଧକନ୍ଧମାଳ, କୋରାପୁଟ ସମେତ ଆନ୍ଧ୍ର ପ୍ରଦେଶସ୍ଥ ଶ୍ରୀକାକୁଲମ୍ ଜିଲ୍ଲାକୁ ବୁଝାଉଥିଲା । ଏ ମଧ୍ୟରୁ ପୁରୀ, ଗଞ୍ଜାମ, ଶ୍ରୀକାକୁଲମ୍ ବଙ୍ଗୋପସାଗରକୁ ସ୍ପର୍ଶ କରି ରହିଥିଲାବେଳେ ଅନ୍ୟ ଅଞ୍ଚଳମାନ ଘଞ୍ଚ ଅରଣ୍ୟାନୀରେ ଆବୃତ ଥିଲା । ଶବର ଜାତି ଛଡ଼ା ଏଠାରେ ଅନ୍ୟ ଜାତିର କେହି ଥିଲାପରି ଲାଗେ ନାହିଁ । କାରଣ କଳିଙ୍ଗ ସମ୍ରାଟ ଖାରବେଳଙ୍କ ରାଜତ୍ୱ ପର୍ଯ୍ୟନ୍ତ ଏହାକୁ ଶବର ରାଜାମାନେ ହିଁ ଶାସନ କରୁଥିବା କଥା ଇତିହାସରୁ ଜଣାପଡ଼େ ।

ବାସସ୍ଥାନ ଭେଦରେ କଳିଙ୍ଗର ଶବର ସଂପ୍ରଦାୟକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ—ପାର୍ବତ୍ୟ, ଆରଣ୍ୟକ ଓ ଉପକୂଳବାସୀ । ସମସ୍ତଙ୍କର ଉତ୍ପତ୍ତି ମୂଳ ସମାନ ହେଲେ ସୁଦ୍ଧା ସ୍ଥିତି ଓ ବୃତ୍ତି ଭେଦରେ ସେମାନେ ସ୍ୱତନ୍ତ୍ର ଜଣାପଡ଼ନ୍ତି । ସେ ମଧ୍ୟରୁ ପ୍ରଥମ ହେଲେ ପର୍ବତ ଶିଖରବାସୀ ଶବର । ଏମାନେ ଯେପରି ସାହସୀ ସେହିପରି ସରଳବିଶ୍ୱାସୀ । ଜନ୍ତୁ ଶିକାର ସେମାନଙ୍କ ମୁଖ୍ୟକର୍ମ । ଶିକାର କାଳରେ ସେମାନଙ୍କ ସାହସର ପଟାନ୍ତର ନାହିଁ । ଇତର ସଂପ୍ରଦାୟଠାରୁ ଦୂରେଇ ରହିବାକୁ ସେମାନେ ସର୍ବଦା ପସନ୍ଦ କରନ୍ତି । ପର୍ବତଜାତ ବୃକ୍ଷଲତାରୁ ସଂଗୃହୀତ ଫଳ, ମୂଳ, କନ୍ଦ, ପତ୍ର ସେମାନଙ୍କ ଦୈନିକ ଆହାର । ମଦ୍ୟ ଜାତୀୟ ବୃକ୍ଷ ରସ ସେମାନଙ୍କର ଅତି ପ୍ରିୟ ପାନୀୟ । ଜନ୍ତୁ ମାଂସରେ ଅତ୍ୟନ୍ତ ଆଗ୍ରହୀ ସେମାନେ । ପାହାଡ଼ିଆ ସମତଳ ଅଞ୍ଚଳରୁ ଧାନ, ମକା, କାଙ୍ଗୁ, ମାଣ୍ଡିଆ ପ୍ରଭୃତି ଖାଦ୍ୟଶସ୍ୟ ବର୍ଷାଦିନେ ଉତ୍ପାଦନ କରନ୍ତି । ଢାଲୁ ସ୍ଥାନମାନଙ୍କରେ ଅଗ୍ନି ସଂଯୋଗ କରି ବେଳେବେଳେ ପୋଡ଼ୁ ଚାଷ କରୁଥିବା ଦେଖାଯାଏ । ପାହାଡ଼ ତଳିଆ ଜନସମାଜ ସହିତ ଏମାନଙ୍କର କ୍ୱଚିତ୍ ସମ୍ବନ୍ଧ ଦୃଷ୍ଟ ହୁଏ । ସେମାନଙ୍କ ବିଚାରରେ କୌଣସିଟା ସ୍ଥାୟୀ ବସତି ନଥିଲା । ଆୟ ପନ୍ଥା ଯେଉଁଠାରେ ସହଜ, ଖାଦ୍ୟ ପାନୀୟ ପ୍ରଚୁର, ଜୀବନ ନିରାପଦ ତାହା ହିଁ ତାଙ୍କର ବାସସ୍ଥଳୀ । ଅନ୍ୟଥା ସ୍ଥାନ ଛାଡ଼ି ପଳାନ୍ତି ପିଲାକବିଲାଙ୍କୁ ସାଙ୍ଗରେ ଧରି । ମୋଟାମୋଟି କହିଲେ ବର୍ତ୍ତମାନସର୍ବସ୍ୱ ଥିଲା ସେ ଜାତି । ତା ସତ୍ତ୍ୱେ କ୍ଷୁଦ୍ର ପଲ୍ଲୀ ଗଠନ କରି ସେମାନେ ବନ୍ଧୁ-ସ୍ୱଜନଙ୍କ ସହିତ ମିଳାମିଶି ରହୁ ନଥିଲେ ବୁଝେଁ, ଏକ ହେଉ ବା

ଏକାଧିକ ପରିବାର ଏକତ୍ର ବସବାସ କରି ରହିବା ବିଧି ପାର୍ବତ୍ୟ ସମାଜରେ ଏବେ ବି ପ୍ରଚଳିତ । ରହିଣି ସ୍ଥାନ ନାତିକ୍ଷୁଦ୍ର ଥିଲେ 'ଗୁଡ଼ା' କ୍ଷୁଦ୍ର ହେଲେ 'ଗୁମା' ନାମରେ ନାମିତ ହେଉଥିଲା । ଜଳ-ଫଳ ସୁଲଭ ପଥର ଆଢ଼ୁଆଳ ସ୍ଥାନ ଦେଖି ବାସ ନିର୍ମାଣ କରୁଥିଲେ । ନିକଟସ୍ଥ ଝରଣା, ପଥର କିମ୍ବା ପଶୁପକ୍ଷୀ ନାମାନୁଯାୟୀ ବସତିର ନାମକରଣ କରାଯାଉଥିଲା । ପ୍ରତ୍ୟେକ ଶବର ପଲ୍ଲୀ ଉକ୍ତ ପଦାର୍ଥ ମଧ୍ୟରୁ ଦୁଇଟି ମିଶ୍ରିତ ଶବ୍ଦର ସଂକ୍ଷିପ୍ତୀକୃତ ନାମ ଦ୍ୱାରା ଚିହ୍ନିତ ହେଉଥିଲା । ଦେଖାଯାଏ, ଏବେ ସୁଦ୍ଧା ଅଗମ୍ୟ ପାହାଡ଼ ଅଞ୍ଚଳରେ ତାଦୃଶ ନାମର ବହୁ ପଲ୍ଲୀ ବିଦ୍ୟମାନ ଅଛି ।

ଦ୍ୱିତୀୟ ଶ୍ରେଣୀର ଶବର ଥିଲେ ଆରଣ୍ୟକ । ଅରଣ୍ୟବାସୀ ଏମାନେ । ପର୍ବତ ପାଦର ଜଙ୍ଗଲପୂର୍ଣ୍ଣ ସ୍ଥାନରେ ଏମାନଙ୍କ ଅବସ୍ଥିତି । କୃଷି ଓ ବନଜାତ ଦ୍ରବ୍ୟ ସଂଗ୍ରହ ତାଙ୍କର ମୁଖ୍ୟ ବୃତ୍ତି । କ୍ଷୁଦ୍ର ବନ୍ୟପଶୁ ଓ ପକ୍ଷୀ ଶିକାର ଗୌଣକର୍ମ । ଶିକାରୋପଯୋଗୀ ଧନୁଶର, ଟେଣ୍ଟା, ଭୁଷା, ଭୁଜାଲି ଭଳି ମାରଣାସ୍ତ୍ର ପ୍ରସ୍ତୁତ କରିବାରେ ଧୁରନ୍ଧର ସେମାନେ । ପ୍ରଥମ ଗୋଷ୍ଠୀଠାରୁ ଏମାନଙ୍କ ବୃତ୍ତି ଅନେକାଂଶରେ ଅଲଗା ଥିଲା । ପାହାଡ଼ ତଳ, ନଦୀକୂଳ, ତଡ଼ାଗ, ପୁଷ୍କରିଣୀ ନିକଟ ଲତାବୃକ୍ଷପୂର୍ଣ୍ଣ ପଶୁଚାରଣ ଉପଯୋଗୀ ସ୍ଥାନ ବାଛି କୁଟୀର ରଚନା କରୁଥିଲେ ଏବଂ ପୁତ୍ରପୌତ୍ରାଦି କ୍ରମେ ସେଠାରେ ରହି ଆସୁଥିଲେ । ଅବସ୍ଥିତି ଓ ପରିସ୍ଥିତି ସୂଚକ ଶବ୍ଦଦ୍ୱାରା ଗ୍ରାମମାନ ଅଭିହିତ ହେଉଥିଲା । ପର୍ବତ ଶିଖରବାସୀ ଶବର ସମାଜଠାରୁ ଅପେକ୍ଷାକୃତ ଉନ୍ନତ ଜୀବନଯାପନ କରୁଥିଲେ ସେମାନେ । ଶବରଙ୍କ ତୁଲ୍ୟ ଜନଗହଳ ଅଞ୍ଚଳକୁ ପ୍ରାୟ ପସନ୍ଦ କରନ୍ତି ନାହିଁ । ଏଣୁ ବନ୍ଧୁକୁଟୁମ୍ବ ମଧ୍ୟରେ ଘନିଷ୍ଠ ବନ୍ଧନରେ ରହି ତାଙ୍କ ସମାଜ ଥିଲା ଗୋଷ୍ଠୀଗତ ଚିନ୍ତାଧାରାରେ ସମୁଜ୍ଜ୍ୱଳ । ଏହି ଗୋଷ୍ଠୀ କଳିଙ୍ଗରେ ଐକ୍ୟ ଓ ସଂହତିର ପଥପ୍ରଦର୍ଶକ ଥିଲା । ଯେମିତି ସ୍ୱାଭିମାନୀ ସେମିତି ଦୃଢ଼ମନା ସେ ଜାତି । କାଉଁର କାଠି ଭାଙ୍ଗିଯିବ ପଛେ ନଇଁବ ନାହିଁ । ଆରଣ୍ୟକ ହେଲେ ସୁଦ୍ଧା ବୈଷୟିକ ଜ୍ଞାନର ଅଭାବ ନଥିଲା ତାଙ୍କର ।

ଏତଦ୍‌ବ୍ୟତୀତ ଶବରଙ୍କର ଆଉ ଏକ ଶାଖା ହେଉଛି ଉପକୂଳବାସୀ 'ଓଡ଼' ସମ୍ପ୍ରଦାୟ । ସମୁଦ୍ରବେଳା ସଂଲଗ୍ନ ସମତଳ ଅଞ୍ଚଳ ମୁଖ୍ୟ ବାସସ୍ଥଳୀ ସେମାନଙ୍କର । କୃଷି ହେଲା ସମସ୍ତଙ୍କର ଅବଲମ୍ବନ । ତେଣୁ ପାର୍ବତ୍ୟ ଅଧିବାସୀଙ୍କ ଦ୍ୱାରା 'ଓଡ଼' ନାମରେ ଅଭିହିତ ହେଉଥିଲେ । ପ୍ରତ୍ୟେକ ପରିବାରର ଏକ ଏକ ସ୍ୱତନ୍ତ୍ର ବୃତ୍ତି ଥିଲା । ଯେ ଯେଉଁ ବୃତ୍ତିରେ ପାରଙ୍ଗମ ତଦନୁରୂପ ଶ୍ରେଣୀରେ ସେ ଗଣ୍ୟ ହେଉଥିଲେ । ସେମାନଙ୍କୁ 'ପାଟକ' କୁହାଯାଉଥିଲା ଏବଂ ଶ୍ରେଣୀର ନାମ ଥିଲା 'କୁଳ' । ବୃତ୍ତି ଅନୁସରଣରେ କୁଳମାନ ଗଠିତ ହେଉଥିଲା । ପୂର୍ବେ କଳିଙ୍ଗରେ ଏହି ଧରଣର ଛତିଶିଟି କୁଳ ଥିବା ଅନୁସନ୍ଧାନରୁ ଜଣାପଡ଼େ । ସେହିମାନେ ଥିଲେ ପ୍ରକୃତ 'କଳିଙ୍ଗ' ଶାଖା ଗୋଷ୍ଠୀ ଶବର, ଯାହାଙ୍କ ନାମାନୁସାରେ ଦେଶର ନାଁ 'କଳିଙ୍ଗ' ହୋଇଛି । ବିବିଧ ଶବର ଗୋଷ୍ଠୀ ମଧ୍ୟରେ ସେ ଜାତି ଥିଲା ସର୍ବୋତ୍କୃଷ୍ଟ, କାରଣ ଏକାଧାରରେ ସେ ଥିଲା କୃଷକ ଏବଂ ନାବିକ ଉଭୟ ।

କୃଷି କର୍ମରେ ଯେପରି ନୈପୁଣ୍ୟ ଅର୍ଜ୍ଜନ କରିଥିଲେ ବାଣିଜ୍ୟ କାରବାରରେ ସେପରି ବିଚକ୍ଷଣ ଥିଲେ । ସେତିକି ନୁହେଁ ଶାସନ, ସଂସ୍କୃତି, ସାମାଜିକତା, ସଂଗ୍ରାମ, କୌଶଳ କୌଣସି କ୍ଷେତ୍ରରେ ସେ ଅନୁନ୍ନତ ନଥିଲେ । ସେ ଯେତିକି ଉଦାର ସେତିକି ଦୁର୍ଦ୍ଦାନ୍ତ । ଏହାର ସଂଗଠନ ଶକ୍ତି ଅନନ୍ୟସାଧାରଣ । ସେକାଳ କଳିଙ୍ଗର ପ୍ରାକୃତିକ ଅବସ୍ଥିତି ଥିଲା ଏବକାଳଠାରୁ ସଂପୂର୍ଣ୍ଣ ବିପରୀତ । ଯେଉଁ ଅଞ୍ଚଳମାନ ଏବେ ବୃକ୍ଷଲତାଶୂନ୍ୟ ବିସ୍ତୀର୍ଣ୍ଣ ପ୍ରାନ୍ତର ରୂପେ ଜନାକୀର୍ଣ୍ଣ ନଗରୀ ଓ ମହାନଗରୀକୁ ସଗର୍ବେ ବକ୍ଷରେ ଧାରଣ କରିଥିବା ଦୃଷ୍ଟ ହୁଏ, ତାହା ଥିଲା ସେ କାଳର ସହସ୍ର ସହସ୍ର ଦନ୍ତାବଳ ଓ ହିଂସ୍ରଜନ୍ତୁପୂର୍ଣ୍ଣ ଦୁର୍ଗମ ଅରଣ୍ୟାନୀ । ମନରେ ପ୍ରତ୍ୟୟ ଆସେ ନାହିଁ ଅବଶ୍ୟ; କିନ୍ତୁ କୁରୁପାଣ୍ଡବ ଯୁଦ୍ଧର କଳିଙ୍ଗ ରାଜା ସହସ୍ରେ ଗଜାରୋହୀ ସେନା ନେଇ କୌରବ ପକ୍ଷରେ ଯୋଗ ଦେଇଥିବା ମିଥ୍ୟା ନୁହେଁ । ତାହା ମହାଭାରତରେ ସ୍ପଷ୍ଟ ବର୍ଣ୍ଣିତ ଅଛି । ଯେଉଁ ଦେଶ ସହସ୍ରେ ହସ୍ତୀ ପରଲାଗି ଉତ୍ସର୍ଗ କରିପାରେ କେତେ ସହସ୍ର ଗଜର ଅଧିନାୟକ ନଥିଲା ସେ ? କିଏ କହିବ ସେ କଥା ? ଏଣୁ ସହସ୍ର ସହସ୍ର ଗଜ ଅଧ୍ୟୁଷିତ କଳିଙ୍ଗ କି ଭୟଙ୍କର ଅଟବୀ ସଙ୍କୁଳ ଥିବ କଳ୍ପନା କରି ହୁଏ ନାହିଁ ।

ଏ ପ୍ରସଙ୍ଗରେ କଳିଙ୍ଗର ପ୍ରାକୃତିକ ପରିବେଶ ଓ ଭୌଗୋଳିକ ପରିସ୍ଥିତି ସଂପର୍କରେ ଟିକିଏ ସ୍ଥୂଳ ଧାରଣା ଆବଶ୍ୟକ । ଉତ୍ତର ଓ ଦକ୍ଷିଣଭାଗକୁ ବାଦ୍ ଦେଲେ ପରିସ୍ପର ସଂଲଗ୍ନ ପୁରାତ, ପର୍ବତମାଳା ଓ ଘଞ୍ଚ ଅରଣ୍ୟପୁଞ୍ଜ ଭିତରେ 'ମଧ୍ୟ-କଳିଙ୍ଗ'ର ଅବସ୍ଥିତି । ପଶ୍ଚିମକୁ ଫୁଲବାଣୀ, ଦକ୍ଷିଣକୁ ଶ୍ରୀକାକୁଳମ୍ ଓ କୋରାପୁଟ ଜିଲ୍ଲା, ଉତ୍ତର-ପୂର୍ବରେ ପୁରୀ ଜିଲ୍ଲା ସମେତ ସମଗ୍ର ଗଞ୍ଜାମ ଜିଲ୍ଲା ମାଳଅଞ୍ଚଳ ମଧ୍ୟରେ ଏହା ପରିବ୍ୟାପ୍ତ ଥିଲା । ଯୁଆଡ଼େ ଚାହିଁଲେ ଖାଲି ଜଙ୍ଗଲ ଆଉ ଜଙ୍ଗଲ—ଯାହା ଥିଲା ପୂର୍ବପଟକୁ ଚିଲିକା ହ୍ରଦ ଓ ବଙ୍ଗୋପସାଗର ସେତିକି । ପୁରୀ ନିକଟ ରତ୍ନଚିରୀନଦୀ ତଟେ ପ୍ରତିଷ୍ଠିତ କଳିଙ୍ଗେଶ୍ୱରୀ, ଫୁଲବାଣୀ ଜିଲ୍ଲାର 'କଳିଙ୍ଗା ଘାଟି', ଗଞ୍ଜାମର ଦକ୍ଷିଣ-ଉପାନ୍ତ 'କଳିଙ୍ଗ ନଗର', ଅନ୍ଧ୍ର ପ୍ରଦେଶରେ ଅବସ୍ଥିତ 'କଳିଙ୍ଗ ପାଟଣା' ନାଁଗୁଡ଼ିକରୁ ତାତ୍କାଳିକ କଳିଙ୍ଗର ବିସ୍ତୃତି ସମ୍ବନ୍ଧରେ ସମ୍ୟକ୍ ସୂଚନାମିଳେ ।

କଳିଙ୍ଗର କଳେବର ଦୁଇ ଭାଗରେ ବିଭକ୍ତ—ଉଚ୍ଚ ପାର୍ବତ୍ୟ ମାଳଭୂମି ଓ ଉପକୂଳବର୍ତ୍ତୀ ସମତଳ ଅଞ୍ଚଳ । ପଶ୍ଚିମର ପୂର୍ବଘାଟ ପର୍ବତମାଳାରୁ ଉତ୍ପନ୍ନ ଗିରିନଦୀ ଓ ଝରଣାମାନ ସମୁଦ୍ରପତ୍ତନର ଅଦୂରବର୍ତ୍ତୀ ଥିବା ଯୋଗେ ତାହାର ଗତିବେଗ ଯେତିକି ପ୍ରବଳ, ତାର ପ୍ଲାବନ କରିବାରେ ତତୋଽଧିକ ନିଷ୍ଠୁର । ଏଣୁ ଉପକୂଳ ଭୂଭାଗ ଥିଲା ଅତି ମାତ୍ରାରେ ଉର୍ବର । ଉଠାଣିଆ ଭିତରଭାଗ ପାହାଡ଼ିଆ ଥିବାହେତୁ ପ୍ରାକୃତିକ ଶୋଭାବର୍ଦ୍ଧକ ହେଲେ ସୁଦ୍ଧା ବିଶେଷ କୃଷି ଉପଯୋଗୀ ନଥିଲା । ବିଶେଷତଃ ସେଥିରେ ଦୁଇରୁ ପାଞ୍ଚହଜାର ଫୁଟ ପର୍ଯ୍ୟନ୍ତ ଉଚ୍ଚ ପର୍ବତମାଳ ଉତ୍ତର-ଉଦୟଗିରି ଓ ବାଲିଗୁଡ଼ା ପାର୍ବତ୍ୟ ଭୂଖଣ୍ଡ ଏବଂ ଦକ୍ଷିଣଭାଗ ଉଦୟଗିରି ସଂଲଗ୍ନ ପାରଳାଖେମୁଣ୍ଡି ସମତଳ ଅଞ୍ଚଳ ସହିତ ସଂଯୁକ୍ତ ଥିଲା ।

ତାଛଡ଼ା କୋରାପୁଟ ଜିଲ୍ଲାର ଦୀର୍ଘ ଲୁମ୍ବିତ ଉଚ୍ଚାବଚ ପର୍ବତଶ୍ରେଣୀ ଏବଂ ଫୁଲବାଣୀ ଜିଲ୍ଲାର ଅଗଣିତ ପାହାଡ଼ ପର୍ବତ ଏହାକୁ ବାହୁବେଷ୍ଟିତ କରି ରଖିଥିଲା । ଉକ୍ତ ଭାବରେ ବିଗ୍ଗ୍ରହ କଲେ ଏହାର ଶତକଡ଼ା ଅଶୀଭାଗ ବନାକୀର୍ଣ୍ଣ ଥିବା ଅନୁଭୂତ ହୁଏ । ପୁଣିମଧ୍ୟ ପରବର୍ତ୍ତୀ ରଚନାମାନଙ୍କରୁ ତାହା ଯେପରି ଅସଂଖ୍ୟ ପ୍ରକାର ବୃକ୍ଷ, ଲତା, ଦ୍ରୁମ ପରିଶୋଭିତ ଥିବା ସୂଚିତ ହୁଏ, ସେଥିରୁ ତାହାର ଉପ୍ଯୁକ୍ତ ବନ୍ଧୁତା ପ୍ରମାଣିତ ହୁଏ । ସେ ମଧ୍ୟରୁ ବଡ଼ବଡ଼ କେତେକର ନାମ ତଳେ ଦିଆଗଲା । ୧-ଆମ୍ବ, ୨-ଜାମ୍ବୁ, ୩-ଜମ୍ବୁ, ୪-ସଡ଼ଗୀ, ୫-ଜବାଙ୍ଗ, ୬-ଧୋବା, ୭-କୁମ୍ଭୀ, ୮-ଅସନ, ୯-ପିଆଶାଲ, ୧୦-ଲୋଧ, ୧୧-କରଞ୍ଜ, ୧୨-ଚାର, ୧୩-ସିମୁଳି, ୧୪-ସିଆଳି, ୧୫-ପଲାଶ, ୧୬-ମହୁଲ, ୧୭-ସଅଁ, ୧୮-କୁସୁଡ଼ିଆ, ୧୯-ଗୁହାରିଆ, ୨୦-ହରଡ଼ା, ୨୧-ବାହାଡ଼ା, ୨୨-ଜରି, ୨୩-ଡିମ୍ବୁଳି, ୨୪-ଅଁଳା, ୨୫-ଖରସାଣ, ୨୬-ବର, ୨୭-ତାଳ, ୨୮-ଖଜୁରି, ୨୯-ଓସ୍ତ, ୩୦-ସଲପ, ୩୧-ଆମ୍ବଡ଼ା, ୩୨-ସାହାଡ଼ା, ୩୩-ଗମ୍ଭାରି, ୩୪-ଆଙ୍କୁଲ, ୩୫-ପାଲଧୁଆ, ୩୬-ଗୁଉଲଧୁଆ, ୩୭-ମଞ୍ଜାରି, ୩୮-ସିସୁଆ, ୩୯-ଗ୍ରହାଣ, ୪୦-କାଳମୂଳ, ୪୧-ଖଇର, ୪୨-ହଳଦ, ୪୩-ଗମ୍ଭାରି, ୪୪-ବାହାଲ, ୪୫-ସିଜା, ୪୬-ବେଲ, ୪୭-ବେଅଁଟା, ୪୮-କଇଁଠ, ୪୯-କରଲା, ୫୦-ପେଙ୍ଗୁ, ୫୧-ବେତ, ୫୨-ବେଗୁନିଆ, ୫୩-ବାସଙ୍ଗ, ୫୪-ଡ଼କାଶ, ୫୫-ଅରଖ, ୫୬-ଚଢାପାରୁ, ୫୭-ବଇଚ, ୫୮-ସିଝୁ, ୫୯-ଲଙ୍କାକାଲ, ୬୦-ଡୋରି, ୬୧-ଲଙ୍ଗ, ୬୨-ଅହୁଞ୍ଜଳ, ୬୩-ଲଙ୍ଗନ, ୬୪-କୁରି, ୬୫-ମଇ, ୬୬-କାଠନାରଙ୍ଗ, ୬୭-ଧାଉଳି, ୬୮-ରୁଦ୍ରାକ୍ଷ, ୬୯-ପୁଇରୁଳିଆ, ୭୦-ଲଡ଼କା, ୭୧-ଭଦ୍ରାକ୍ଷ, ୭୨-ଦୁଦୁରି, ୭୩-କରି, ୭୪-ବାମୁଣିଆ, ୭୫-ଫାମ୍ପଣ, ୭୬-ଡଉରୁ, ୭୭-ବାଗୁଲ, ୭୮-ଛଚନା, ୭୯-କେନ୍ଦୁ, ୮୦-କାଳୁରି, ୮୧-କରଡ଼ା, ୮୨-ଜବାଙ୍ଗ, ୮୩-ସାକୁଟା, ୮୪-କସି, ୮୫-ପଞ୍ଚାଙ୍ଗୁଳିଆ, ୮୬-ହାଡ଼ଭଙ୍ଗା, ୮୭-ଭୁଇଁଜମ୍ବୁ, ୮୮-ଫାସି, ୮୯-ପୁନାଙ୍ଗ, ୯୦-ସମୀ, ୯୧-କଦମ୍ବ, ୯୨-କଞ୍ଚଣ, ୯୩-ସିରସା, ୯୪-ଦେବଦାରୁ, ୯୫-ରକ୍ତଚନ୍ଦନ, ୯୬-ବାଲବସଉଣି, ୯୭-ପଣସ, ୯୮-ଜଳାମାରି, ୯୯-ସୀତାଫଳ, ୧୦୦-ରାମଫଳ ଇତ୍ୟାଦି । ବର୍ତ୍ତମାନ ସେ ମଧ୍ୟରୁ କେତେକ ଗଛ ଅଚହ୍ନା ତ ଆଉ କେତେକ ପୂରାପୂରି ଲୁପ୍ତ । ସବୁ କୁଆଡ଼େ ଲକ୍ଷ ସଂଖ୍ୟାରେ ରହୁଥିଲା । ସେତିକି ନୁହେଁ—ବାଘ, ଭାଲୁ, ଗଧିଆ, ଟେଙ୍କିଆ, ସିହ୍ନୁଆ, ମହାବଳ, ବାରହା, ହନୁମନ୍ତ, ପାଢମାଙ୍କଡ଼, ସମ୍ବର, ମିରିଗ, ହରିଣ, କୁଆଦ, କଳାବାହୁଟିଆ, ଗୁରାଣ୍ଡି, ଠେକୁଆ, କୁଟୁରି, କୋକଶିଆଳ, ବଳିଆ କୁକୁର, କଣ୍ଟାସ, ବଲୁଆ, ବଣଭୁଆ, ଉଧ ପ୍ରଭୃତି ବିବିଧ ମାଂସାସିକ ହିଂସ୍ରଜନ୍ତୁ ସମେତ ନିରୀହ ପଶୁମାନଙ୍କର ତାହା ଥିଲା ନିର୍ଭୟ ସଂଚରସ୍ଥଳୀ । ତେଣୁ ବନଭୂମି ଯେପରି ଭୀଷଣ ସେହିପରି କମନୀୟ ଥିଲା । ନବପ୍ରସାରି ଶାଖାପ୍ରଶାଖା ବିଶିଷ୍ଟ ଦ୍ରୁମଶ୍ରେଣୀ ସହିତ ଚାରି ବିଚାରି ସୁବାସିତ ପୁଷ୍ପ ଲତାର ସମ୍ମିଶ୍ରଣରେ ତାହା ଅପରୂପ ଶୋଭା ଧାରଣ କରିଥିଲା । ତାରକାଖଚିତ ନଭସାକାଶ ତୁଲ୍ୟ ପୁଷ୍ପ ବିମଣ୍ଡିତ ହୋଇ ସୁନ୍ଦା

ଅଜଣା ଭୀତ ଉତ୍ପାଦନ କରୁଥିଲା ଦର୍ଶକ ମନରେ । ତା' ନ ହୋଇଥିଲେ ହଜାର ସଂଖ୍ୟକ ହାତୀର ଗର୍ଭଧାରଣୀ ହୁଅନ୍ତା କପରି ? ଏଣୁ ପୁରାଣ ବର୍ଣ୍ଣିତ କଳିଙ୍ଗରାଜା ସହସ୍ରେ ହସ୍ତୀ ସେନା ସାଙ୍ଗରେ ଧରି ଯୁଦ୍ଧଭୂମିକୁ ଯାଇଥିବା ମିଥ୍ୟାବୋଲି ପ୍ରତୀତ ହୁଏ ନାହିଁ । ତା'ଛଡ଼ା ଯେଉଁ ଯେଉଁ ଗ୍ରନ୍ଥରେ କଳିଙ୍ଗ ସମ୍ବନ୍ଧୀ ବିବରଣୀ ଦୃଷ୍ଟହୁଏ, ସେଥିରେ ପ୍ରତ୍ୟକ୍ଷ ବା ପରୋକ୍ଷରେ ହସ୍ତୀବଳ ସଂକ୍ରାନ୍ତରେ ଆଭାସ ନଥାଇ ରହିନାହିଁ । ଏଣୁ ସ୍ପଷ୍ଟ କହିପାରୁ ପ୍ରାକ୍ତନ କଳିଙ୍ଗ ଥିଲା ଏକ ଗଜବଳ ପ୍ରଧାନରାଜ୍ୟ ଏବଂ ଗଜକାତିର ଜନପଦ ବାସସ୍ଥଳୀ । ହାତୀଗୁମ୍ଫା, ହାତୀବାଡ଼ି, ହାତୀଖୋଲ, ଗଣ୍ଡାହାତୀ, ହାତୀପଦା, ହାତୀଶାଳ, ହାତୀଖାଲ, ହାତୀପୁର ପ୍ରଭୃତି ନାମରୁ ତାହା ହିଁ ସୂଚିତ ହୁଏ ।

ବର୍ତ୍ତମାନ ଉପକୂଳବର୍ତ୍ତୀ ସମତଳ ଭୂଭାଗ ସମ୍ବନ୍ଧରେ ଟିକିଏ ଆଲୋଚନା କରିବା । ଏହାର ମୃତ୍ତିକାସ୍ତର ପରୀକ୍ଷା କରି ବୈଜ୍ଞାନିକମାନେ କହନ୍ତି କଳିଙ୍ଗରେ ନ' କିସମର ମାଟି ରହିଛି । ୧-ଆଗ୍ନେୟ କୃଷ୍ଣ ମୃତ୍ତିକା (Regar), ୨-କଳାପଟୁମାଟି ( Regar loam), ୩-କାଳିଆବାଲି (Regar Sand), ୪-ଲାଲଚକଟାମାଟି (Red clay), ୫-ରଙ୍ଗ ପଟୁମାଟି (Red loam), ୬-ନାଲି ବାଲି (Red Sand), ୭-ଧଳାପଥୁରିଆ ପଟୁମାଟି ବା ଖଡ଼ିମାଟି (Aremaccous Loam), ୮-ଧଳାଖପୁରିଆ ଗୁଣ୍ଡବାଲି, (Arenaccous Sand), ୯-ଧଳା ଚକଟାମାଟି (Arenaccous), ଉପକୂଳବର୍ତ୍ତୀ ସମତଳ ଭୂମିରେ ପ୍ରଧାନତଃ କୃଷ୍ଣ କାର୍ପାସ ମୃତ୍ତିକା (Black Cotton Soil) ଏବଂ କାଳିଆ ବାଲି (Regar Sand) ତା'ତଳକୁ ଲାଲମୃତ୍ତିକା (Red Soil) ବାଲିଆ ମାଟି (Sandy Soil) ଥିବା ଲକ୍ଷ୍ୟ କରାଯାଏ । ସାରାବର୍ଷ ଏ ଅଞ୍ଚଳରେ ଋତୁ ଚକ୍ର ସମାନଭାବେ ପ୍ରବାହିତ ହୁଏ । ମାର୍ଗଶୀରରୁ ମାଘମାସଯାଏଁ ଶୀତ, ଫାଲ୍‌ଗୁନ ରୁ ବୈଶାଖଯାଏଁ ଗ୍ରୀଷ୍ମ, ଜ୍ୟୈଷ୍ଠ ମାସରୁ ବର୍ଷାଋତୁ ଆରମ୍ଭ ହୋଇ ଭାଦ୍ର ମାସରେ ଶେଷ ହୁଏ । ଫଳରେ ଋତୁ ଅନୁରୂପ କର୍ମ କରିବାରେ ବାଧାବିଘ୍ନ ଘଟେ ନାହିଁ । ସୁତରାଂ କଳିଙ୍ଗବାସୀ ବେଳକାଳ ଜାଣି କ୍ଷୁଦ୍ର ଡଙ୍ଗା ସାହାଯ୍ୟରେ ସମୁଦ୍ରରୁ ମତ୍ସ୍ୟ ଶିକାରକୁ ଅନ୍ୟତମ ବୃତ୍ତିରୂପେ ଗ୍ରହଣ କରିଥିଲେ । ତା ସଙ୍ଗେ ସଙ୍ଗେ ବିରାଟ ପୋତମାନ ନିର୍ମାଣକରି ଦ୍ୱୀପାନ୍ତରକୁ ଯାଇ ପ୍ରଚୁର ମଣିମୁକ୍ତା ସାଙ୍ଗରେ ଧରି ସ୍ୱଦେଶକୁ ଫେରୁଥିଲେ । ସେହି ଲକ୍ଷ୍ୟରେ ସୁବିଧାଜନକ ବେଳାଭୂମି ବାଛି ବନ୍ଦର ପ୍ରତିଷ୍ଠା କରିଥିବା ସ୍ୱାଭାବିକ । କଳିଙ୍ଗରେ ସେହିପରି କେତେ ଯେ ବନ୍ଦର ଥିଲା ତାହା ଏବେ ଜାଣିବା ସମ୍ଭବ ନୁହେଁ । ତଥାପି ପ୍ରାଚୀନ ଯୁଗର ବିଦେଶୀ ନାବିକ ଓ ଭୌଗୋଳିକଙ୍କ ବିବରଣୀରେ କଳିଙ୍ଗ ବିଷୟକ ଯେଉଁ ବର୍ଣ୍ଣନାମାନ ରହିଛି, ସେଥିରୁ କଳିଙ୍ଗର ଉପକୂଳରେ ଦନେ ଚଉଦରୁ ଅଧିକ ବନ୍ଦର କାର୍ଯ୍ୟକାରୀ ଅବସ୍ଥାରେ ଥିଲବୋଲି ଜଣାପଡ଼େ । ଏହାର ଆଭାସ ଆଗରୁ ଦିଆହୋଇଛି । କିନ୍ତୁ ସେଥିରେ ଗଞ୍ଜାମର 'ପାଲୁର୍ ବନ୍ଦର' ଦକ୍ଷିଣକୁ; ଆଣ୍ଟର୍ଯ୍ୟାର କଥା, ଆଉ କୌଣସି ବନ୍ଦରର ନାମୋଲ୍ଲେଖ ନାହିଁ । ଅଥଚ ଅବସ୍ଥିତି ଦେଖିଲେ ମନେହୁଏ ପାଲୁର୍‌ଠାରୁ

ବିଶାଖାପାଟଣା ମଧ୍ୟରେ ଅନ୍ତତଃ ସାତଟି ବନ୍ଦର ସ୍ଥାପିତ ହେବାରେ କୌଣସି ପ୍ରତିବନ୍ଧକ ନଥିଲି । ସେ ସ୍ଥାନଗୁଡ଼ିକ ପାଣିପାଗର ଯେପରି ଅନୁକୂଳ ସେହିପରି ବନ୍ଦର ଉପଯୋଗୀ ମଧ୍ୟ । ଏଣୁ ପାଲୁର୍ ଦକ୍ଷିଣକୁ ଋଷିକୁଲ୍ୟା ନଦୀ ମୁହାଣ, ଗୋପାଳପୁର ଉପକୂଳ, ବାହୁଦାନଦୀ ମୁହାଣ, ବାରୁଆ ଉପକୂଳ, କଳିଙ୍ଗପାଟଣା, ବଂଶଧାରା ନଦୀ ମୁହାଣ, ନାଗାବଳୀ ନଦୀ ମୁହାଣରେ ନିଶ୍ଚିତଭାବେ ବନ୍ଦର ଥିବା ଅନୁମାନ । ଅବଶ୍ୟ ସେଗୁଡ଼ିକ ସେକାଳରେ କି ନାମରେ ନାମିତ ଥିଲି କହିବା ସମ୍ଭବ ନୁହେଁ, କାରଣ ବନ୍ଦରଗୁଡ଼ିକର ଅସ୍ତିତ୍ୱ ଥିଲେ ବା କିଏ ଖୋଜେ ! ବନ୍ଦର ଯାଇଛି, ତା ସଙ୍ଗେ ନାମ ବି ଲୋପପାଇଛି । ଏ ଅବସ୍ଥାରେ କିଏ ବିଶ୍ୱାସ କରିବ ସେଠାରେ ବନ୍ଦର ଥିଲି ବୋଲି ?

ଯେ ଯାହାହେଉ, ଏହା କିନ୍ତୁ ମାନିବାକୁ ପଡ଼ିବ ଯେ, ବନ୍ଦର ଅବସ୍ଥିତ ସ୍ଥାନମାନ ଜନଗହଳପୂର୍ଣ୍ଣ ଅଞ୍ଚଳ ଥିଲି । ସାଧବ, ବଣିକ, ବ୍ୟବସାୟୀ, କର୍ମଜୀବୀ, ଶ୍ରମଜୀବୀ ଶ୍ରେଣୀ ବିଭିନ୍ନ ବୃତ୍ତି ଓ ଜୀବିକାର୍ଜନ ନିମିତ୍ତ ସ୍ଥାୟୀ ବା ଅସ୍ଥାୟୀ ଭାବେ ବସବାସ କରିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଫଳରେ ତାହା ନଗର ବା ଜନପଦରେ ପରିଣତ ହୋଇପଡ଼ୁଥିଲି । ତଦନୁପାତରେ ଅନ୍ତର୍ବାଣିଜ୍ୟ ଓ ବହିର୍ବାଣିଜ୍ୟ କେନ୍ଦ୍ରମାନ ମଧ୍ୟ ସେଠାରେ ଗଢ଼ି ଉଠିଥିଲି । ତାକୁ ହିଁ କୁହାଯାଉଥିଲି 'ପାଟଣା' ।

ପୂର୍ବୋକ୍ତ ପ୍ରକାରେ ସେ କାଳ କଳିଙ୍ଗରେ ବିବିଧ ଶବରଶ୍ରେଣୀ ରହି ଆସିଥିଲେ ସୁଦ୍ଧା ପ୍ରତ୍ୟେକ ପୁଣି ବାସସ୍ଥାନ ଓ ବୃତ୍ତିଭେଦରେ ଏକାଧିକ ଗୋଷ୍ଠୀରେ ପରିଣତ ହୋଇ ପଡ଼ିଲେ । ପ୍ରଥମଶ୍ରେଣୀ ପାର୍ବତ୍ୟ ଶବର ଦଳ ଦଳ ହୋଇ ବିଭିନ୍ନ ପାହାଡ଼ ଶିଖରରେ ସ୍ୱତନ୍ତ୍ର ଜୀବନ ଯାପନ କରିବା ଫଳରେ ପରସ୍ପର ସମ୍ପର୍କ ଛିନ୍ନ ହୋଇପଡ଼େ । କାଳାନୁକ୍ରମେ ଏଭଳି ଅବସ୍ଥା ସୃଷ୍ଟି ହୁଏ ଯାହା ଯୋଗୁ ପାର୍ବତ୍ୟ ଗୋଷ୍ଠୀ ବଣ୍ଡା, ଗଣ୍ଡ, ମୁଣ୍ଡା, ଭୂଇଁଆ, କୋହ୍ଲ, ସୌରା, ଜୁଆଙ୍ଗ ପ୍ରଭୃତି ନାମରେ ବିଭକ୍ତ ହୋଇ ନିଜନିଜକୁ ସ୍ୱତନ୍ତ୍ର ଜାତି ରୂପେ ପରିଚିତ କରାଇଲେ । କିନ୍ତୁ ସେମାନଙ୍କ ସଚେତନ ମନରେ ପରଂପରା ପ୍ରତି ରହିଥିବା ସମ୍ମାନ ଚଳେମାନ ପରିବର୍ତ୍ତିତ ହୋଇନଥିଲି । ଏବେ ବି ସେମାନେ ଆଦିବାସୀ ଶବର ସମ୍ପ୍ରଦାୟର ବୋଲି ଗର୍ବ ଅନୁଭବ କରନ୍ତି ଏବଂ ପୂଜା, ଆରାଧନା, ନୃତ୍ୟ-ଗୀତ, ବିବାହ ଉତ୍ସବାଦି କାଳରେ କୌଳିକ ପରଂପରା ଅନୁସରଣ କରିଥାନ୍ତି । ତା' ସତ୍ତ୍ୱେ ବିଭକ୍ତ ଗୋଷ୍ଠୀ ମଧ୍ୟରେ ନାନାବିଧ ଉପଗୋଷ୍ଠୀ ସୃଷ୍ଟି ହୋଇଥିବା ମଧ୍ୟ ଦୃଷ୍ଟିଗୋଚର ହୁଏ । ବୃହତ୍ତର କଳିଙ୍ଗର ପାର୍ବତ୍ୟ ଶବର ସମ୍ପ୍ରଦାୟକୁ ଦୃଷ୍ଟାନ୍ତ ରୂପେ ଧରାଯାଉ । ଏହାର ଉପଶାଖାମାନ ଅଗମ୍ୟ ପାହାଡ଼ ଭିତରେ ଲଞ୍ଜିଆ ସୌରା, ଲଙ୍ଗୁଳି ସୌରା, ସୌରା, ସଅର, ସବର, ଲୋଧା ଶବର ପ୍ରଭୃତି ନାମରେ ପରିଚିତ ହେଲି ପରି, ଭୂଇଁଆ ଭିତରେ ଭୂମିଜ, ଭୂମା, ଦେଶୁଆ ଭୂମିଜ; ମୁଣ୍ଡା ଭିତରେ ମୁଣ୍ଡା, ଲୋହରାମୁଣ୍ଡା, ମୁଣ୍ଡାମହାଲି; କୋହ୍ଲ ମଧ୍ୟରେ କୋହ୍ଲା, କୋହ୍ଲ, କୋହ୍ଲାଲୋହର ପ୍ରଭୃତି ଉପଶାଖା ଦୃଷ୍ଟ ହୁଏ । ସେତିକି ନୁହେଁ, ପ୍ରତ୍ୟେକ ଶାଖା ଓ ଉପଶାଖା ଗୋଷ୍ଠୀରେ ପ୍ରଚଳିତ ଭାଷା ମଧ୍ୟ ସ୍ୱତନ୍ତ୍ର

ଭାବେ ଗଢ଼ି ଉଠି ଏପରି ବିଚିତ୍ର ରୂପ ଧାରଣ କରିଛି ଯେ କାହାର ଭାଷା କାହାରି ପକ୍ଷେ ଆଉ ସହଜବୋଧ୍ୟ ହୋଇ ରହିନାହିଁ ।

ପାର୍ବତ୍ୟ ଶବର ପରି ଆରଣ୍ୟକ ଶ୍ରେଣୀରେ ମଧ୍ୟ ତାଦୃଶ ଉପବିଭାଗ ପରିଦୃଷ୍ଟ ହୁଏ । ଅଗମ୍ୟ ଗିରି ଶିଖର ବାସୀ ନହେଲେ ସୁଦ୍ଧା ନିବିଡ଼ ଅରଣ୍ୟାନୀ ମଧ୍ୟରେ ଯାତାୟାତଶୂନ୍ୟ ଗିରିସଙ୍କଟ, ପାର୍ବତ୍ୟ ଉପତ୍ୟକା ମଧ୍ୟରେ ରହି ପାରସ୍ପରିକ ସମ୍ପର୍କ ବିଚ୍ଛିନ୍ନ ହେବା ଯୋଗୁଁ ସେ ଗୋଷ୍ଠୀରେ କନ୍ଧ, ପରଜା, ହୋ, ସାନ୍ତାଳ, ସାଉଣ୍ଡିଆ, ମାଙ୍କିଡ଼ିଆ ପ୍ରଭୃତି ଉପଶାଖା ସୃଷ୍ଟି ହୋଇ ପଡ଼ିଛି । ପ୍ରଥମ ଶ୍ରେଣୀର ପରି କୌଳିକ ପରମ୍ପରା ଓ ବଂଶାନୁଗତ ପ୍ରଥା ଅକ୍ଷୁଣ୍ଣ ରଖିବା ଏମାନଙ୍କ ଜନ୍ମଗତ ପ୍ରକୃତି ହେଲେ ସୁଦ୍ଧା, ବାସ ସ୍ଥାନ ଭେଦରେ ସମସ୍ତେ ସମସ୍ତଙ୍କଠାରୁ ସ୍ୱତନ୍ତ୍ର ବୋଲି ପରିଚୟ ଦିଅନ୍ତି । କେବଳ ସେତିକି ନୁହେଁ, ଉପଶାଖା ମଧ୍ୟରେ ଏକାଧିକ ଶାଖା ପରିବାର ରୂପେ ବାଣ୍ଟି ହୋଇ ପଡ଼ିଛନ୍ତି ତଥାପି ସମସ୍ତଙ୍କ ମୁହଁରେ ଗୋଟିଏ ମାତ୍ର କଥା—'ଆମେ ଶବର ।' ଶବର ଶ୍ରେଣୀର ଆରଣ୍ୟକ ଶାଖା ମଧ୍ୟରେ 'କନ୍ଧ' ପ୍ରମୁଖ ଗୋଷ୍ଠୀ ଭାବେ ଗଣ୍ୟ । ପର୍ବତବାସୀ 'ଆଦିମ ଶବର' ଓ ଉପକୂଳ ନିବାସୀ 'ପାଇକ' ସମ୍ପ୍ରଦାୟ ଉଭୟ ସହିତ ଏମାନଙ୍କର ସମାନ ସମ୍ପର୍କ ରହିଆସିଥିଲା । ଏକ ଦିଗରେ ବଂଶାନୁକ୍ରମିକ ଚଳି ଆସୁଥିବା ଶିକାର ଓ ପୋଡ଼ୁ ଚାଷ ଛାଡ଼ି କେତେକ ଲୁହୁରା, କୁମ୍ଭାର, ଗଉଡ଼ ପ୍ରଭୃତି ବୃତ୍ତି ଅବଲମ୍ବନ କଲାବେଳେ ଅନ୍ୟ ଦିଗରେ ଆଉ କେତେ ଡଙ୍ଗରିଆ ଭାବେ ପାର୍ବତ୍ୟ ସମ୍ପ୍ରଦାୟ ସହିତ ମିଳାମିଶି ଗିରିଶୃଙ୍ଗରେ ବାସ କରନ୍ତି । ଫଳରେ ଉପକୂଳ ଓ ପାର୍ବତ୍ୟ ସଂସ୍କୃତି ସମନ୍ୱୟରେ ଏ ସମାଜରେ ଏକ ଅଭିନବ ଭାଷା ଓ ସଂସ୍କୃତି ଗଢ଼ି ଉଠେ । ବୃହତ୍ତର କଳିଙ୍ଗର 'ଓଡ଼' ସଂସ୍କୃତିକୁ ଏମାନଙ୍କର ଅବଦାନ ଯେ ଯଥେଷ୍ଟ ଅଧିକ ତାହା ଯଥା ସ୍ଥାନରେ ଉଲ୍ଲେଖ କରାଯିବ । କନ୍ଧମାନେ ଏବେ ବି କଳିଙ୍ଗର ଅନ୍ୟାନ୍ୟ ଅଞ୍ଚଳ ଅପେକ୍ଷା ଦକ୍ଷିଣରେ ଅର୍ଥାତ୍ ଫୁଲବାଣୀ, ଗଞ୍ଜାମ, କୋରାପୁଟ, ପୁରୀ, ଶ୍ରୀକାକୁଲମ୍ ଜିଲ୍ଲାର ମାଳଭୂମିରେ ସର୍ବାଧିକ ସଂଖ୍ୟାରେ ବାସକରି ରହିଛନ୍ତି । ଉକ୍ତ ପ୍ରଣାଳୀରେ ଆଦିବାସୀ ଶବର ମଧ୍ୟରେ ଶାଖା, ଉପଶାଖା, ଗୋଷ୍ଠୀ, ଉପଗୋଷ୍ଠୀ, ଅନ୍ତର୍ଗୋଷ୍ଠୀ, ପରିବାର ଗୋଷ୍ଠୀ ଭାବେ ବିଭାଜନ ଘଟି ତାହା ଓଡ଼ିଶାରେ ସତୁରି ପ୍ରକାର ହୋଇପଡ଼ିଥିବା ଅନୁସନ୍ଧାନରୁ ଜଣାପଡ଼େ । ସେଗୁଡ଼ିକ ହେଲା : (୧) କୋୟା, (୨) କନ୍ଧ, (୩) ବାଗତା, (୪) ଡଙ୍ଗରିଆ କନ୍ଧ, (୫) ଲଙ୍ଗୁଳିଆ, (୬) ସିତାକନ୍ଧ, (୭) ବଇଗା, (୮) ବାଞ୍ଜାର, (୯) ବାଥୁଡ଼ି, (୧୦) ଧୋତରା, (୧୧) ଭୁଇଁଆ, (୧୨) ଭୁମା, (୧୩) ଭୁମିଜ, (୧୪) ଭୁଞ୍ଜିଆ, (୧୫) ବିନ୍ଝାଲ, (୧୬) ବିନ୍ଧିଆ, (୧୭) ବନ୍ଦର, (୧୮) ବଣ୍ଡା, (୧୯) ଚେଞ୍ଚୁ, (୨୦) ବଲ, (୨୧) ଦେଶୁଆ ଭୁମିଜ, (୨୨) ଧାରୁଆ, (୨୩) ଦିରେଇ, (୨୪) ଗଡ଼ବା, (୨୫) ଗଣ୍ଡିଆ, (୨୬) ଘଡ଼ା, (୨୭) ଗଣ୍ଡ, (୨୮) ହୋ, (୨୯) ହଲଆ, (୩୦) ଜଟପୁ, (୩୧) ଜୁଆଙ୍ଗ, (୩୨) କନ୍ଧ ଗୌଡ଼, (୩୩) କବାଡ଼, (୩୪) ଖରିଆ, (୩୫) ଖଡ଼ୁଆ, (୩୬) କସାଣ, (୩୭) କୋହ୍ଲ,

(୩୮) କୋହ୍ଲାଲେହ୍ରା,(୩୯) କେହ୍ଲା, (୪୦) ମହ୍ଲାର,(୪୧) କଣ୍ଡାଦୋରା, (୪୨) କୋରା, (୪୩) କରୁଆ, (୪୪) କୁଟିଆ, (୪୫) କୁଲି, (୪୬) ଲୋଧା, (୪୭) ମାଢ଼ିଆ, (୪୮) ମାହ୍ଲାଲି, (୪୯) ମାର୍କଣ୍ଡିଆ, (୫୦) ମାର୍କଣ୍ଡ, (୫୧) ମେଟିଆ, (୫୨) ମିର୍ଦ୍ଧା, (୫୩) ମୁଣ୍ଡା, (୫୪) ମୁଣ୍ଡା ଲୋହରା, (୫୫) ମୁଣ୍ଡାମାଲି, (୫୬) ମୁଣ୍ଡାରି, (୫୭) ଅମନାଢଆ, (୫୮) ଓରାଂ, (୫୯) ପେରଙ୍ଗା, (୬୦) ପରଜା, (୬୧) ପେଣ୍ଡିଆ, (୬୨) ରକୌଡ଼ା, (୬୩) ସାନ୍ତାଳ, (୬୪) ସୌରା, (୬୫) ଶବର, (୬୬) ଶଅର, (୬୭) ଶବର ଲୋଧା, (୬୮) ସାଉଁଟିଆ, (୬୯) ଧରୁଆ, (୭୦) ବେଣ୍ଡିଆକନ୍ଧ । ଉକ୍ତ ଶାଖା ଗୋଷ୍ଠୀ ସମୂହ କଳିଙ୍ଗର ଏ ପ୍ରାନ୍ତରୁ ସେ ପ୍ରାନ୍ତ ଯାଏଁ ବିସ୍ତୃତ ହୋଇ ରହିଥିବା ଦୃଷ୍ଟହୁଏ ।

ଏହା ବାଦେ 'କଳଙ୍ଗ୍' ଶାଖା ଶବର ଗୋଷ୍ଠୀ ବିବିଧ ବୃତ୍ତି ଅବଲମ୍ବନ ପୂର୍ବକ 'ଓଡ଼ ପାଟକ' ଭାବେ ଉପକୂଳ ସ୍ଥଳ ଭାଗରେ ବାସ କରି ରହିଥିଲେ । ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ ସମାଜ ଅପେକ୍ଷା ଏମାନେ ଉନ୍ନତ ଜୀବନ ଯାପନ କରୁଥିଲେ । କୃଷିକର୍ମ ଥିଲା ସେମାନଙ୍କର ସାଧାରଣ ବ୍ୟବସାୟ । ତା'ଛଡ଼ା ସମସ୍ତଙ୍କର ଏକ ଏକ ସ୍ୱତନ୍ତ୍ର ବୃତ୍ତି ରହିଥିଲା, ଯାହା ଯୋଗୁଁ ସେମାନେ ସ୍ୱତନ୍ତ୍ର 'କୁଳ'ର ବୋଲି ସମାଜରେ ପରିଚିତ ଥିଲେ । ମୁଖ୍ୟ ଜୀବିକା କୃଷି ଥିବା ହେତୁ ଇତର ଶବରଙ୍କ ଦୃଷ୍ଟିରେ ସେମାନେ ଥିଲେ 'ଓଡ଼-ମାରଙ୍ଗ୍' । ଓଡ଼ଙ୍କ ଭିତରେ ବିଭିନ୍ନ ବୃତ୍ତିଧାରୀ 'କୁଳ' ସଂଖ୍ୟା ଥିଲା ବୋଧହୁଏ 'ଛତିଶ' । ତେଣୁ 'ଛତିଶି ପାଟକ' ଶବ୍ଦଟି ଲୋକମୁଖରେ ଏ ଯାଏଁ ପ୍ରସିଦ୍ଧି ଲାଭ କରି ଆସିଛି । ଏବେ ସୁଦ୍ଧା ଓଡ଼ିଶାରେ ତାହାର ସତ୍ତା ସଂପୂର୍ଣ୍ଣ ଲୋପପାଇ ନାହିଁ । ଏବେ ବି ସେମାନେ ନିଜକୁ 'ପାଟକ କୁଳର' ବୋଲି ପରିଚୟ ଦିଅନ୍ତି । କୃଷି, ବାଣିଜ୍ୟ, ସମରସଜ୍ଜା, ବିଦେଶଯାତ୍ରା, ନୌଚାଳନା ପ୍ରଭୃତି କର୍ମ ସାଧନ ନିମିତ୍ତ ବିଭିନ୍ନ ବୃତ୍ତିର ପ୍ରୟୋଜନୀୟତା ଉପଲବ୍ଧି କରି ଶକ୍ତି ଅନୁରୂପ ତାହା ଗ୍ରହଣ କରିନେଇଥିଲେ । ଲୁହା ବ୍ୟବସାୟୀ 'ଲୁହୁରା','ପାନ' ବ୍ୟବସାୟୀ 'ପାନରା', 'ମାଳା' ବ୍ୟବସାୟୀ 'ମାଳି' ନାମରେ ନାମିତ ଥିଲା । ବୃତ୍ତି ଅନୁରୂପ 'କୁଳ' ମାନ ଗଠିତ ହୋଇଥିଲା । ସମସ୍ତ କୁଳ ସମାଜରେ ସମାନ ବିବେଚିତ ହେଉଥିଲା । ସମସ୍ତେ ଥିଲେ ପାଟକ କୁଳର । ବୃତ୍ତି ଛଡ଼ା ସେମାନଙ୍କ ମଧ୍ୟରେ କୌଣସି ଅନ୍ତର ନଥିଲା । ସମାଜ ଚଳଣିରେ ଛତିଶି ପ୍ରକାର ଚଳଣିକୁ ମୁଖ୍ୟ କରି ନିମ୍ନଲିଖିତ ଛତିଶିପାଟକ ସୃଷ୍ଟି ହୋଇଥିଲା । ଯଥା : (୧) କାଳିଙ୍ଗି (କ୍ଷତ୍ରି) (୨) ପାଇକ (୩) ସୁନାର, (୪) ତେଲି, (୫) ଗୁଡ଼ିଆ, (୬) କାଚରା, (୭) ଚନ୍ଦକର, (୮) ବାଉରିଆ, (୯) ଭଣ୍ଡାରି, (୧୦) ଗଉଡ଼ (୧୧) ନୋଳିଆ, (୧୨) ମାଳି, (୧୩) ପାନ୍ତିଆ, (୧୪) ପାନରା, (୧୫) ଲୁହୁରା, (୧୬) କୁମ୍ଭାର, (୧୭) ପାଟରା, (୧୮) କେଉଟ, (୧୯) ପାଲିଆ, (୨୦) କଂସାରି, (୨୧) ଜାନି, (୨୨) ଧୋବା, (୨୩) ବଢ଼େଇ, (୨୪) ଦଳୁଆ, (୨୫) ସାଧବ, (୨୬) ମାଟିଆ, (୨୭) ମାହୁନ୍ତିଆ, (୨୮) ଗୋଲା, (୨୯) ବନ୍ଧାଣି, (୩୦) ହାଟୁଆ, (୩୧) ଭୋଇ, (୩୨) ତେରା, (୩୩) ମାହାର, (୩୪) ବୋଣ୍ଡଛତ, (୩୫) ପଥୁରିଆ, (୩୬) ଓଡ଼ିଆ । ଉକ୍ତ କୁଳ

ସହଯୋଗରେ ସାମାଜିକ, ସାଂସ୍କୃତିକ, ବାଣିଜ୍ୟିକ ଓ ଆଧ୍ୟାତ୍ମିକ କ୍ଷେତ୍ରରେ ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ବିଭିନ୍ନ ପ୍ରକାର ସାମରିକ ସରଞ୍ଜାମ ଓ ଦୃଢ଼ତର ଦୁର୍ଗମାନ ପ୍ରସ୍ତୁତ ହୋଇ କଳିଙ୍ଗ ଅମିତ ଶକ୍ତିଶାଳୀ ଦେଶରୂପେ ବିଶ୍ୱବିଶ୍ରୁତ ହୋଇପାରିଥିଲା । ଲୋକମାନେ ଥିଲେ ପରିଶ୍ରମୀ, ସ୍ୱାଧୀନଚେତା ଓ ଦେଶପ୍ରାଣ । ଦେଶଲାଗି ଅକାତରେ ପ୍ରାଣବଳି ଦେବାରେ ଅପ୍ରତିଦ୍ୱନ୍ଦ୍ୱୀ । ତେଣୁ ଦେଶରକ୍ଷା ନିମିତ୍ତ ଗିରିସଙ୍କଟ, ବାଣିଜ୍ୟ କେନ୍ଦ୍ର, ନୌବନ୍ଦର, ମୁଖ୍ୟ ଜନବସତିମାନଙ୍କରେ ଦୁର୍ଗ ବା ଗଡ଼ମାନ ନିର୍ମାଣ କରିଥିଲେ । ଅଶୋକଙ୍କ ଆକ୍ରମଣର ଦୀର୍ଘ ପନ୍ଦର ଶହ ବର୍ଷ ପରେ 'ଆବୁଲ ଫାଜଲ'ଙ୍କ ଲିଖିତ 'ଆଇନ୍ ଇ-ଆକବରୀ' ଗ୍ରନ୍ଥରେ ଏହାର ଯେଉଁ ସୂଚନା ଦିଆହୋଇଛି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ସେ ସମୟକୁ କୁଆଡ଼େ ଜଳେଶ୍ୱର, ଭଦ୍ରକ, କଟକ, କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ ନାମରେ 'ଓଡ଼ିଶା'ପାଞ୍ଚଟି ସରକାରରେ ବିଭକ୍ତଥିଲା । ସେଥିରେ ଅନେଶତଟି 'ମହଲ' ଏବଂ ପ୍ରତି ମହଲରେ ଏକରୁ ନ'ଟି ପର୍ଯ୍ୟନ୍ତ ଦୁର୍ଗ ଥିଲା । ପ୍ରତି ଦୁର୍ଗରେ ଚତୁରଙ୍ଗ ସେନା ରହୁଥିଲେ । ସେ ମଧ୍ୟରୁ ଜଳେଶ୍ୱର ସରକାରରେ ବାନସନ୍ଦ, ବାଲକସି, ପବଦା, ଭୋଗରାଇ, ବଗଡ଼ା, ଜଳେଶ୍ୱର, ତମଲିକ, ତାରାଲୋକ, ରେମୁଣା, ରାଇନ୍, ରାଇପୁର, ସବଙ୍ଗ, କର୍କସୁର, କେଦାରଖଣ୍ଡ, ମେଦିନୀପୁର, ଖଡ଼ଗପୁର ଓ ନାରାୟଣପୁର ନାମକ ସତରଟି ମାହାଲ ଥିଲା ଓ ସେ ମଧ୍ୟରୁ ବାନସନ୍ଦ ଓ ରେମୁଣାରେ ପାଞ୍ଚଟି ଲେଖାଏଁ, ବାଲକସି, ପବଦା, ରାଇନ ଓ କେଦାର ଖଣ୍ଡରେ ତିନଟି ଲେଖାଏଁ ଏବଂ ଅବଶିଷ୍ଟ ମାହାଲରେ ଗୋଟିଏ ଲେଖାଏଁ ଦୁର୍ଗ ଥିଲା । ଦୁର୍ଗ ସଂଖ୍ୟା ଥିଲା ଅଠାଇଶି ଏବଂ ସବୁର ଅବସ୍ଥିତି ପାର୍ବତ୍ୟ ଅଞ୍ଚଳରେ । ମେଦିନୀପୁର ଦୁର୍ଗ ସେ ମଧ୍ୟରୁ ସବୁଠାରୁ ପୁରାତନ ବୋଲି କଥିତ । ଏ ସବୁ ଦୁର୍ଗରେ ଅଶ୍ୱାରୋହୀ ସୈନ୍ୟ ୩୫୭୦, ପଦାତିକ ୪୩୮୧୦, ଏବଂ ଦୁଇଟି ଗଜସେନା ବଳ ରହୁଥିଲେ । ଭଦ୍ରକ ସରକାରରେ ବରବା, ଭଦ୍ରକ, ସହେଂସୁ ଓ ଜମାନ ନାମରେ ଚାରିଟି ମାହାଲ ଥିଲା ଏବଂ ବରବା ଓ ସହେଂସୁରେ ଦୁଇଟି ଲେଖାଏଁ, ଅନ୍ୟ ଦୁଇଟିରେ ଗୋଟାଏ ଲେଖାଏଁ, ଏପରି ଛ'ଟି ସୁଦୃଢ଼ ଦୁର୍ଗ ସହିତ ଆହୁରି ତିନୋଟି ଦୁର୍ଗ ରହିଥିଲା ଏବଂ ମୋଟ ସଂଖ୍ୟା ନ'ଟି । ସେଗୁଡ଼ିକରେ ୭୫୦ ଅଶ୍ୱାରୋହୀ ଓ ୬୩୦୦ ପଦାତିକ ସୈନ୍ୟ ଥିଲେ । କଟକ ସରକାର ନ'ଟି ମାହାଲରେ ବିଭକ୍ତ ଥିଲା । ସେଗୁଡ଼ିକ ହେଲା ଆଠଗଡ଼, ପୂର୍ବଦ୍ୱାର, ବାରଙ୍ଗ, ବିଜୟନଗର, ହାତୀପୁର, ଦକ୍ଷିଣଦ୍ୱାର କୋଠଦେଶ, ବଡ଼ାନାସୀ (କଟକ) ଓ କୋଟରାହାଙ୍ଗ । ଏ ମଧ୍ୟରୁ ଏକା ବାରଙ୍ଗରେ ନ'ଟି ଦୁର୍ଗଥିଲା ଏବଂ ସବୁ ଗୁଡ଼ିକ ପାର୍ବତ୍ୟ ଜଙ୍ଗଲ ଭିତରେ, ପୂର୍ବଦ୍ୱାର ଓ ଦକ୍ଷିଣ ଦ୍ୱାରରେ ଚାରିଚାରିଟି, କୋଠ ଦେଶରେ ତିନୋଟି ଏବଂ ଅବଶିଷ୍ଟ ମହାଲରେ ଗୋଟିଏ ଲେଖାଏଁ ଦୁର୍ଗ ଥିଲା । ଅର୍ଥାତ୍ ନ'ଟି ମହାଲରେ ପଚିଶିଟି ଦୁର୍ଗ ରହିଥିଲା । ସେ ମଧ୍ୟରେ ଅଶ୍ୱାରୋହୀ ଥିଲେ ୬୮୭୮ ଏବଂ ପଦାତିକ ସୈନ୍ୟ ୧୬୦୧୬୦ । ଏହାକୁ ଛାଡ଼ି କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ ସରକାରରେ ଯଥାକ୍ରମେ ୫୦୦ ଓ ୧୦୦୦ ଅଶ୍ୱାରୋହୀ ଏବଂ ୩୦,୦୦୦ ଓ ୫,୦୦୦ ପଦାତିକ ମହଜୁଦ୍ ଥିଲେ ।

ପାଞ୍ଚଟିଯାକ ସରକାର ଓଡ଼ିଶା ଗଜପତି ମହାରାଜାଙ୍କ ଅଧୀନରେ ଥିଲା । ଆବୁଲଫାଜଲ ସମୁଦାୟ ବାୟ୍‌ଶଟି ଦୁର୍ଗର ନାମୋଲ୍ଲେଖ କରିଛନ୍ତି । ତାହାଙ୍କ ବର୍ଣ୍ଣନାରୁ ଜଣାପଡ଼େ ଓଡ଼ିଶାରେ ଅନେକଗୁଡ଼ିଏ ମାହାଲ ଥିଲା; କିନ୍ତୁ ସେଥିରୁ ବତିଶିଟି ମହାଲରେ ଥିବା ଦୁର୍ଗର ଉଲ୍ଲେଖ କରିଛନ୍ତି । ଅଥଚ ସେହି ଗ୍ରନ୍ଥର ଅନ୍ୟତ୍ର ସେ କହିଛନ୍ତି, 'ସେ ସମସ୍ତଙ୍କୁ ଓଡ଼ିଶାରେ ଶହେଅଣତିରିଶିଟି ଦୁର୍ଗ ଗଜପତିଙ୍କ ଅଧୀନରେ ଥିଲା ।' ତା'ଯଦି ହୁଏ ଅବଶିଷ୍ଟ ସତାବନଟି ଦୁର୍ଗ କେଉଁଠାରେ ଥିଲା ? ଆଇନ୍-ଇ-ଆକବରୀରୁ ଏ ସମ୍ବନ୍ଧରେ କିଛି ସୂଚନା ମିଳେ ନାହିଁ । ଆବୁଲ ଫାଜଲ ଓଡ଼ିଶାର ଦକ୍ଷିଣ ପଟକୁ ଯାଇଥିବାର ପ୍ରମାଣ ମିଳେନାହିଁ । ସେହି କାରଣରୁ ବୋଧହୁଏ 'କଳିଙ୍ଗ ଦଣ୍ଡପାଟ' ଓ 'ରାଜମହେନ୍ଦ୍ରୀ' ସରକାରରେ ଥିବା ମହାଲ-ମାନଙ୍କର ନାମୋଲ୍ଲେଖ କରିନାହାନ୍ତି ଏବଂ ତତ୍ରତ୍ୟ ଦୁର୍ଗ ସମ୍ବନ୍ଧରେ ମଧ୍ୟ କିଛି କହି ନାହାନ୍ତି—କେବଳ ଗଜପତିଙ୍କ ଅଧୀନରେ ଥିବା ସୈନ୍ୟ ସଂଖ୍ୟା ସୂଚାଇଛନ୍ତି ମାତ୍ର । ଅତଏବ କଳିଙ୍ଗ ଦଣ୍ଡପାଟ ଓ ରାଜମହେନ୍ଦ୍ରୀ ସରକାରରେ ଅବଶିଷ୍ଟ ସତାବନ ଗୋଟି ଦୁର୍ଗ ରହିଥିଲା ବୋଲି କହିବାରେ ଅସଙ୍ଗତି ନାହିଁ ।

ଏ ସବୁର ନିର୍ଯ୍ୟାସ ସ୍ୱରୂପ କୁହାଯାଇପାରେ—ସ୍ମରଣାତୀତ କାଳରୁ କଳିଙ୍ଗବାସୀ ପଲ୍ଲୀ, ଜନପଦ, ଅରଣ୍ୟ ଓ ପାର୍ବତ୍ୟ ଅଞ୍ଚଳମାନଙ୍କରେ ସୁଦୃଢ଼ ଦୁର୍ଗ ନିର୍ମାଣ କରି ପୁରାତନ ଐତିହ୍ୟକୁ ଆବୁଲ ଫାଜଲଙ୍କ ପର୍ଯ୍ୟନ୍ତ ଜୀବନ୍ତ ରଖି ପାରିଥିଲେ । ସେ ଐତିହ୍ୟର ଆଦି ପ୍ରବର୍ତ୍ତକ ଥିଲେ ତତ୍କାଳ କଳିଙ୍ଗରେ ବାସକରି ରହିଥିବା ଶବର ଶ୍ରେଣୀର ପାଟକଗୋଷ୍ଠୀ ଯାହାଙ୍କ ଭାଷା, ଭୂଷା, ସଭ୍ୟତା, ସଂସ୍କୃତି, ସାମାଜିକ ଚଳଣି ଉତ୍ତର ଓ ଦକ୍ଷିଣ ଉଭୟ ଭାରତୀୟ ସଭ୍ୟତାଠାରୁ ପୁରାପୂରି ସ୍ୱତନ୍ତ୍ର ଥିଲା ଏବଂ ପାର୍ବତ୍ୟ, ଆରଣ୍ୟକ ଓ ସମତଳ ସଭ୍ୟତାର ସମ୍ମିଶ୍ରଣରେ ଅନନ୍ୟସାଧାରଣ ଶୈଳୀରେ ବିକଶିତ ହୋଇଉଠିଥିଲା ।



# ପଞ୍ଚମ-ପ୍ରକାଶ :

# କଳିଙ୍ଗର ପାର୍ବତ୍ୟ ଓ ଆରଣ୍ୟକ ଶ୍ରେଣୀ

ପ୍ରସ୍ତର ଯୁଗର ପର୍ବତ, ଅରଣ୍ୟ ଓ ସମତଳବାସୀ ଭେଦରେ ଆଦିବାସୀ ଶବର ସଭ୍ୟତା ତ୍ରିଧା ବିଭକ୍ତ ହୋଇ ଧାରାବାହିକ ଭାବେ କଳିଙ୍ଗରେ କପରି ବିକାଶ ଲାଭ କରିଆସିଥିଲା ତାହା ପୂର୍ବ ପରିଚ୍ଛେଦରେ କୁହାଗଲା । ତିନୋଟିଯାକଥିଲେ ପରସ୍ପର ନିର୍ଭରଶୀଳ । ପାର୍ବତ୍ୟ ଶବର ସହିତ ଆରଣ୍ୟକ ଏବଂ ଆରଣ୍ୟକ ଗୋଷ୍ଠୀ ସହିତ ସମତଳ ସଭ୍ୟତାର ପ୍ରତ୍ୟକ୍ଷ ସମ୍ପର୍କ ରହି ଆସିଥିଲା । କିନ୍ତୁ ସମତଳ ସଭ୍ୟତା ଓ ପାର୍ବତ୍ୟ ସଭ୍ୟତା ମଧ୍ୟରେ ତାହା ଥିଲା ପରୋକ୍ଷ ସମ୍ପର୍କ । ତେଣୁ ସେ ଦୁଇଟିର ପରସ୍ପର ଆଦାନ ପ୍ରଦାନ ବିଶେଷ ଆଖିଦୃଶିଆ ହୋଇପାରିନାହିଁ । ପ୍ରଥମେ ପାର୍ବତ୍ୟ ଶବରଙ୍କ କଥା ବିଚାର କରାଯାଉ ।

'ଶବର'ମାନେ କିଏ ଓ ସେମାନଙ୍କୁ କିଏ ଏ ନାମ ଦେଇଛି ? —ଏହା ଜାଣିବାକୁ ହେଲେ ପୃଥିବୀର ସର୍ବ ପୁରାତନ ଗ୍ରନ୍ଥ 'ଋଗ୍‌ବେଦ' ଆମର ଏକମାତ୍ର ଅବଲମ୍ବନ ଯହିଁରେ ସେ ସମ୍ବନ୍ଧରେ କିଞ୍ଚିତ୍ ସୂଚନା ପାଇହୁଏ । ସେଥିରେ ଲେଖାଅଛି—ବୃତ୍ର, ଅହି, ପଣି, ବଳୁ, ବନଗୁ, କଳି, ବଳି ପ୍ରଭୃତି ଅସୁର ଗୋଷ୍ଠୀ ଆର୍ଯ୍ୟମାନଙ୍କର ବିରୋଧ କରି ଆସୁଥିଲେ । ସେମାନେ ସ୍ଥାନୀୟ କୃଷ୍ଣକାୟ ବନବାସୀ ଛଡ଼ା ଅନ୍ୟ କେହି ନଥିଲେ । କିନ୍ତୁ ସେମାନଙ୍କୁ ଏପରି ବିଭିନ୍ନ ନାମରେ ନାମିତ କରିବା ବୋଧହୁଏ, ସ୍ଥାନକାଳ ଭେଦରେ ବିଭିନ୍ନ ଆର୍ଯ୍ୟ ସମ୍ପ୍ରଦାୟ ଦ୍ୱାରା ସେହି ଏକା ଶତ୍ରୁ ବିଭିନ୍ନ ଭାବେ ଚିହ୍ନିତ ହୋଇଆସି ଥିଲେ । ପୁନଶ୍ଚ କାର୍ଯ୍ୟ କଳାପ ଓ ଯୁଦ୍ଧ କୌଶଳ ଅନୁଯାୟୀ ସେମାନଙ୍କୁ ତଦର୍ଥ ସୂଚକ ଶବ୍ଦ ଦ୍ୱାରା ଅଭିହିତ କରାଯାଇଥିବା ମଧ୍ୟ ସମ୍ଭବ । ଲୁଚିଛପି ଆସି ଆକ୍ରମଣ କରିବାବେଳେ 'ଅହି', ଅନ୍ଧକାର ରାତିରେ ଗବାଦି ପଶୁ ହରଣ କରିନେବାବେଳେ 'ପଣି', ଅରଣ୍ୟ ମଧ୍ୟରେ ଆତ୍ମ-ଗୋପନକାରୀ 'ବଳୁ' ଏବଂ ଆକ୍ରମଣ କରି ନିମିଷକ ଭିତରେ ଅଦୃଶ୍ୟ ବ୍ୟକ୍ତି 'ବନଗୁ' ଭାବେ ସମ୍ବୋଧିତ ହେଉଥିଲେ । ବସ୍ତୁତଃ ସମସ୍ତ ଶବ୍ଦ ଏକା ବନବାସୀ ଶବର ଜାତି ପ୍ରତି ଉଦ୍ଦିଷ୍ଟଥିଲା । 'ଶବର' ଶବ୍ଦରୁ ମଧ୍ୟ ସେଇଆ ସୂଚିତ ହୁଏ । ଏହା ଆର୍ଯ୍ୟ ଭାଷାର ଶବ୍ଦନୁହେଁ, ମୁଣ୍ଡାରି ଭାଷା ପରିବାର ଭିତର ଏକ 'ସୌରା' ଶବ୍ଦ, 'ସୋ— ବରୁ' । ଏହା ଏକ ଯୁଗ୍ମ ଶବ୍ଦ । ସୌରା ଭାଷାରେ ପ୍ରଚଳିତ ପ୍ରାୟ ସମସ୍ତପଦ ଏକାଧିକ ଶବ୍ଦ ସଯୋଗରେ ସୃଷ୍ଟି ହୋଇଥାଏ । 'ସୋ' ଅର୍ଥ ଅଦୃଶ୍ୟ ଏବଂ 'ବରୁ' କହିଲେ 'ପର୍ବତ' ଅର୍ଥାତ୍ ଯେ ପର୍ବତରେ ଅଦୃଶ୍ୟଭାବେ ରହେ । 'ସୋ-ବର' ଶବ୍ଦର ସଂସ୍କୃତାୟିତ ରୂପ ହେଉଛି 'ଶବର' ଯାହା ପରବର୍ତ୍ତୀ ରଚନାମାନଙ୍କରେ ବହୁଳ ଭାବେ ପ୍ରଯୁକ୍ତ । ସେ ଦୃଷ୍ଟିରୁ ଦେଖିଲେ 'ଶବର'

ହେଉଛନ୍ତି ଭାରତର ସର୍ବ ପ୍ରାଚୀନ ମଣିଷ ଗୋଷ୍ଠୀ ବା ଆଦିମତମ ଅଧିବାସୀ । ଏହାଙ୍କ ମଧ୍ୟରେ କପିଳ, ପୁଲିନ୍ଦ, ବ୍ୟାଧ, ଲୁବ୍‌ଧକ, ନାଗ ପ୍ରଭୃତି ନାମରେ ବିଭିନ୍ନ ଶାଖାଗୋଷ୍ଠୀ ଗଢ଼ି ଉଠିଥିଲା । ସବୁ ନାମ ଆର୍ଯ୍ୟପ୍ରଦତ୍ତ ଓ ବ୍ୟାକରଣସମ୍ମତ । 'ନାଗ' ଶବ୍ଦଟିକୁ ଦୃଷ୍ଟାନ୍ତ ରୂପେ ଧରାଯାଉ । ନାଗମାନେ କୁଆଡ଼େ ଭାରତବର୍ଷର ସର୍ବପ୍ରଥମ ଅଧିବାସୀ । ଏମାନେ ସର୍ବଦା ପର୍ବତ ଶିଖରରେ ରହି ଆସୁଥିଲେ । 'ଶବର' ଶବ୍ଦ ତୁଲ୍ୟ 'ନାଗ' ମଧ୍ୟ ପାର୍ବତ୍ୟ ଅଧିବାସୀ ଅର୍ଥ ପ୍ରକାଶ କରେ । 'ନଗ' ଅର୍ଥ 'ପର୍ବତ', ତଜ୍ଜନ୍ୟ ଅଧିବାସୀ 'ନାଗ'- ମାଗଧ, ପାଞ୍ଚାଳ, ମୈଥିଳ ଶ୍ରେଣୀର ଶବ୍ଦ ଏହା । ଏଣୁ 'ଶବର' ଏବଂ 'ନାଗ' ଦୁଇଟିଯାକ ସମାର୍ଥବାଚୀ ଶବ୍ଦ ।

ତା'ଛଡ଼ା ପ୍ରତ୍ନତତ୍ତ୍ୱମାନେ ସ୍ୱୀକାର କରନ୍ତି, ଆର୍ଯ୍ୟ ସମାଜ ବିରୁଦ୍ଧରେ ନାଗମାନେ ହିଁ ପ୍ରଥମେ ସଂଗ୍ରାମ ଚଳାଇ ଆସିଥିଲେ । ପୁରାଣରେ ବର୍ଣ୍ଣିତ ଅଛି, ଭାରତର ବିଭିନ୍ନ ପ୍ରାନ୍ତରେ 'ନାଗ'ମାନେ ବିସ୍ତାରି ହୋଇ 'ନାଗବଂଶ' ପ୍ରତିଷ୍ଠା କରିଥିଲେ । ସେ ମଧ୍ୟରୁ କେତେକ ଦକ୍ଷିଣ ଭାରତ ଏବଂ ଆଉ କେତେକ ଦକ୍ଷିଣ-ପୂର୍ବ ଭାରତ ଅର୍ଥାତ୍ କଳିଙ୍ଗରେ ଅଦ୍ୟାପି 'ନାଗବଂଶୀ' ଭାବେ ପରିଚିତ ହୋଇ ଆସୁଛନ୍ତି । 'ନାଗ' ନାମରେ ବହୁ କୁଳ, ବଂଶ, ଗୋତ୍ର ଅତୀତରେ ପ୍ରତିଷ୍ଠିତ ହୋଇଥିଲା । ବର୍ତ୍ତମାନ କଳିଙ୍ଗରେ ଯେଉଁ 'କାଳିଙ୍ଗୀ' ପାଇକ ଗୋଷ୍ଠୀର ଅବଶେଷ ବିଦ୍ୟମାନ ସେ ମଧ୍ୟରୁ ଅଧିକାଂଶ ହେଉଛନ୍ତି 'ନାଗକୁଳୀ' ବା 'ନାଗେଶ ଗୋତ୍ରୀ'। ସେମାନଙ୍କ କହିବାରେ ସେମାନଙ୍କର ପୂର୍ବପୁରୁଷ ଥିଲେ କୁଆଡ଼େ 'ନାଗ' ବା 'ପାର୍ବତ୍ୟ-ଶବର' । ଦିନେ ଏ ଜାତି ଦୁର୍ଦ୍ଧର୍ଷ ଶାସକ ଭାବେ 'କୀକଟ' (ମଗଧ) ରାଜ୍ୟକୁ ଶାସନ କରୁଥିଲା ବୋଲି ଇତିହାସରୁ ପ୍ରମାଣ ମିଳେ । ରାମାୟଣର 'ଗୁହ' ଶବର ହେଲା ଏମାନଙ୍କ ପୁରାତନ ପିତୃପୁରୁଷ । ଫଳମୂଳାଦିଦ୍ୱାରା ରାମଙ୍କୁ ବଣରେ ଆପ୍ୟାୟିତ କରିଥିବା ଶ୍ରମଣୀ (ଶବରୀ) ମଧ୍ୟ ତାଙ୍କର କୁଳପ୍ରସୂତା । ସେହିପରି ମହାଭାରତ ବର୍ଣ୍ଣିତ ଦ୍ରୋଣ ଶିଷ୍ୟ ଏକଲବ୍ୟ ଥିଲା ଶବର ସନ୍ତାନ । ତାଛଡ଼ା ଭାଗବତୀୟ 'ଜାରା' ଶବର ଏବଂ କଳିଙ୍ଗର 'ଦାରୁଦେବତା' ଉପାସକ ବିଶ୍ୱାବସୁ ଉଭୟେ ଏ ଜାତିର ଚିରସ୍ମରଣୀୟ—ପ୍ରାଚୀନ ଇତିହାସରୁ ଏହା ମଧ୍ୟ ସୂଚିତ ହୁଏ । ଏହାଙ୍କ ମଧ୍ୟରୁ 'ଶବରାଦିତ୍ୟ' ନାମକ ଜଣେ ରାଜା 'କଳିଙ୍ଗ ବଂଶୀ କାମାର୍ଣ୍ଣବ'ଙ୍କ ଦ୍ୱାରା ପରାଜିତ ଓ ନିହତ ହୋଇଥିଲେ । କାମାର୍ଣ୍ଣବ ଥିଲେ 'କଳିଙ୍ଗ ରାଜବଂଶର' ପ୍ରତିଷ୍ଠାତା । ତାଙ୍କର ଅମଳରେ ଶବରମାନେ ସମତଳ ସ୍ଥାନରୁ ବହିଷ୍କୃତ ହୋଇ ପାର୍ବତ୍ୟାଞ୍ଚଳକୁ ପଳାୟନ କରିଥିଲେ ବୋଲି କୁହାଯାଏ । କଥାର ସତ୍ୟତା ଯାହା ଥାଉ ପଛେ, ଏହା କିନ୍ତୁ ନିର୍ଣ୍ଣିତ ଯେ ଶବର ଗୋଷ୍ଠୀ ପ୍ରଥମେ ସମତଳ ଅଞ୍ଚଳରେ ରହୁଥିଲେ ଏବଂ ପରେ କୌଣସି ଆଭ୍ୟନ୍ତରୀଣ କାରଣ ଯୋଗୁ ଅନ୍ୟ ଶାଖା ଗୋଷ୍ଠୀ ଦ୍ୱାରା ବହିଷ୍କୃତ ହୋଇ ପାହାଡ଼ ପର୍ବତରେ ଆଶ୍ରୟ ନେଲେ । ବର୍ତ୍ତମାନ ସେମାନଙ୍କ ଆବାସିକ ପରିବେଶ ଓ ସାମାଜିକ ସଂସ୍କୃତି ଅନୁଧ୍ୟାନ କଲେ ସେଇଆ ମନେ ହୁଏ । ସଂକ୍ଷିପ୍ତ ଭାବେ ଏ ଜାତି ବିଭିନ୍ନ ନାମରେ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ବାସକରି

ଆସୁଥିଲେ ମଧ୍ୟ କଳିଙ୍ଗରେ ଯେପରି ବହୁ ସଂଖ୍ୟାରେ ଦୃଷ୍ଟିଗୋଚର ହୁଅନ୍ତି କ୍ୱଚିତ୍ ଅନ୍ୟତ୍ର ସେପରି ଦେଖାଯାଏ । ପ୍ରଥମେ ଆବାସିକ ପରିବେଶ ସମ୍ବନ୍ଧରେ ଆଲୋଚନା କରିବା ।

ଆବାସିକ ପରିବେଶ କହିଲେ 'ସଭ୍ୟତା' ଛଡ଼ା ଆଉ କିଛି ନୁହେଁ । ସମାଜର ବହିରାବରଣ ହେଉଛି 'ସଭ୍ୟତା', ଅନ୍ତରାତ୍ମା 'ସଂସ୍କୃତି' । ବାସ, ବେଶ, ଭୂଷା, ଭାଷା, ଖାଦ୍ୟ ପେୟାଦି ବହିରଙ୍ଗ ଗୁଡ଼ିକ ସଭ୍ୟତା ରୂପେ ଅଭିହିତ ହେଲାବେଳେ ଆମୋଦ-ପ୍ରମୋଦ, ନୃତ୍ୟଗୀତ, ଆଚାର ବିଚାର, ଦେବଧାରଣାଦିରେ ସଂସ୍କୃତି ପ୍ରତିଫଳିତ ହୋଇଥାଏ । ସେ ପରିପ୍ରେକ୍ଷୀରେ ବିଚାର, କଲେ ଶବର ସଭ୍ୟତା ନିତାନ୍ତ ନିମ୍ନମାନର ବୋଲି କହି ହୁଏ ନାହିଁ । 'ବାସ' ବିଷୟରେ ଶବରମାନେ ଅତ୍ୟଧିକ ସଚେତନ ନୁହନ୍ତି । ଉଚ୍ଚାବଚ ପର୍ବତମାଳ ଓ ଢାଲୁ ଅଞ୍ଚଳ ସେମାନଙ୍କର ଅତି ପ୍ରିୟ ବାସସ୍ଥଳୀ—କିନ୍ତୁ ତାହା ଜଳନଦୀ ବା ଝରଣା ନିକଟବର୍ତ୍ତୀ ଥିବା ଆବଶ୍ୟକ । ସେଥିରେ କୃତ୍ରିମ ବନ୍ଧ ନିର୍ମାଣ କରି ଯାବତୀୟ ପ୍ରୟୋଜନ ସଂପାଦିବାରେ ସେମାନେ ପାରଙ୍ଗମ । ବସତିମାନ ଯୋଜନାବଦ୍ଧ, ଘରଗୁଡ଼ିକ ସମାନ୍ତରାଳ ଓ ସମାନ ଶ୍ରେଣୀୟ । ସମସ୍ତଙ୍କ ଘର ପ୍ରାୟ ଏକାପରି । ସେଗୁଡ଼ିକୁ ଦେଖିଲେ ଜଣାପଡ଼େ, ଶବର ଜାତି ଅତ୍ୟନ୍ତ କଳାପ୍ରିୟ ଓ ସାଜସଜ୍ଜା ପ୍ରତି ବିଶେଷ ସଚେତନ । ଘର ସଜାଇବାରେ ସେମାନେ ଯେତିକ ଯତ୍ନଶୀଳ ଆପଣା ଶରୀରକୁ ମଣ୍ଡାଇବାରେ ତତୋଽଧିକ ଆଗ୍ରହାନ୍ୱିତ । ସ୍ତ୍ରୀ ପୁରୁଷ ଉଭୟଙ୍କ ଗଳାରେ ହାର, ହରେକ ରଙ୍ଗର ମାଳି—ପ୍ରାକୃତିକ ବୃକ୍ଷଲତାରୁ ସଂଗୃହୀତ ହୋଇଥାଏ ସେ ସବୁ । ନାନା ବର୍ଣ୍ଣର ପକ୍ଷୀପର, ଫୁଲ, ପତ୍ର, ତୃଣ ଲତାଦି ତାଙ୍କର ଅଳଂକାର । ସର୍ବାପେକ୍ଷା ଅଧିକ ଆକର୍ଷଣୀୟ ହେଲା ମୁଣ୍ଡ ଜୁଡ଼ାରେ ବ୍ୟବହୃତ ପାନିଆଁ ସାଙ୍ଗକୁ ଫୁଲପେନ୍ଥା । ତା' ଛଡ଼ା ଅନ୍ୟାନ୍ୟ ରଙ୍ଗର ଶୋଭାବର୍ଦ୍ଧକ ଖଡ଼ୁ, ବଳା, ମୁଦି, ନାଗୁଲି, ନାକଫୁଲିଆ ପ୍ରଭୃତି ରହିଛି । ଏ ସବୁ ସ୍ତ୍ରୀସମାଜର ଅଳଂକାର, ପିତଳ କମ୍ବା ରସରେ ତିଆରି । ପୁରୁଷ ଜାତିର ପ୍ରଧାନ ପରିଚ୍ଛଦ ହେଲା ମୟୂରଚୂଳ ବା ବକପକ୍ଷୀର ପର । କଉଡ଼ିଖଞ୍ଜା ମାଳି ମଧ୍ୟ ଗଳାଳଂକାର ରୂପେ ଧାରଣ କରିଥାନ୍ତି । କିନ୍ତୁ ସ୍ତ୍ରୀମାନେ ତାହା ଭିଡ଼ିଥାନ୍ତି ଅଣ୍ଟାରେ 'କମରପଟା' କରି । ଧଳା କଳା ପୋହଳାମାଳି ସେ ସମାଜରେ ଅତ୍ୟନ୍ତ ଆଦରଣୀୟ ବସ୍ତୁ । ସ୍ଥୂଳତଃ ଦେଖିଲେ ଶବର-ଶବରୀ ଉଭୟେ ଅଳଂକାରପ୍ରିୟ ଅଟନ୍ତି । ଅଳଂକାର ସମ୍ପର୍କରେ ଶବର ସମାଜରେ ଏକ କୌତୂହଳପୂର୍ଣ୍ଣ କିମ୍ବଦନ୍ତୀ ପ୍ରଚଳିତ ।

ପ୍ରାଚୀନ କାଳରେ କୁଆଡ଼େ ନାରୀମାନେ ଆଦୌ ଅଳଂକାର ବ୍ୟବହାର କରୁ ନଥିଲେ; ତାହା କରିବା ନିଷିଦ୍ଧ ଥିଲା । ଦିନେ ଜଣେ ଧନୀ ସୌଦାଗର ବିଦେଶରୁ ସୁବର୍ଣ୍ଣ ଓ ରୌପ୍ୟ ନିର୍ମିତ ବିବିଧ ରକମର ଅଳଂକାର ଧରି ଘରକୁ ଲେଉଟିଲେ । ତାଙ୍କର ସୁକୁମାରୀ ଗେଲବସର ଝିଅଟିଏ ଥାଏ । ଅଳଂକାରଗୁଡ଼ିକୁ ଦେଖି ସେ ସବୁତକ ପିନ୍ଧିବାକୁ ଅଳି କଲା ଓ କାନ୍ଦି କାନ୍ଦି ନସ୍ୟାନ୍ତ ହେଲା । ସାନ୍ତ୍ୱନା ଦେବାପାଇଁ ସାଉକାର ଯେତେ ଚେଷ୍ଟା କଲେ ସୁଦ୍ଧା ଉଦ୍ୟମ ଫଳବତୀ ହେଲାନାହିଁ । ଶେଷରେ ଅନନ୍ୟୋପାୟ ହୋଇ ତାକୁ

ସବୁଗୁଡ଼ିକ ପିନ୍ଧାଇ ଦେଲେ । କିନ୍ତୁ ଝିଅଟି ଅଳଂକାର ଗୁଡ଼ିକୁ ଆଉ ଦେହରୁ ଓହ୍ଲାଇଲା ନାହିଁ । ସେହିଦିନୁ ସ୍ତ୍ରୀମାନେ ଅଳଂକାର ପିନ୍ଧିବା ଆରମ୍ଭ କଲେ । କଥାରେ ସତ୍ୟତା ଯାହା ଥାଉନା କାହିଁକି, ସେଥିରୁ ଏତିକି ଅଧ୍ୟାହାର କରିହୁଏ ଯେ ପୂର୍ବେ ଶବର ସମାଜ ମଧ୍ୟରୁ ସାଉକାରମାନେ ବିଦେଶରୁ ମୂଲ୍ୟବାନ୍ ଅଳଂକାର ଧରି ସ୍ୱଦେଶକୁ ଫେରୁଥିଲେ ଏବଂ ବର୍ତ୍ତମାନ କଳିଙ୍ଗରେ ଯେଉଁ ଶତାଧିକ ପ୍ରକାର ଅଳଂକାର ବ୍ୟବହୃତ ଏହା ତାହାର କ୍ରମବିକାଶ ଲବ୍‌ଧ ଫଳ ।

ପୁରୁଷ ସମାଜର ପ୍ରଧାନ ଶିରୋଭୂଷଣ ମୟୂରଚୂଳ ସମ୍ବନ୍ଧରେ ମଧ୍ୟ ସେହିପରି ଜନଶ୍ରୁତିଟିଏ ପ୍ରଚଳିତ । ମୟୂରଚୂଳର କୁଆଡ଼େ ଅଲୌକିକ ଶକ୍ତି ରହିଛି । ତାହା ଥିଲେ କ୍ଷେତ ଉର୍ବର ଏବଂ ଶସ୍ୟଶାମଳା ହୁଏ । କୌଣସି ଅଶୁଭ ଦେବତା ଗାଁ ମୁଣ୍ଡରେ ପ୍ରବେଶ କରି ପାରନ୍ତି ନାହିଁ; ଗାଁ ଭିତରେ ମରୁଡ଼ି, କଲେରା, ବସନ୍ତ ପ୍ରଭୃତି ସଂକ୍ରାମକ ରୋଗ ଦେଖାଦିଏ ନାହିଁ । ଅଜାଣତରେ ଅଙ୍ଗ ଲାବଣ୍ୟର ବୃଦ୍ଧି ଘଟେ । ଏହା ଶୁଭଙ୍କର ଓ ସମ୍ମାନସୂଚକ ବସ୍ତୁ ବିଶେଷ ବୋଲି ତାଙ୍କର ବିଶ୍ୱାସ । ତେଣୁ ସେମାନେ କେଶସାଙ୍ଗରେ ତାହା ଖଞ୍ଜି ମଥାରେ ଧାରଣ କରିଥାନ୍ତି । ଏତଦ୍‌ବ୍ୟତୀତ କୌଳିକ ବିଧିବିଧାନ ଓ ଦେବାରାଧନା ସହିତ ମୟୂରଚୂଳର ଘନିଷ୍ଠ ସମ୍ପର୍କ ରହିଥିବା ମଧ୍ୟ ଅନୁମିତ ହୁଏ । ଦେବତା ରୂପେ ପୂଜାପାଉଥିବା ଗାଁମୁଣ୍ଡର ବୃକ୍ଷ ବା ପ୍ରସ୍ତରଖଣ୍ଡ ନିକଟ କାନ୍ଥ ବାଡ଼ରେ ମୟୂରଚିତ୍ର ସଯତ୍ନରେ ଅଙ୍କିତ ଥାଏ । ସେଥିଦ୍ୱାରା କୌଣସି ଆସୁରିକଶକ୍ତି ଘେ ଭିତରକୁ ପଶିବାକୁ ସାହସ କରେ ନାହିଁ ବୋଲି ତାଙ୍କର ଧାରଣା । ସେଥିଯୋଗୁ ଶବରଘର ମାଟିକାନ୍ଥ ଦେହରେ ବହୁ ପ୍ରକାର ମୟୂର ଚିତ୍ର ଲେଖାହୋଇଥିବା ଦେଖାଯାଏ । ସେମାନଙ୍କ କହିବାରେ ମୟୂର ଗୋଟିଏ ଦେବଦୂତ ଏବଂ ଗୃହରକ୍ଷକ । କଥାଅଛି, ପୂର୍ବକାଳରେ ଶବର ଜାତି ମଧ୍ୟରେ ଜଣେ ବଳିଷ୍ଠ ସୁନ୍ଦର ଯୁବକ ଥିଲା । ତା'ର କେଶଗୁଚ୍ଛ ଆଗୁଲ୍‌ଫ ଲମ୍ବିତ ଏବଂ ଏତେ ଚକ୍ ଚକ୍ କରୁଥାଏ ଯେ ଦେଖିଲେ ଆଖି ଝଲସି ପଡ଼େ । ଦିନକର କଥା, ସେ ବଣ ଭିତରେ ନଇଁ ପଡ଼ି କାଠ କାଟିବାକୁ ଉଦ୍ୟତ ହେଲା ମାତ୍ରେ ବାଳଗୁଡ଼ିକ ଆଖି ଉପରେ ପଡ଼ି ବାରମ୍ବାର କାର୍ଯ୍ୟରେ ବାଧା ସୃଷ୍ଟି କଲା । ତେଣୁ କ୍ରୋଧଭରେ ରାଗିଯାଇ ସେ କୁଆଡ଼େ ସବୁତକ ବାଳ ଉପାଡ଼ି ଚତୁର୍ଦ୍ଦିଗରେ ଫିଙ୍ଗିବାକୁ ଲାଗିଲା ଏବଂ କିଛିଦିନ ପରେ ଦେଖିଲା ବେଳକୁ ସେଗୁଡ଼ିକ ସେଠାରେ ମୟୂରଚୂଳରେ ପରିଣତ ହୋଇ ପଡ଼ିଛି । ପୂର୍ବପୁରୁଷଙ୍କ ଅଙ୍ଗବିଶେଷ ହେବା ଯୋଗୁଁ ତାହା ବଂଶାନୁକ୍ରମେ ଏବେ ଉତ୍ତରପୁରୁଷଙ୍କ ମଙ୍ଗଳ ବିଧାନ କରିଆସୁଛି ।

ମୟୂରଚୂଳ ଛଡ଼ା ଶବର ସମାଜରେ ହାତୀମଧ୍ୟ ଅତ୍ୟନ୍ତ ଲୋକପ୍ରିୟ । କାନ୍ଥ, ବାଡ଼, କବାଟ, ଦୁଆର ସବୁରେ ଏହାର ଚିତ୍ର ଲେଖା ଥାଏ । ହାତୀ ଐଶ୍ୱର୍ଯ୍ୟର ସଙ୍କେତ । ହାତୀ ଥିଲେ ଆପେ ଆପେ ଧନସମ୍ପତ୍ତି ଘରକୁ ପଶିଆସେ । ଶବରଙ୍କ ବିଶ୍ୱାସ -- ପୂର୍ବେ ହାତୀମାନେ ଉଡ଼ନ୍ତା ପ୍ରାଣୀ ଥିଲେ । ପର୍ବତର ଏ ଶୃଙ୍ଗରୁ ସେ ଶୃଙ୍ଗକୁ ଆକାଶ ମାର୍ଗରେ

ଅନାୟାସରେ ଉଡ଼ିଯାଇପାରୁଥିଲେ । ସେମାନେ ଓହ୍ଲାଇବା ସ୍ଥାନର କ୍ଷେତ, ବାଡ଼ି, ଗଛ ଲତା ସବୁ ଖର୍ଗ ରୂକ ନଷ୍ଟ ହୋଇଯାଉଥିଲା । ତେଣୁ ସମସ୍ତ ଶବର ମିଶି 'କିରୁଙ୍ଗ୍'ଙ୍କ ଆଗେ ଦୁଃଖ ଜଣାଇବାରୁ ସେ ହାତୀମାନଙ୍କଠାରୁ ଉଡ଼ିବାଶକ୍ତି ପ୍ରତ୍ୟାହାର କରିନେଲେ ଏବଂ ସେମାନଙ୍କୁ କହିଲେ, ଶବର ଜାତିର ଶ୍ରୀବୃଦ୍ଧି ଦାୟିତ୍ୱ ଯେପରି ହାତୀମାନେ ବହନ କରିବେ । ସେହିଦିନୁ 'ହାତୀ' ଶବରମାନଙ୍କ ଶୁଭଚିହ୍ନକ ଭାବେ ସମ୍ମାନିତ ହୋଇ ଆସୁଛି ।

ପାନିଆ ମଧ୍ୟ ଶବର ଜାତିର ଏକ ଅତି ଆଦରଣୀୟ ବସ୍ତୁ । ଘର କାନ୍ଥ ଦିହରେ ମୟୂର ଓ ହାତୀ ପାଖେ ପାଖେ ପାନିଆ ଚିତ୍ର ଅଙ୍କାଥିବା ବହୁତ ଦୃଷ୍ଟିଗୋଚର ହୁଏ । ଶବର ଜାତିର ବିଶେଷ କରି ଶବରୁଣୀମାନଙ୍କର ପାନିଆ ହେଉଛି ଏକ ଶୋଭାବର୍ଦ୍ଧକ ପଦାର୍ଥ । କେଶଗୁଚ୍ଛରେ ପାନିଆ ଖଞ୍ଜି ସ୍ତ୍ରୀସମାଜ ନିଜକୁ ଗର୍ବିତ ମନେକରନ୍ତି । କେଶ ସଜାଡ଼ିବାରେ ତାହାର ଯେତିକ ପ୍ରୟୋଜନୀୟତା ସୌନ୍ଦର୍ଯ୍ୟ ବୃଦ୍ଧିରେ ମଧ୍ୟ ତାହା ସେତିକ ସହାୟକ । ତେଣୁ ପୁରୁଷ ଜାତିର ଗୌରବସୂଚକ ମୟୂରପୁଚ୍ଛ ପରି ସ୍ତ୍ରୀସମାଜର ସୌନ୍ଦର୍ଯ୍ୟବର୍ଦ୍ଧକ ପାନିଆର ଚିତ୍ର ମଧ୍ୟ ନିଖୁଣ ଭାବେ ଚିତ୍ରିତ ରହିଥାଏ । ଯେ ସମାଜରେ ମୟୂରଚୂଳ ଭଳି ପାନିଆ ସମ୍ବନ୍ଧୀୟ କିମ୍ବଦନ୍ତୀଟିଏ ମଧ୍ୟ ପ୍ରଚଳିତ ।

ପୂର୍ବକାଳରେ ପୁରୁଷ ଅପେକ୍ଷା ସ୍ତ୍ରୀମାନଙ୍କ ମଥାରେ ନିବିଡ଼ କେଶଗୁଚ୍ଛମାନ ରହିଥିଲା । ସେ ସବୁ ଏତେ ଦୀର୍ଘ ଓ ଘଞ୍ଚ ଥିଲା ଯେ ତଦ୍ୱାରା ସେମାନେ କୌଣସି କାର୍ଯ୍ୟ ସହଜରେ କରିପାରୁ ନଥିଲେ । ବଳାଗଣ୍ଠି ଯାଏ କେଶ ଲମ୍ବିତ ଥିବାଯୋଗୁ ଚଳ ପ୍ରଚଳ ସମୟରେ ବଣ ଜଙ୍ଗଲର କଣ୍ଟାବୁଦା ଲାଗି ସେମାନଙ୍କୁ ବିବ୍ରତ କରି ପକାଉଥିଲା । ତେଣୁ ନାରୀ ସମାଜ ଏକତ୍ରିତ ହୋଇ ଦେବତାଙ୍କୁ ସେ କଥା ଜଣାଇଲେ । ଦିଅଁ କୁଆଡ଼େ କଛୁ ମୁହଁରେ ନିଜହି ଦୁଇ ହାତର ପାପୁଲି ଟେକି ଅଙ୍ଗଳଗ୍ନ ଆଙ୍ଗୁଠିମାନ ଦେଖାଇଲେ । ତାହାର ସଙ୍କେତରେ ସେଇଦିନୁ କ୍ଷୁଦ୍ର କାଠପଟାକୁ ତଦାକାର କରି ଚିରି ପାନିଆ ନିର୍ମାଣ କଲେ ଏବଂ ତା ସାହାଯ୍ୟରେ କେଶକୁ ସଜାଡ଼ି ଖୋସାପାରିନେଲେ । ଉପରେ ଚମତ୍କାର ଫୁଲମାଳ ସହିତ ପାନିଆଖଞ୍ଜି ସୌଭାଗ୍ୟବତୀ ବୋଲାଇଲେ । ଏଣୁ 'କିରୁଙ୍ଗ୍'ଙ୍କ ଅଯାଚିତ ଉପହାର ପାନିଆ ଶବର ଯୁବତୀଙ୍କ କେଶବିନ୍ୟାସର ପବିତ୍ର ଉପକରଣ ରୂପେ ବ୍ୟବହୃତ ହୋଇଆସୁଛି ।

ଏଇଟି ଲକ୍ଷ୍ୟ କରିବା କଥା—ଏବେ ମଧ୍ୟ ଓଡ଼ିଆ ସଂସ୍କୃତିରେ ମୟୂରପୁଚ୍ଛ, ହାତୀ ଓ କାଠ ପାନିଆର ମହତ୍ତ୍ୱ ଅକ୍ଷୁର୍ଣ୍ଣ ରହିଛି । ଓଡ଼ିଆ ବିଶ୍ୱାସରେ ହାତୀ ଧନଦାତ୍ରୀ ଲକ୍ଷ୍ମୀ ଦେବୀଙ୍କ ବାହନ । ତାହାକୁ ସ୍ପର୍ଶକଲେ କିମ୍ବା ଅକସ୍ମାତ୍ ଦେଖିଲେ ଅଶୁଭ ଦୂର ହୁଏ । ସ୍ୱପ୍ନରେ ସୁଦ୍ଧା ହାତୀ ଦେଖିଲେ ଧନସମ୍ପଦ ମିଳେ, ଏପରିକି ତା'ର ବିଷ୍ଠା ସ୍ପର୍ଶ କରିବା ମଧ୍ୟ ଶୁଭଙ୍କର ବୋଲି କୁହାଯାଏ । ସେହିପରି ମୟୂରପୁଚ୍ଛ ମଧ୍ୟ । କଅଁଳା ଶିଶୁ ଅଣ୍ଟାରେ ମୟୂରପୁଚ୍ଛ ବନ୍ଧାଥିଲେ ଡାହାଣୀ ଚିରୁଗୁଣୀଙ୍କ କୋପଦୃଷ୍ଟି ପଡ଼େ ନାହିଁ । ପଢ଼ାବହିରେ

ମୟୂରଚୂଳ ଯୋକ ଦେଲେ କୁଆଡ଼େ ବଜ୍ରପାତ ସହଜରେ ମନେରହେ । ମୟୂରପୁଚ୍ଛ ବଡ଼ା ବାନ୍ଧି ଘରଗୁଳ ବା ଦୁଆରେ ଖୋଷି ରଖିଲେ ଅପଦେବତା ଘରକୁ ପଶି ଆସେ ନାହିଁ । ସେହିପରି କାଠ ପାନିଆ ମଧ୍ୟ ଓଡ଼ିଆଣୀର ଏକ ସୌଭାଗ୍ୟସୂଚକ ବସ୍ତୁରୂପେ ଗୃହୀତ । ଝିଅ ଶାଶୁଘର ଗଲବେଳେ ଅଳତା କଜଳ ସଙ୍ଗେ କାଠପାନିଆ ନେବା ବିଧି ଅଦ୍ୟାପି ପ୍ରଚଳିତ । ଜ୍ୟେଷ୍ଠ ଅମାବାସ୍ୟା ଦିନ କାଠ ତିଆରି ଫରୁଆ ଓ ପାନିଆ ସାବିତ୍ରୀ ପୂଜାର ଅଙ୍ଗ ହୋଇ ରହିଛି । ମଝିଘର କୋଠା କାନ୍ଥରେ ଗୃହଦେବତା ବା ଇଷ୍ଟ ଦେବୀଙ୍କ ପାଖେ ପାନିଆଚିହ୍ନ ଲେଖିବା ଏକ ପାରମ୍ପରିକ ବିଧି । ଅନୁମାନ ହୁଏ, ପ୍ରାଗ୍ ଐତିହାସିକ ଶବରଙ୍କ ସାମାଜିକ ଚଳଣି ମଧ୍ୟରୁ ଉତ୍ତର ଦାୟାଦ ଓଡ଼ିଆଙ୍କ ମଧ୍ୟରେ ତାହା ଏଯାଏଁ ସମ୍ପୂର୍ଣ୍ଣ ଭାବେ ଲୋପ ପାଇନାହିଁ ।

ଶବର ଜାତିର ଧାରଣା, ପୃଥିବୀରେ ଯାହା କିଛି ବସ୍ତୁ ରହିଛି 'କିତୁଂ' ମଣିଷଙ୍କ ପାଇଁ ସୃଷ୍ଟି କରିଛନ୍ତି । ବଣର ଗଛବୃଛରୁ ଆରମ୍ଭ କରି କୃଷୋପକରଣ ଲଙ୍ଗଳ କୁଆଳି ପର୍ଯ୍ୟନ୍ତ ସବୁ ତାଙ୍କର ଦାନ । ଏ ସମ୍ପର୍କରେ ମଧ୍ୟ ତାଙ୍କ ମୁହଁରୁ ଏକ ଅଦ୍‌ଭୁତ କିମ୍ବଦନ୍ତୀ ଶୁଣିବାକୁ ମିଳେ । 'ପୂର୍ବକାଳରେ ପୃଥିବୀରେ କେହି କୃଷିବାସ କଥା ଜାଣିନଥିଲେ । ଖାଇ ବଞ୍ଚିବା ପାଇଁ କୌଣସି ସ୍ଥାୟୀ ଉପାୟ ଜଣାନଥିଲା । ଅଧିକାଂଶ ଲୋକ ଭୋକ ଉପାସରେ ତହଲ ବିକଳ ହୋଇ ବୁଲୁଥିଲେ । ତାହା ଜାଣି 'କିତୁଂ' ବ୍ୟସ୍ତ ହୋଇପଡ଼ିଲେ । ମଣିଷଙ୍କୁ ଆହାର ଯୋଗାଇବା ସକାଶେ 'ଗମଧନ୍','ଗାମ୍‌ମା' ପ୍ରମୁଖ ଦେବତାଙ୍କୁ ଡାକି ଆଜ୍ଞାଦେଲେ— 'ଯାଅ ପୃଥିବୀରେ ମଣିଷଙ୍କ ପାଇଁ ଖାଦ୍ୟ ଯୋଗାଡ଼ କର ।' ସେମାନେ ପୃଥିବୀକୁ ଆସି ନିଜ ହାତରେ ମାଟି ଖୋଳି କୃଷିକାର୍ଯ୍ୟ ଆରମ୍ଭ କଲେ । କିନ୍ତୁ ହାତ ସାହାଯ୍ୟରେ ମାଟି ଖୋଳିବା କଷ୍ଟସାଧ୍ୟ ଦେଖି ସେମାନେ ଶବର ଜାତିର ଶ୍ରେଷ୍ଠ ଦେବତା 'ଗଲ୍‌ବେସନ୍'ଙ୍କୁ ଜଣାଇଲେ ଯେ, ହାତରେ ମାଟିଖୋଳି କୃଷି କରିବା ସହଜ ବ୍ୟାପାର ନୁହେଁ—ସେଥି-ସକାଶେ ଅନ୍ୟ ବ୍ୟବସ୍ଥା କରନ୍ତୁ । ଏହା ଶୁଣି 'ଗଲ୍‌ବେସନ୍' ନିଜ ଆଣ୍ଠୁ ପାଖରୁ ବାଁ ଗୋଡ଼ଟି କାଟି ତାହା ଲଙ୍ଗଳ ରୂପେ ବ୍ୟବହାର କରିବାକୁ ନିର୍ଦ୍ଦେଶ ଦେଲେ । ପରବର୍ତ୍ତୀ କାଳର କାଠ ଲଙ୍ଗଳ ତା'ର ଅନୁକରଣରେ ସୃଷ୍ଟି ହୋଇଛି ।

ଉପରୋକ୍ତ କିମ୍ବଦନ୍ତୀମାନ ସତ୍ୟ ଉପରେ ପ୍ରତିଷ୍ଠିତ କି ନା ତାହା ଏଠାରେ ବିଚାର୍ଯ୍ୟ ନୁହେଁ; ସେଥିରେ ଶବର ଜାତିର ପ୍ରାରମ୍ଭିକ ସଭ୍ୟତା ଓ ସଂସ୍କୃତି ସମ୍ବନ୍ଧୀୟ କି ସଙ୍କେତ ରହିଛି ତାହା ହିଁ ଲକ୍ଷ୍ୟ କରିବାର କଥା । ପ୍ରଥମ କିମ୍ବଦନ୍ତୀ ଶବରଜାତି ଦୃଷ୍ଟିରେ 'ମୟୂର' ପକ୍ଷୀ-ଜାତି ମଧ୍ୟରେ ସର୍ବୋତ୍କୃଷ୍ଟ ବୋଲି ସୂଚନା ଦିଏ । କାରଣ ତାହା ଯେପରି ସୁନ୍ଦର ଓ ମନୋହର ସେହିପରି ବିପଦ ବିନାଶକ ଏବଂ ମଙ୍ଗଳ ବିଧାୟକ । ଦ୍ୱିତୀୟ କିମ୍ବଦନ୍ତୀରେ 'ହାତୀ' ବନ୍ୟପଶୁ ମଧ୍ୟରେ ସର୍ବୋତ୍ତମ ରୂପେ ଗୃହୀତ । ଆକାର ଦୃଷ୍ଟିରୁ ସେ ଯେପରି ବିରାଟ ଓ ବପୁଷ୍ମାନ୍, ଉପକାର ଦିଗରୁ ସୁଖସମ୍ପଦ ଦାନ କରିବାରେ ସିଦ୍ଧହସ୍ତ । ଏହାର ଦର୍ଶନ ସ୍ପର୍ଶନରେ ସର୍ବବିଧ ଦୁଃଖ ଦୂର ହୁଏ । ତୃତୀୟ କିମ୍ବଦନ୍ତୀ ବର୍ଣ୍ଣିତ ପାନିଆ

ଉତ୍ତମାଙ୍ଗର ସୌନ୍ଦର୍ଯ୍ୟବର୍ଦ୍ଧକ ହେବା ସଙ୍ଗେ ସଙ୍ଗେ ଅଙ୍ଗଲାବଣ୍ୟର ପୁଷ୍ଟିକାରକ ଭାବେ ସମାଦୃତ । ସର୍ବଶେଷ କମୁଦଣ୍ଡୀରେ ଖାଦ୍ୟଶସ୍ୟ ଉତ୍ପାଦକ-ଯନ୍ତ୍ର ଲଙ୍ଗଳର ପ୍ରଶସ୍ତି ସ୍ୱଚ୍ଛଳ ଜୀବନଯାତ୍ରାର ସଙ୍କେତ ବହନ କରେ । ସୂକ୍ଷ୍ମଭାବେ ବିଗ୍ୱରକଲେ, ଉକ୍ତ କମୁଦଣ୍ଡୀ-ଗୁଡ଼ିକ ମଧ୍ୟରେ ଶବର ଜାତିର ଆତ୍ମା ନିଖୁଣ ଭାବେ ପ୍ରତିବମ୍ବିତ ଥିବା ପ୍ରତୀତ ହୁଏ । ବର୍ତ୍ତମାନ ଭାରତବର୍ଷର ଜାତୀୟ ପକ୍ଷୀଭାବେ 'ମୟୂର' ଓ ଜାତୀୟ ପଶୁରୂପେ 'ହସ୍ତୀ'କୁ ଯେଉଁ ସ୍ୱୀକୃତି ଦିଆଯାଇଛି ଏବଂ ଯାହା ଦିନେ କଳିଙ୍ଗର ଭଞ୍ଜବଂଶୀ ତଥା ଗଙ୍ଗବଂଶୀ ରାଜାମାନଙ୍କ ଲାଂଛନ ରୂପେ ବ୍ୟବହୃତ ହୋଇ ଆସିଥିଲା ତାହା ସ୍ମରଣାତୀତ କାଳରୁ ଅନ୍ଧକାର ଗିରିଗୁହାନିବାସୀ ଶବର ଦୃଷ୍ଟିକୁ ଅତିକ୍ରମ କରିପାରି ନଥିଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ତାହାର ସୌନ୍ଦର୍ଯ୍ୟବୋଧ ଓ ନିର୍ବାଚନ ପଟୁତାରେ ମୁଗ୍ଧ ନହୋଇ ରହି ହୁଏ ନାହିଁ । ସେ ଅସଭ୍ୟ ନଥିଲା । ଜୀବନଧାରଣ ନିମିତ୍ତ ଖାଦ୍ୟ ଉତ୍ପାଦନର ପ୍ରୟୋଜନୀୟତା ଓ ସେଥିପାଇଁ କୃଷିର ଆବଶ୍ୟକତା ପଦେ ପଦେ ଅନୁଭବ କରିଥିଲା ଏବଂ ମୁଖ୍ୟ ଉପକରଣ ଲଙ୍ଗଳକୁ ଜନଜୀବନର, ଅପରିହାର୍ଯ୍ୟ ଅଙ୍ଗ ରୂପେ ଗ୍ରହଣ କରିଥିଲା । ଏହା ତାହାର ବିଚକ୍ଷଣ ଦୂରଦୃଷ୍ଟିର ପରିଚାୟକ ସେଥିରେ ସନ୍ଦେହ ନାହିଁ । ତାଛଡ଼ା କେଶପ୍ରସାଧନର ପ୍ରଧାନ ସାମଗ୍ରୀ ପାନିଆକୁ ସାମାଜିକ ଜୀବନରେ ସ୍ୱତନ୍ତ୍ର ମର୍ଯ୍ୟାଦା ଦେବାଦ୍ୱାରା ଅର୍ଦ୍ଧାଙ୍ଗିନୀ ନାରୀ ଜାତିପ୍ରତି ସଶ୍ରଦ୍ଧ ସମ୍ମାନ ଯେପରି ପ୍ରକଟିତ, ପାରିବାରିକ ଜୀବନକୁ ସମ୍ପୂର୍ଣ୍ଣ ଉପଭୋଗ କରିବା ପ୍ରବୃତ୍ତି ମଧ୍ୟ ସେହିପରି ପ୍ରତିଫଳିତ । ଏ ସବୁକୁ ଯଦି ସଭ୍ୟତା ବୁଝାନଯାଏ ତେବେ ସଭ୍ୟତା ଅଚିହ୍ନା ହୋଇ ହିଁ ରହିଯିବ ।

ଏହାବାଦେ ଶବରମାନଙ୍କ ସଂସ୍କୃତି, ଦେଖିଲେ ମଧ୍ୟ ନ୍ୟୂନମାନର ବୋଲି ବୁଝାଯାଇ ନପାରେ । ସମାଜର ଆତ୍ମା ହେଉଛି ସଂସ୍କୃତି । ତାହା ଏଭଳି କୌଣସି ବସ୍ତୁ ନୁହେଁ ଯାହାକୁ ହାତରେ ଧରି ଦେଖେଇ ହେବ । ସମାଜର ନୃତ୍ୟ, ସଙ୍ଗୀତ, ଚିତ୍ରକଳା, ଭାସ୍କର୍ଯ୍ୟ ପ୍ରଭୃତିରେ ତାହା ପ୍ରକଟିତ ହୁଏମାତ୍ର । ସେ ଦୃଷ୍ଟିରୁ ବିଗ୍ୱର କଲେ ଶବରମାନଙ୍କ ବିଚକ୍ଷଣ ହସ୍ତଶିଳ୍ପ ଓ ଚିତ୍ରକଳା ଦେଖିଲେ ମନେହୁଏ ତାହା ଅନ୍ୟଠାରୁ ଧାର କରି ଆଣିବା ବିଦ୍ୟାନୁହେଁ, ତାଙ୍କର ଏକାନ୍ତ ନିଜସ୍ୱ । ଦୈନନ୍ଦିନ ଜୀବନ ଧାରଣର ଅବିଚ୍ଛେଦ୍ୟ ଅଙ୍ଗ—ଯାହା ନଥିଲେ ସେମାନଙ୍କ ପ୍ରାଣଧାରଣ ଦୁର୍ବହ ହୋଇପଡ଼େ । ପ୍ରକୃତିଦତ୍ତ କଞ୍ଚାମାଲକୁ ପ୍ରାକୃତିକ ଉପାୟରେ କର୍ମୋପଯୋଗୀ କରିବାର କୌଶଳ ସେ ଜାତିକୁ ବେଶ୍ ଜଣାଥିଲା । ମାଟି ତିଆରି ହାଣ୍ଡି, ମାଠିଆ, ଗିନା, ଦୀପାଳୀ ପ୍ରଭୃତି ଦେଖିଲେ ଏହାର ସତ୍ୟତା ହୃଦୟଙ୍ଗମ କରିହୁଏ । ମାଟିପାତ୍ର ସେ ଜାତିର ଅତି ପ୍ରୟୋଜନୀୟ ବସ୍ତୁ । ଦୈନିକ ଖାଦ୍ୟ ପ୍ରସ୍ତୁତିଠାରୁ ପର୍ବପର୍ବାଣି ପର୍ଯ୍ୟନ୍ତ ସବୁ କାର୍ଯ୍ୟରେ ତାହାର ଆବଶ୍ୟକତା । ଶୁଭକର୍ମ ଓ ଉତ୍ସବାଦି କାଳରେ ମାଟିହାଣ୍ଡି ଦେହରେ ସୂର୍ଯ୍ୟ, ସାପ, ହାତୀ, ମୟୂର ଚିତ୍ରମାନ ଲେଖି ଉପରଉପରି ଘରଚାଳରେ ଲଟକେଇଥାଆନ୍ତି । ଫସଲ ଆମଦାନୀ ସମୟରେ ନୂଆଁ ଧାନ, ମାଣ୍ଡିଆ, କାଙ୍ଗୁ, ସୁଆଁ ଯାହା ଯେଉଁ ଋତୁରେ ଆଦାୟ ହୁଏ ତାହା ହାଣ୍ଡି ଭିତରେ ପୂରାଇ

ରଖାଯାଏ । ପର୍ବପର୍ବାଣି ଦିନରେ ତାହା ବାହାର କରି ପିଠାପଣା ପ୍ରସ୍ତୁତ କରି ଦେବତାଙ୍କୁ ଉତ୍ସର୍ଗ କରନ୍ତି । ମାଟି ହାଣ୍ଡି ନିର୍ମାଣ କରିବା କୌଶଳ କେତୋଟି ନିର୍ଦ୍ଦିଷ୍ଟ ପରିବାରଛଡ଼ା ସମସ୍ତଙ୍କୁ ଜଣାନଥାଏ ।

ମୃଣ୍ମୟ ପଦାର୍ଥ ବ୍ୟତୀତ ଶବର ଜାତିର ଆଉ ଏକ ମୁଖ୍ୟ ଉପକରଣ ହେଲା ବାଦ୍ୟଯନ୍ତ୍ର । ଶବର ନୃତ୍ୟପ୍ରିୟ ଗୀତ ଗାଇ ନାଚିବା ସେ ଜାତିର ଜୀବନ । କିଛିଦିନ ପର୍ଯ୍ୟନ୍ତ ସେ ନିରାହାରରେ ରହିଯାଇପାରେ କିନ୍ତୁ ନୃତ୍ୟ, ଗୀତ ବିନା ବଂଚିବା ତା ପକ୍ଷେ ଅସମ୍ଭବ । ସେଥି ସକାଶେ 'ତାମ୍ବୁରି', 'ଢୋଲ', 'ଜଗାଦିଡଂ', 'କୁରାଂରପଂଙ୍' ପ୍ରମୁଖ ବାଦ୍ୟଯନ୍ତ୍ର ତିଆରି କରି ସର୍ବଦା ପାଖରେ ରଖିଥାଏ । ତାହା ବଜାଇ ଶବର ଜାତିର କି ସ୍ତ୍ରୀ କି ପୁରୁଷ ଆବାଳବୃଦ୍ଧ ଆନନ୍ଦରେ ନୃତ୍ୟକରି ତାଳେ ତାଳେ ସଙ୍ଗୀତର ଲହରୀ ଖେଳାଇ ଦିଅନ୍ତି । ତାହା ତାଙ୍କ ସ୍ୱାଭାବିକ ଜୀବନଯାତ୍ରାର ଅଙ୍ଗବିଶେଷ । ଯାନିଯାତ୍ରା ଦିନରେ ତାହା ହୁଏ ସାର୍ବଜନୀନ । ଦେବତା ବା ପିତୃପୁରୁଷ ଉଦ୍ଦେଶ୍ୟରେ ଉତ୍ସବର ଆୟୋଜନ ହେଲାବେଳେ 'କୁରାଂରପଂଙ୍' ବାଦ୍ୟ ବଜାଇ ସେମାନଙ୍କୁ ନୃତ୍ୟସ୍ଥଳୀକୁ ଆମନ୍ତ୍ରିତ କରାଯାଏ । ସେ ଯନ୍ତ୍ର ବାଜିଲେ ମୃତ ପିତୃପୁରୁଷ ଓ ଦେବତାମାନେ କୁଆଡ଼େ ଆନନ୍ଦରେ ମସଗୁଲ ହୋଇ ଉତ୍ସବ ସ୍ଥାନକୁ ଚାଲିଆସନ୍ତି । 'କୁରାଂରପଂଙ୍' ଯନ୍ତ୍ରଟି ଖଣ୍ଡେ ଦୁଇଫୁଟିଆ ବାଉଁଶରେ ନିର୍ମିତ । ବାଉଁଶର ଅଗ୍ରଭାଗଟି ମୟୂର ମୁଣ୍ଡପରି । ପଛପଟକୁ ଦୁଇଟି ସରୁ ଲାଇ ବନ୍ଧା ହୋଇଥାଏ । ଆଙ୍ଗୁଳି ସାହାଯ୍ୟରେ ବଜାଇଲେ ସେଥିରୁ ମଧୁର ଧ୍ୱନି ନିର୍ଗତ ହୁଏ । ସେହିପରି 'ଦୁଦୁରପଂଙ୍' ମଧ୍ୟ ଏକପ୍ରକାର ବାଉଁଶ ତିଆରି ଯନ୍ତ୍ର । ତାହାକୁ ଶୁଭକର୍ମରେ ବ୍ୟବହାର କରନ୍ତି । ଏହାଛଡ଼ା 'ରଗଡ଼ପଂଙ୍' ବୋଲି ଏକ ସ୍ୱତନ୍ତ୍ର ବାଦ୍ୟଯନ୍ତ୍ର ବିବାହ ସମୟରେ ବ୍ୟବହୃତ ହେଉଥିବା ଦେଖାଯାଏ । ମୟୂରପୁଚ୍ଛ ଖଞ୍ଜି ସବୁଯନ୍ତ୍ରକୁ ଚିତ୍ର ବିଚିତ୍ର କରାହୋଇଥାଏ । ବାଉଁଶ ତିଆରି ବଂଶୀ ମଧ୍ୟ ସେମାନଙ୍କ ଅତି ପ୍ରିୟ ବାଦ୍ୟଯନ୍ତ୍ର । ମଇଁଷି ଶିଙ୍ଗକୁ କାହାଳି କରି କେତେ କର୍ମରେ ବ୍ୟବହାର କରିବା ବିଧି ମଧ୍ୟ ରହିଛି । ଶବର ଜାତିର ବିଶେଷତ୍ୱ ହେଲା ଯେଉଁ ବାଦ୍ୟଯନ୍ତ୍ର ଶୁଭକର୍ମରେ ବ୍ୟବହୃତ ହୁଏ, ତାହା ମୃତ୍ୟୁ, ଭୂତ-ପ୍ରେତାଦିର ଉତ୍ପାତ, ମହାମାରି, କଲେରା, ବସନ୍ତ ପ୍ରଭୃତି ରୋଗ ଦୂର କରିବା ସମୟରେ ବ୍ୟବହାର କରାଯାଏ ନାହିଁ । 'ଗଗରପଂଙ୍', 'ମିମିର ପଂଙ୍' ତାମ୍ବୁରି ପ୍ରଭୃତି ବାଦ୍ୟ ମଙ୍ଗଳ କାର୍ଯ୍ୟରେ ବଜାଇବା ସେମାନଙ୍କ ଜାତୀୟପ୍ରଥା । ପର୍ବପର୍ବାଣି ଦିନ-ମାନଙ୍କରେ ବାଦ୍ୟଯନ୍ତ୍ରଗୁଡ଼ିକୁ ସେମାନେ ପବିତ୍ର ବସ୍ତୁ ଭାବି ଭୋଗରାଗ ଦେବାରେ ମଧ୍ୟ ଅବହେଳା କରିନଥାନ୍ତି ।

ଏହାବାଦେ ଘରକାନ୍ଥର ଝୁଟି ଚିତ୍ର ଶବର ଜାତିର ମୌଳିକ ସୌନ୍ଦର୍ଯ୍ୟବୋଧର ଅନ୍ୟତମ ନିଦର୍ଶନ । ତାଙ୍କ ଭାଷାରେ କହିଲେ ତାହା 'ଇତଲଙ୍' । ପ୍ରତି ଫସଲ ଆମଦାନି ଋତୁରେ ତାହାର ନବୀକରଣ ହୁଏ । 'ଇତଲଙ୍' ଲେଖାହେଲାବେଳେ ଚିତ୍ରକର କାମ ସରିଲାଯାଏଁ ଉପବାସରେ ରହେ । ଚାଉଳ ପିଠଉ ବା ପାଣିରେ ପାଉଁଶଗୋଳି ଚିତ୍ର ଅଙ୍କା

ଯାଏ । ପୂର୍ବବର୍ଣ୍ଣିତ କାନ୍ଥ ବାହାରେ ରଙ୍ଗମାଟି ଲିପି ଲାଲ କରାଯାଇଥାଏ । କାନ୍ଥ ମଝିରେ ଗୋଲିଆ କିମ୍ବା କୋଣ ବିଶିଷ୍ଟ ଚିତ୍ରଟିଏ । ତା ଚାରିପଟେ ମଣିଷର ଛବି । ସବୁ ଚିତ୍ର ରେଖା ମାଧ୍ୟମରେ ଅଙ୍କିତ ଥାଏ । ମଧ୍ୟଭାଗରେ 'ଲବେସଙ୍ଗ'ଙ୍କ (ଧରଣୀ ଦେବତା) ଚିତ୍ର । ତା' ପାଖେ ହାଲଧରି ଚାଷକରୁଥିବା ମଣିଷଟିଏ । ତାହା ପୂର୍ବପୁରୁଷଙ୍କ ସଙ୍କେତ ବୋଲି ମଧ୍ୟ କେହି କେହି କହନ୍ତି । ତାକୁ ଲାଗି 'ଦେମରାକଡୁଂ'—ଏ ଉତ୍ତମ ଫସଲ ଉତ୍ପାଦନର ଦେବତା । ଠାଏ ଠାଏ ଧାନକେଣ୍ଡାର ବୋଝ ମୁଣ୍ଡେଇଥିବା ସ୍ତ୍ରୀ ଚିତ୍ର ମଧ୍ୟ ତାଙ୍କ ପାଖକୁ ଲେଖାଥିବା ଦେଖାଯାଏ । 'ଇତଲଙ୍ଗ' ସେ ଜାତିର ପ୍ରଧାନ ଉତ୍ସବ । ଆଉ ଋତୁକୁ ଭଲ ଫସଲ ଫଳାଇବା ଉଦ୍ଦେଶ୍ୟରେ ଚିତ୍ରସବୁ ଅଙ୍କାଯାଇଥାଏ । ସୂର୍ଯ୍ୟ, ଚନ୍ଦ୍ର, ତାରା, ମାଙ୍କଡ଼, ପକ୍ଷୀ, ମୃଗ ସହିତ ମୃତପୁରୁଷଙ୍କ କଙ୍କାଳ ଚିତ୍ରମାନ ଘରର ଭିତରେ, ବାହାରେ, ଚାଳଉପରେ, କାନ୍ଥ ବାହାରେ ଫୁଟି ଦିଶୁଥାନ୍ତି । ଘର ମଝିକାନ୍ଥରେ ଅସ୍ତ୍ରାଗାର ଓ ତାକୁ ଲାଗି ହାତୀଉପରେ ବସିଥିବା ଜଣେ ରଜା ଭେଣ୍ଡିଆର ଦୃଶ୍ୟ ଅତୀବ ଚମତ୍କାର । ତାକୁ କୁଆଡ଼େ 'କିତଲମଙ୍ଗ୍' କୁହାଯାଏ । ସେ ଛତ୍ରଧରି ବସିଥାନ୍ତି ହାତୀ ଉପରେ ଏବଂ ପୁରୋଭାଗରେ ଅଶ୍ୱାରୋହୀ । ଶବରଙ୍କ ଧାରଣା ଏହାଦ୍ୱାରା ଚୋରଭୟ କିମ୍ବା ରୋଗଭୟ ରହେ ନାହିଁ ଯେହେତୁ 'ଇତଲମଙ୍ଗ୍' ସବୁ ବିପଦର ନାଶକର୍ତ୍ତା ।

ଏସବୁ ଛଡ଼ା ଆଉ ଏକ ପ୍ରକାର ଚିତ୍ର ରହିଛି ଯାହା ଶବର ଜାତିର ସାମାଜିକ ଓ ସାଂସ୍କୃତିକ ଚେତନାର ସ୍ପଷ୍ଟ ପରିଚୟ ପ୍ରଦାନ କରେ । ତାହାହେଲା ଦେବତାଙ୍କ ବିବାହ-ଗାଥା ସମ୍ବନ୍ଧୀୟ ଝୁଟି ଚିତ୍ର । ଦେବତା ହାତୀ ବା ଘୋଡ଼ା ଉପରେ ବସିଥାନ୍ତି । ତାଙ୍କ ଆଗରେ 'ଇତଲଙ୍ଗ୍' ହାତଯୋଡ଼ି ଠିଆହୋଇ ରହିଥାନ୍ତି ଏବଂ ବାଁପଟକୁ ଫସଲ ବୋଝ ମୁଣ୍ଡାଇ ଛିଡ଼ାହୋଇଥାନ୍ତି ଶସ୍ୟଦେବତା 'ଗଡ଼ଲସନ୍' । ଚୋରଙ୍କୁ ଜଗିଥାନ୍ତି ଦୁଇଟି କାଳସର୍ପ । ହାତୀର ଉପରେ ବସିଥିବା ଦେବତାଙ୍କ ପାଇଁ ବିରାଟ କୋଠାଘର ଏବଂ ସେ ମଧ୍ୟରେ ତାଙ୍କୁ ଘେରି ନୃତ୍ୟ କରିବା ଦୃଶ୍ୟ । ବାହାରେ ମାଙ୍କଡ଼ ପଲ ଗଛ ଉପରେ ଡିଆଁ-ମାରୁଥାନ୍ତି । ଭୋଜି ଯୋଗାଡ଼ିବା ପାଇଁ ଗୃହପତି ହାତରେ ଛେଲି, ବନ୍ୟଜନ୍ତୁ ଶିକାର ଧରି ଆସୁଥିବା ଦାସ ପରିଜନ ଏବଂ ଭୋଜି ପରଷା ପାଇଁ ମହୁହାଣ୍ଡି ଚିତ୍ର ସାଙ୍ଗକୁ ଅନିମନ୍ତ୍ରିତ ଭୋଜିରଙ୍କାଙ୍କୁ କୁକୁର ଗୋଡ଼ାଉଥିବା ଚିତ୍ର ଦେଖିଲେ ମଣିଷ ନହସି ରହିପାରେ ନାହିଁ । ଏହାବାଦେ ଗୃହ ଚିତ୍ରରେ ଦେବତାଙ୍କ ରହଣି ସକାଶେ ସ୍ୱତନ୍ତ୍ର କୋଠରିର ଅବସ୍ଥା ଆହୁରି ଚମତ୍କାର । ଘରକୁ ଦେବତା ଆସିଲେ ରହିବେ କେଉଁଠି ? କୁଟୁମ୍ବଘରେ ରହିବା ସୁବିଧା-ଜନକ ନୁହେଁ । ବସାଉଠା କରିବା, ସ୍ୱଚ୍ଛନ୍ଦରେ ନିଦ୍ରାଯିବା, ବିଶ୍ରାମନେବା ପ୍ରଭୃତିରେ ବ୍ୟାଘାତ ଉପୁଜିପାରେ । ତେଣୁ ଅନ୍ଧାରୁଆ ଜାଗା ଦରକାର । ଦେବତାଙ୍କୁ ସର୍ବସମକ୍ଷରେ ରଖିବା ଶବରଙ୍କ ପରମ୍ପରା ନୁହେଁ । କାରଣ ସେଥିଦ୍ୱାରା ତାଙ୍କ ଧ୍ୟାନ ଭଙ୍ଗ ଘଟେ ଏବଂ ସେ ବିରକ୍ତ ହୁଅନ୍ତି । ଫଳରେ ଗୃହପତିର ଅମଙ୍ଗଳ ହୁଏ । ସୁତରାଂ ରନ୍ଧାଘରର ଅନ୍ଧାର କୋଣର

'ଶିକା'ରେ ମାଟିହାଣ୍ଡି ଭିତରେ ପୂର୍ବପୁରୁଷ ରହିଥିବା କଥା ସେମାନେ କହନ୍ତି । ଏ ପ୍ରଥା ଦକ୍ଷିଣ ଓଡ଼ିଶାର କେତୋଟି ପାଟକ କୁଳରେ ଏଯାବତ୍ତ ଚଳି ଆସୁଥିବା ଦୃଷ୍ଟ ହୁଏ । ଏହାକୁ 'ଇଶାଣକୋଣ' ବୋଲି କହନ୍ତି ।

ଏହି ପରିପ୍ରେକ୍ଷୀରେ ଉଷାକୁଟି, ବିକ୍ରମଖୋଲ, ଉଲ୍ଲାସଗଡ଼, ଧୋବଡିହି, ମାଣିକମୁଣ୍ଡା, ସିଂଘାଣପୁର ପ୍ରଭୃତି ସ୍ଥାନରେ ବର୍ତ୍ତମାନ ଆବିଷ୍କୃତ ପଥର ଗାତର ଚିତ୍ରଗୁଡ଼ିକ ତତ୍‌ସମୟ ଶବରମାନଙ୍କ କଳାଚିତ୍ର ବୋଲି ନିର୍ବିବାଦରେ କହିପାରୁ । ସଙ୍କଟ ମୁହଁରୁ ରକ୍ଷାପାଇବା ପାଇଁ ତାହା ସେଠାରେ ଖୋଦିତ ହୋଇଥିଲା । ଧଉଳିର ଦକ୍ଷିଣକୁ ଥିବା 'ଅଶ୍ୱତ୍ଥାମା' ପାହାଡ଼ରେ ଖୋଦିତ ହସ୍ତୀ ମୂର୍ତ୍ତି କଳିଙ୍ଗ ଶବରଙ୍କ କଳାକୁଶଳତାର ଅନ୍ୟତମ ନିଦର୍ଶନ—ଏଥିରେ ସନ୍ଦେହ ନାହିଁ । କିନ୍ତୁ ଅଧିକାଂଶ ଐତିହାସିକ ତାହା ଅଶୋକଙ୍କ ଦ୍ୱାରା ନିର୍ମିତ ବୋଲି କହିଥାଆନ୍ତି । କଳିଙ୍ଗର ଦୁର୍ଭାଗ୍ୟ ଯେ ଯାହା କିଛି କଳାକୀର୍ତ୍ତି ଦେଶରେ ବିଦ୍ୟମାନ୍ ତାହା ହୁଏତ ବୌଦ୍ଧ, କିମ୍ବା ଜୈନ ଅବଦାନ ଛଡ଼ା ଅନ୍ୟ କିଛି ନୁହେଁ ବୋଲି ଧାରଣା କରାହୋଇଆସୁଛି । ସମସ୍ତେ ଏକସ୍ୱରରେ ସେ କଥା କହନ୍ତି, ଯେପରିକି ପୂର୍ବରୁ କଳିଙ୍ଗରେ ଆଦୌ କିଛି ନଥିଲା—ପ୍ରଜାକୁଳ ଖାଲି ଶୂନ୍ୟେ ଶୂନ୍ୟେ ଜୀବନ ଯାପନ କରୁଥିଲେ । ସେ ମଧ୍ୟରୁ ଗୋଟିଏ 'ଅଶ୍ୱତ୍ଥାମା' ହସ୍ତୀ କଥା ବିଚାରକୁ ନିଆଯାଉ । ପୂର୍ବରୁ ଦର୍ଶାଯାଇଛି, ହାତୀ, ମୟୂର, ପାନିଆ ପ୍ରଭୃତି ପ୍ରତି ଶବରଙ୍କ ଆଦର କିପରି ପରମ୍ପରା କ୍ରମେ ଚଳି ଆସୁଥିଲା । ଶବର ସଂସ୍କୃତି ସହିତ ଉକ୍ତ ବସ୍ତୁଗୁଡ଼ିକର ଅବିଚ୍ଛିନ୍ନ ସମ୍ପର୍କ ରହିଥିଲା । ତେଣୁ ଘର କାନ୍ଥ, ମଟିକୋଠା, ଦେବତାସ୍ଥାନ ସବୁରେ ସେ ଚିତ୍ରମାନ ଶୋଭାପାଉଥିଲା । ତା'ର ପ୍ରରୋଚନାରେ ପ୍ରାକ୍ତନ କଳିଙ୍ଗର କେହି ଶବରରାଜା ପ୍ରସ୍ତର ହସ୍ତୀ ନିର୍ମାଣ କରାଇ ରାଜ୍ୟର କେନ୍ଦ୍ରସ୍ଥଳୀରେ ସ୍ଥାପିତ କରିଥିବା ବିଚିତ୍ର ନୁହେଁ । ତାଛଡ଼ା ଅଶୋକଯୁଗୀୟ ଅନ୍ୟ ମୂର୍ତ୍ତିମାନ ପରି ଅଶ୍ୱତ୍ଥାମା ହସ୍ତୀର ଗାତ୍ର ମସୃଣ କିମ୍ବା ଚକ୍‌ଚକ୍ ନୁହେଁ—ଏହା ଖଦଡ଼ିଆ ଓ କର୍କଶ । ତେଣୁ ଏହା ବୌଦ୍ଧଯୁଗର ବହୁ ପୂର୍ବରୁ କଳିଙ୍ଗର ଅଜ୍ଞାତନାମା କୌଣସି ଶବର ରାଜାଙ୍କ ଅତୁଟ କଳାକୀର୍ତ୍ତି କହିବା ଅଧିକ ଯୁକ୍ତିସଙ୍ଗତ ନୁହେଁ କି ?

କିନ୍ତୁ ଏତେ ଲୋକପ୍ରିୟ ହେଲେ ସୁଦ୍ଧା ଶବର ଘରର କୌଣସି ଜାଗାରେ ଆଦରସ ସମ୍ବଳିତ ଅଶ୍ଳୀଳ ଚିତ୍ର ଦେଖିବାକୁ ମିଳେନାହିଁ । ଦେବତା ଉଦ୍ଦେଶ୍ୟରେ କିମ୍ବା ଦୈନନ୍ଦିନ ଜୀବନ ଯାତ୍ରା ଉପରେ କେବଳ ସେସବୁ ଆଧାରିତ । ଏହା ସେ ଜାତିର ଆତ୍ମସଂଯମର ପରିଚାୟକ । ସଂଯମ ସେ ଜାତିର ଜନ୍ମଗତ ଗୁଣ । ବୈବାହିକ ପ୍ରଥାରୁ ମଧ୍ୟ ସେୟା ସୂଚିତ ହୁଏ । ଶବର ଜାତିର ବିବାହ ସାଧାରଣତଃ ଗାନ୍ଧର୍ବ ଶ୍ରେଣୀର । ଯୁବକ ଯୁବତୀଙ୍କ ପରସ୍ପର ଆସକ୍ତି ଓ ସମ୍ମତି ଉପରେ ତାହା ପର୍ଯ୍ୟବସିତ । ଉଭୟ ଉଭୟଙ୍କ ସମ୍ମତି ଦେଲା ପରେ ଅଭିଭାବକଙ୍କ ଦ୍ୱାରା ତାହା ଅନୁମୋଦିତ ହୁଏ । ତା'ପରେ ବିବାହକାର୍ଯ୍ୟ ସମ୍ପନ୍ନ ହୁଏ । କେତେକ ସ୍ଥଳରେ କନ୍ୟାପକ୍ଷରୁ ଉପହାର ଏବଂ ବର ପକ୍ଷରୁ କନ୍ୟାସୁନା ଦେବାବିଧି ରହିଛି । ବାସ୍ତବପକ୍ଷେ କିନ୍ତୁ ତାହା ଯୌତୁକ ନୁହେଁ । ନୂତନଭାବେ ଗଢ଼ିଉଠୁଥିବା ବନ୍ଧୁତାର

ନିଦର୍ଶନ । ତାହା ଯେତିକି ସରଳ ଓ ନିରାଡ଼ମ୍ବର ସେତିକି ଆନନ୍ଦ ଉଦ୍ଦୀପକ । ଉଭୟପକ୍ଷ ବନ୍ଧୁବାନ୍ଧବ ମିଶି ଏକତ୍ର ଖାଦ୍ୟପେୟ ସମାପନ କରିଦେଲେ ହେଲା । କିନ୍ତୁ ସେଥିରେ ସ୍ଥୁଲି ବା ସଲପ ମଦ୍ୟର ନିଶ୍ଚିତ ବ୍ୟବସ୍ଥା ହେବା ଆବଶ୍ୟକ, ଯେହେତୁ ଶବରମାନଙ୍କ ମଦ୍ୟ ହେଉଛି ଭୋଜନସାମଗ୍ରୀର ଅପରିହାର୍ଯ୍ୟ ଅଙ୍ଗ ।

ଶବରମାନେ ମଦ୍ୟଭଳି ଖାଦ୍ୟ ଉପରେ ବିଶେଷ ଗୁରୁତ୍ୱ ଦିଅନ୍ତିନାହିଁ । ତଥାପି ଜନ୍ତୁମାଂସ ତାଙ୍କର ପ୍ରିୟଖାଦ୍ୟ । ବଣରୁ ଜନ୍ତୁ ଶିକାର କରି ଆଣିବା ସେ ଜାତିର ଏକ ପୌରୁଷୋଚିତ କର୍ମ । ସେଥିଦ୍ୱାରା ଯୁବତୀ ମନ ଶିକାରୀପ୍ରତି ଆକୃଷ୍ଟ ହୋଇଥାଏ । ଜନ୍ତୁମାଂସ ରାନ୍ଧି ଗାଁ ଲୋକେ ଏକତ୍ର ମିଳିମିଶି ଖାଇବାରେ ତାଙ୍କର ଆନନ୍ଦ । ଶବରପଲ୍ଲୀମାନେ ମଦପିଇ, ମାଂସ ଖାଇ ନାଚକରିବା ଏକ ସାମାଜିକ ଉତ୍ସବ । ମାଂସ ନପାଇଲେ ବଣଜାତ କନ୍ଦ, ଫଳ, ମୂଳ, କୋଳି ଯାହା ମିଳିଲା ଖାଇ ଦିନ କଟାଇଦିଅନ୍ତି । ନା ଚିନ୍ତା, ନା ଭାବନା—ଲତା ଗହଳରୁ କୋଳି ଗଣ୍ଡାଏ ତୋଳି ଆଣିଲେ ହେଲା । କୌଣସି କୋଳି ତାଙ୍କର ଅଚିହ୍ନା ନଥାଏ । କଇଁଠ, କରନ୍ଦା, ବଇଁଚ, କରମଙ୍ଗା, ନରକୋଳି, ଅଁଳାକୋଳି, କଣ୍ଟେଇକୋଳି, ଜାମୁକୋଳି, ଖଜୁରିକୋଳି, କେନ୍ଦୁକୋଳି ସବୁ ଚିହ୍ନି ରଖିଥାନ୍ତି । କୋଳି ଯେମିତି ସ୍ୱାଦୁ ସେମିତି ସ୍ୱାସ୍ଥ୍ୟକର । କିନ୍ତୁ ସେଗୁଡ଼ିକର ନାଁ ତାଙ୍କୁ ଜଣାନାହିଁ । ପଚାରିଲେ କହନ୍ତି 'ବୋ ଜକାବ୍ ଅଗଗୁରଂ' ଅର୍ଥାତ୍ 'ଏକ ପ୍ରକାର ଫଳ ।' ଏହାର କାରଣ—ଶାବରୀ ଏକ ଦୁର୍ବଳ ଭାଷା । ସେଥିରେ ବ୍ୟବହୃତ ଶବ୍ଦାବଳୀର ଭାବପ୍ରକାଶନ ସାମର୍ଥ୍ୟ ସୀମିତ । ପୁନଶ୍ଚ ଆବଶ୍ୟକ ବର୍ଣ୍ଣମାଳା ଅଭାବରୁ ଇତର ଭାଷାର ଶବ୍ଦ ତାଙ୍କ ମୁହଁରେ ସହଜରେ ଉଚ୍ଚାରିତ ହୋଇପାରେ ନାହିଁ, ଅଥଚ ନୂତନ ଶବ୍ଦ ସୃଷ୍ଟିପାଇଁ ତାହା ଯଥେଷ୍ଟ ନୁହେଁ । ଏହାର ଲିଖିତ ବର୍ଣ୍ଣମାଳା ନାହିଁ । ଭାଷାବିତ୍‌ମାନେ କଥିତ ବର୍ଣ୍ଣସମୂହ ସମୀକ୍ଷାକରି ନିମ୍ନଲିଖିତ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ—ସେ ଭାଷାରେ ବସ୍ତୁତଃ ସ୍ୱରବର୍ଣ୍ଣ ସାତଟି ଏବଂ ବ୍ୟଞ୍ଜନବର୍ଣ୍ଣ ଷୋହଳଟି । କିନ୍ତୁ ଉଚ୍ଚାରଣରେ 'ଅ' ଦୁଇଟି, 'ଆ' ଗୋଟିଏ, 'ଇ' ତିନୋଟି, 'ଉ' ଚାରୋଟି, 'ଏ' ଦୁଇଟି ଏବଂ 'ଓ' ଦୁଇଟି—ଏପରି ଭାବେ ୧୪ ପ୍ରକାର ସ୍ୱରଧ୍ୱନି ପ୍ରଚଳିତ । ତାଛଡ଼ା କ, ଗ, ଙ, ଜ, ଜ, ଞ, ଡ଼, ଢ଼, ନ, ପ, ବ, ମ ସ୍ପର୍ଶବର୍ଣ୍ଣ ସହିତ ର, ସ, ଜ, ଲ ମିଶିଲେ ଷୋହଳଟି ବ୍ୟଞ୍ଜନ ବର୍ଣ୍ଣ । ବ୍ୟଞ୍ଜନ ବର୍ଣ୍ଣର ସ୍ୱଳ୍ପତା ଯୋଗୁ ଭାଷାରେ ପରିବର୍ତ୍ତନ ମଧ୍ୟ ସହଜସାଧ୍ୟ ହୁଏନାହିଁ । ପୁନଶ୍ଚ ଶବ୍ଦ ପରିବର୍ତ୍ତନର କାରଣମାନ; ଯଥା—ବାଗ୍‌ଯନ୍ତ୍ରର ବୈବିଧ୍ୟ, ଶ୍ରୁତି ବୈଚିତ୍ର୍ୟ, ସରଳୀକରଣ ଏବଂ ନୂତନ ବାତାବରଣ ମଧ୍ୟରୁ ପ୍ରଥମଟି ବାଦ୍‌ଦେଲେ ଅନ୍ୟଗୁଡ଼ିକର ସ୍ଥାନ ନାହିଁ ସେ ଭାଷାରେ । ତେଣୁ ଲୋକ-ମୁଖରେ ବର୍ଣ୍ଣଗୁଡ଼ିକ ଉଚ୍ଚାରିତ ହେଲାବେଳେ ପ୍ରଥମାବସ୍ଥାରେ ତାରତମ୍ୟ ଦେଖାଗଲେ ସୁଦ୍ଧା ଅଭ୍ୟାସଦ୍ୱାରା ଆପେଆପେ ମାର୍ଜିତ ହୋଇପଡ଼େ । ଅତଏବ ଯେଉଁ ଭାବରେ ସେ ଭାଷା ଆବହମାନକାଳରୁ ଉଚ୍ଚାରିତ ହୋଇ ଆସୁଛି ଏବେ ବି ତାହାର ପରିବର୍ତ୍ତନ ଘଟିନାହିଁ ।

ଶାବରଭାଷା ମୁଣ୍ଡାରି ପରିବାରରେ ଅନ୍ତର୍ଭୁକ୍ତ । ଏହାର ପଦ ଗଠନ ପ୍ରଣାଳୀ ଅଦ୍ଭୁତ ଧରଣର । ଉପସର୍ଗ ଓ ପରସର୍ଗ ଏହାର ପ୍ରଧାନ ଅବଲମ୍ବନ । ପଦ ଗଠନ କାଳରେ ମୂଳ ଶବ୍ଦର ଆଦି କମ୍ବା ଅନ୍ତରେ କିଛି ଧ୍ୱନି ଯୋଗ ନହେଲେ ଅର୍ଥବୋଧ ହୋଇପାରେ ନାହିଁ । ଦ୍ୱିତୀୟତଃ, ଶବ୍ଦାର୍ଥର ବୈଶିଷ୍ଟ୍ୟ ଦର୍ଶାଇବାପାଇଁ ଉଚ୍ଚାରିତ ଶବ୍ଦର ପୁନରାବୃତ୍ତି ଘଟିଥାଏ । ଯଥା—ଜୁମ୍—ଖାଇବା, ଜୁମ୍‌ଂଜୁମେ—ଖାଇଦେବା, ଡ-ଉଠିବା, ଡଆଁ ଡଲେ-ଉଠିଯିବା ଇତ୍ୟାଦି । ତୃତୀୟରେ ପରିଚିତ ପଦ ସାହାଯ୍ୟରେ ଅପରିଚିତ ପଦାର୍ଥ ଚିହ୍ନିତ ହୁଏ । ଯଥା—‘ଇଗଲ’ ପକ୍ଷୀ ପାଇଁ ‘ବୋ ଜଜାବ୍ ଅଡ଼ନ୍ତର’ ଅର୍ଥାତ୍ ଏକ ପ୍ରକାର ପକ୍ଷୀ, ‘ବେହେଲ’ ପାଇଁ ‘ବୋ ଜଜାବ୍ ଗଡ଼ଗଡ଼େଙ୍’ ଅର୍ଥାତ୍ ‘ଗଡ଼ଗଡ଼େଙ୍’ ଭଳି ଏକ ବାଦ୍ୟ । ଚତୁର୍ଥତଃ ବିଧିକୁ ନିଷେଧ ଏବଂ ନିଷେଧକୁ ବିଧିବାକ୍ୟ ଦ୍ୱାରା ପ୍ରକାଶ କରିବା ଏହାର ଅନ୍ୟତମ ବୈଶିଷ୍ଟ୍ୟ । ଓଡ଼ିଆରେ ଯେପରି, ମୁଁ ‘ଯିବିନି ?’ ଅର୍ଥ ‘ଯିବି’,‘ସେ ମରିବ ?’ ଅର୍ଥ ‘ମରିବନି’ ସେହିପରି । ଆଦ୍ୟରେ ପୁରୁଷ ଓ ସ୍ତ୍ରୀସୂଚକ ଶବ୍ଦ ଯୋଗରେ ପୁଂଲିଙ୍ଗ ଓ ସ୍ତ୍ରୀଲିଙ୍ଗ ଚିହ୍ନିତ ହୁଏ । ଓଡ଼ମାରଙ୍ =ଓଡ଼ିଆ ଲୋକ (ପୁରୁଷ), ଓଡ଼ ବୋଦଙ୍—ଓଡ଼ିଆସ୍ତ୍ରୀ । ତାର ଅନୁକରଣରେ ଓଡ଼ିଆ ଭାଷାରେ ଅଣ୍ଡିରିଛେଳି—ମାଈଛେଳି, ଅଣ୍ଡିରି ବାଛୁରି—ମାଈ ବାଛୁରୀ ପ୍ରଭୃତିର ବ୍ୟବହାର ଦେଖାଯାଏ । ତାଛଡ଼ା ସେ ଭାଷାର କୌଣସି ଗୋଟିଏ ଶବ୍ଦ ଦୁଇଟି ଅର୍ଥରେ ପ୍ରଯୁକ୍ତ ହୁଏ ନାହିଁ ଏବଂ ସ୍ଥଳେ ସ୍ଥଳେ ପଦାଂଶ ମଧ୍ୟ ପଦାର୍ଥ ପ୍ରକାଶ କରିବାରେ ଅସମର୍ଥ ନୁହେଁ । ଯାହାହେଉ ଏ ଭାଷା ଇତର ଶାଖାମଧ୍ୟରେ ପ୍ରମୁଖ ବୋଲି ଉଥିଲେ ସୁଦ୍ଧା ସର୍ବତ୍ର ଏ ରୀତି ଅନୁସୃତ ହୁଏ ନାହିଁ । ଦେଶକାଳ ବ୍ୟବଧାନ ହେତୁ ତାହା ରୂପାନ୍ତରିତ ହୋଇ ପଡ଼ିଛି । ତେଣୁ ଏକା ଶବରଙ୍କ ମଧ୍ୟରେ କୁସ୍ୱା, କୁଇ, ଜୁଆଙ୍ଗ, ପର୍ଜି, ଗୋଣ୍ଡି ପ୍ରଭୃତି ଭାଷା ଥିଲେସୁଦ୍ଧା ମୂଳତଃ ଶାବରୀ ହେଉଛି ଆଦିଭାଷା—ପ୍ରସ୍ତରଯୁଗୀୟ ଭାଷା । କଳିଙ୍ଗର ପର୍ବତ ଶିଖରବାସୀ ‘ସୌରା’ ସମ୍ପ୍ରଦାୟ ମଧ୍ୟରେ ଅଦ୍ୟାପି ଏହା ପ୍ରଚଳିତ । ଏତେ ଦୁର୍ବଳତାସତ୍ତ୍ୱେ ଅନ୍ତରର ଗଭୀରତମ ପ୍ରଦେଶରୁ ସ୍ୱତଃସ୍ଫୂର୍ତ୍ତି ବାତ୍ସଲ୍ୟ, କାରୁଣ୍ୟ, ପ୍ରେମ, କୌତୁକାଦି ଭାବ ପ୍ରକାଶ କରିବାରେ ତାହା ଅକ୍ଷମ ନଥିଲା । ଶିଶୁ ପୁଆଙ୍କୁ କୋଳରେ ଶୁଆଇବା, ଦେବତାଙ୍କୁ ପ୍ରାର୍ଥନା କରିବା, ତରୁଣ-ତରୁଣୀ ପରସ୍ପର ପ୍ରେମ ନିବେଦନ କରିବା, ପାଚିଲା ଫସଲ ଆମଦାନୀ ସମୟରେ ସେମାନଙ୍କ କଣ୍ଠରୁ ଯେଉଁ ସଙ୍ଗୀତର ସ୍ୱର ଲହରୀ ଝରିଉଠେ ତାହା ଅକ୍ଷରାକାରରେ ଲିପିବଦ୍ଧ ନହେଲେ ସୁଦ୍ଧା ପରଂପରାକ୍ରମେ ଏଯାବତ୍ ଝଙ୍କାର ତୋଳି ଆସୁଛି । ଦୃଷ୍ଟାନ୍ତସ୍ୱରୂପ କୋମଳମତି ଶିଶୁକୁ ଶୁଆଇବାବେଳେ ମା’ମାନଙ୍କ ଗୀତ—

ତଂତଂ ଡ଼ଙ୍ଗ୍‌ଜା ଆବାଇ ଗୋଙ୍ଗ୍ ତୋନାଙ୍ଗେନ୍
ଡଡ଼ଂ ଡଡ଼ଂ ନାଜା ଆବାଇ ଗୋଙ୍ଗ୍ କାଜ ଙ୍ଗେନ୍
ଉଙ୍ଗଲ୍ ତୋଦା ଆବାଇ ଗୋଙ୍ଗ୍ ତୋ ନାଂ ଙ୍ଗେନ୍
ଅଡଲ ବାଜା ଆବାଇ ଗୋଙ୍ଗ୍ କା କଂ ଙ୍ଗେନ୍ ।

**ଆରଣ୍ୟକ ସମାଜ—**

ପାର୍ବତ୍ୟ ଶବର ଛଡ଼ା ଆରଣ୍ୟକ ଭାବେ ଅନ୍ୟ ଏକ ଶବର ଗୋଷ୍ଠୀ ବିଦ୍ୟମାନ ଏମାନେ କନ୍ଧ, କୋହ୍ଲ, ଲୋଧା, ସାନ୍ତାଳ, ପରଜା ପ୍ରଭୃତି ନାମରେ ଓଡ଼ିଶାର ଗଞ୍ଜାମ, ଫୁଲବାଣୀ, ପୁରୀ, କୋରାପୁଟ ଜିଲ୍ଲା ସମେତ ଆନ୍ଧ୍ରପ୍ରଦେଶର ଉତ୍ତରପ୍ରାନ୍ତ ଶ୍ରୀକାକୁଲମ୍, ବିଶାଖାପାଟଣା ଜିଲ୍ଲା, ବଙ୍ଗଳା ଓ ମଧ୍ୟପ୍ରଦେଶ ଓଡ଼ିଶା ସଂଲଗ୍ନ ଜିଲ୍ଲାର ସମତଳ ନିଘଞ୍ଚ ଜଙ୍ଗଲ କୋଳରେ ଜନକୋଳାହଳ ଅନ୍ତରାଳରେ ବସବାସ କରି ଆସୁଛନ୍ତି । ଆରଣ୍ୟକ ଗୋଷ୍ଠୀ ମଧ୍ୟରେ କନ୍ଧ ସଂପ୍ରଦାୟର ଜନସଂଖ୍ୟା ସର୍ବାଧିକ ଏବଂ ସଂସ୍କୃତି ଓ ସଭ୍ୟତା କ୍ଷେତ୍ରରେ ସେମାନେ ଅଧିକତର ଉନ୍ନତ । ତେଣୁ ସେମାନଙ୍କୁ ଆଖି ଆଗରେ ରଖି ଆରଣ୍ୟକ ସଭ୍ୟତାର ସଙ୍କେତ ତଳେ ଦିଆଗଲା ।

କନ୍ଧମାନେ ଅତି ସରଳ ଓ ନିଷ୍କପଟ ସ୍ୱଭାବର । ବଡ଼ ଅମାୟିକ ଏ ଜାତି । ଏକ ପ୍ରକାର 'ନିର୍ବୋଧ' କହିଲେ ଚଳେ । କାହାର ଅଚତୁର ବ୍ୟବହାର ଦେଖିଲେ ବୋକା ବଦଳରେ ତାକୁ କନ୍ଧ ବୋଲି କହିବା ଲୋକ ଚଳଣିରେ ରହି ଆସିଛି । ସ୍ୱଭାବ ସରଳ ହେଲେ ସୁଦ୍ଧା କନ୍ଧର ବୀରତ୍ୱ ଓ ସାହସିକତା ଅତୁଳନୀୟ । କାହା ବିରୁଦ୍ଧରେ ଥରେ ମାତିଲେ ଆଉ ପଛ ଘୁଞ୍ଚା ଦେବା ସେ ଜାଣେ ନାହିଁ । ଶତ୍ରୁ ଆକ୍ରମଣବେଳେ ଧନୁ, ଶର, ଖଣ୍ଡା, କାତି, ଟେଣ୍ଟା, ଭୂଷା ସାହାଯ୍ୟରେ ଦଳବଦ୍ଧ ହୋଇ କିପରି ଯୁଦ୍ଧ କରିବାକୁ ହୁଏ ବେଶ୍ ଭଲ ଜଣା ତାକୁ । ସମ୍ମୁଖ ଯୁଦ୍ଧ ଛଡ଼ା ଗରିଲା ବାହିନୀ ପରି ଲଟାବୁଦାରେ ଲୁଚିଛପି ଶତ୍ରୁ ବିନାଶ କରିବାରେ ଧୁରନ୍ଧର । ଅତିମାତ୍ରାରେ ସ୍ୱାଧୀନଚେତା ସେ । ସ୍ୱାଧୀନତା ଉପରେ କାହାର ହସ୍ତକ୍ଷେପକୁ ସହଜରେ ସେ ବରଦାସ୍ତ କରେ ନାହିଁ । ସ୍ମରଣାତୀତ କାଳରୁ ତାର ସେ ସ୍ୱଭାବ ଅପରିବର୍ତ୍ତିତ ରହିଥିବା ଦେଖାଯାଏ । କିନ୍ତୁ ମାନବିକତା ଦିଗରୁ ଦେଖିଲେ କନ୍ଧ ଅତି ଉଦାର ଗୁଣ ସଂପନ୍ନ ଓ ରାଜଭକ୍ତ ପ୍ରଜା । ତାହାର ଅତିଥିପରାୟଣତା ଲୋକଙ୍କୁ ବଶୀଭୂତ କରେ । ଧନୀ ହେଉ ଦରିଦ୍ର ହେଉ କିଛି ଯାଏ ଆସେ ନାହିଁ—ଘରେ ଯାହା ଅଛି ଅତିଥି ଚର୍ଚ୍ଚା ହେବ । ଖୋଲାମନ ଖୋଲାହୃଦୟ । ଆଦୌ ଆବିଳତା ନଥାଏ ସେଥିରେ । କିନ୍ତୁ ଏ ଜାତି ଦରିଦ୍ର ଶ୍ରେଣୀର । ବାସ, ଗ୍ରାସ, ପୋଷାକ, ପରିଚ୍ଛଦର ଅଭାବ ସର୍ବଦା ଲାଗି ରହିଥାଏ । ତଥାପି ଅବୟବର ଗଠନ ଯେପରି ବଳିଷ୍ଠ ସେପରି ସୁନ୍ଦର । ସର୍ବଦା ହସହସ ମୁଖ-ସଦାନନ୍ଦୀ । ଯାହା ମିଳିଲା ସେତିକରେ ସନ୍ତୁଷ୍ଟ । ଫସଲ ଅମଳ ବେଳର ଆନନ୍ଦ କହିଲେ ନସରେ । ପାର୍ବତ୍ୟ ଶବର ସଦୃଶ ଏ ଜାତି ମଧ୍ୟ ମଦ୍ୟ ପ୍ରିୟ । ମହୁଲ, ସଲପ, ଗୁଡ଼ଳରୁ ପ୍ରସ୍ତୁତ ମଦପିଇ ସର୍ବଦା ମସଗୁଲ୍ ।

ବୃତ୍ତି ଓ ବାସସ୍ଥାନ ଭେଦରେ ଆରଣ୍ୟକ ଶବର ବିଭିନ୍ନ ନାମରେ ନାମିତ ହେଲେ ସୁଦ୍ଧା ସମସ୍ତଙ୍କ ଜୀବନଧାରା ସମାନ କହିଲେ ଚଳେ । ପ୍ରାୟ ସମସ୍ତ ଗୋଷ୍ଠୀରେ ଉପଗୋଷ୍ଠୀ-ଶାଖାଗୋଷ୍ଠୀ ଗଠିତ ହୋଇ କ୍ଷୁଦ୍ର କ୍ଷୁଦ୍ର ଦଳରେ ବିଭକ୍ତ ଘଟିଥିବା ଦେଖାଯାଏ । କନ୍ଧ

ଗୋଷ୍ଠୀ ମଧ୍ୟରେ ଡଙ୍ଗରିଆ କନ୍ଧ, ବେଣିଆ କନ୍ଧ, କୁଟିଆ କନ୍ଧ, ଦେଶିଆ କନ୍ଧ ଓ ମାଳିଆ-କନ୍ଧ ନାମରେ ବିଭିନ୍ନ ଶ୍ରେଣୀ ରହିଛନ୍ତି । ସେମାନେ ସମସ୍ତେ ବଣ ଓ ପାହାଡ଼ ଉପରେ ନିର୍ଭର କରି ଚଳନ୍ତି । ବଂଶାନୁକ୍ରମେ କୃଷିଜୀବୀ ହେଲେ ସୁଦ୍ଧା ଏମାନେ ମୂଳତଃ ବଣର ଜନ୍ତୁ ଶିକାର ଓ କାଠ ଫଳମୂଳ ସଂଗ୍ରହ କରି ଉଦର ପୋଷଣ କରନ୍ତି । ତେଣୁ ମାଳ, ଡଙ୍ଗର ଓ ପାହାଡ଼ତଳ ଅଞ୍ଚଳକୁ ବାସସ୍ଥଳୀ ରୂପେ ବାଛିଥାନ୍ତି । ଏମାନଙ୍କ ବାସସ୍ଥଳୀ 'କନ୍ଧମାଳ' ନାମରେ ଅଭିହିତ । ଗଞ୍ଜାମ, ଫୁଲବାଣୀ ସୀମାନ୍ତ ସଂଲଗ୍ନ ବୌଦ୍ଧ ପାର୍ବତ୍ୟ ଅଞ୍ଚଳକୁ 'ବୌଦ୍ଧ କନ୍ଧମାଳ' ବୋଲି କୁହାଯାଏ ।

କନ୍ଧମାନେ ଦଳଦଳ ହୋଇ ବାସ କରନ୍ତି । ମାଟି, ଝାଟି, କାଠ କାଦୁଅରେ ଘରମାନ ଛିଆରି କରି ଉପରେ ଡାଳ ପତ୍ର, ଛଣ, ଛେଲି ଛପର କରିଥାନ୍ତି । ଘରଗୁଡ଼ିକ ଧାଡ଼ି ଧାଡ଼ି ଗଢ଼ି ଉଠିଥାଏ । କେତେକ ଖାଲ ଜାଗାକୁ ଉପର ମାଟି ସମାନ ଉଚ୍ଚରେ ପଥର ଚଦର ଘୋଡ଼ାଇ ଘରରୂପେ ବ୍ୟବହାର କରିଥାନ୍ତି । କିନ୍ତୁ ନିପଟ ଉଚ୍ଚାବଚ ଭୂମିରେ ହିଁ ସେ ଶ୍ରେଣୀର ଘର ନିର୍ମିତ ହୋଇଥାଏ । ଘର କାନ୍ଥରେ ଗୁହାଳବନ୍ଧା ପିଠଉ ଓ କାଳିକଳା ମାଟି ଲିପା ହୋଇ ପାର୍ବତ୍ୟ ଶବରଙ୍କ ପରି ରେଖାଚିତ୍ର ଏବଂ ପୂର୍ବଜଙ୍କ ଛବି ଅଙ୍କିତ ହୋଇଥାଏ । ଚିତ୍ର ମଧ୍ୟରେ ହାତୀ, ମୃଗ, ଧାନକେଣ୍ଡା, ସ୍ୱସ୍ତିକ, ଚନ୍ଦ୍ର ପ୍ରଭୃତିର କଳାପାଟବ ଆରଣ୍ୟକ ସଂସ୍କୃତିର ନିଦର୍ଶନ କହିବା ଅତ୍ୟୁକ୍ତି ନୁହେଁ । ବସ୍ତି ମଧ୍ୟରେ ବ୍ୟକ୍ତିଗତ ଘରଛଡ଼ା ସାଧାରଣ ବ୍ୟବହାର ପାଇଁ କେତୋଟି କୋଠରି ନିର୍ମିତ ହୋଇଥାଏ । ଯେଉଁଗୁଡ଼ିକୁ 'ଧାଙ୍ଗଡ଼ା' ଘର, 'ଧାଙ୍ଗଡ଼ୀ' ଘର ବା 'ବୁଇ' ଘର କହନ୍ତି । ଧାଙ୍ଗଡ଼ା ଘର ସାଧାରଣତଃ କିଶୋର ବୟସର ପୁଅପିଲାଙ୍କ ପାଇଁ ଉଦ୍ଦିଷ୍ଟ । ଭିଆସୁଣୀ ଝିଅଙ୍କ ପାଇଁ 'ଧାଙ୍ଗଡ଼ୀ'ଘର ଏବଂ ବାଳୁତ ପିଲାଙ୍କ ସକାଶେ 'ବୁଇ' ଘର । ବସତି ଗୁଡ଼ିକରେ ଆଠ ଦଶଟିରୁ ଅଧିକ ସଂଖ୍ୟକ ପରିବାର ରହିଥିବା ଦେଖାଯାଏ ନାହିଁ । ଏମାନଙ୍କ ପାରିବାରିକ ଜୀବନ ଅତ୍ୟନ୍ତ ସରଳ । ଯୌଥ ଜୀବନକୁ ପସନ୍ଦ କରନ୍ତି ସେମାନେ । ବାପ, ମା, ପୁଅ, ବୋହୂ, ଯା, ନଣନ୍ଦ, ଦିଅର, ଭାଉଜ ଏକା ଘରେ ରହିଥାଆନ୍ତି । ସ୍ୱଚ୍ଛଳ ପରିବାରରେ ଅବଶ୍ୟ ସ୍ୱତନ୍ତ୍ର ବଖରାର ବ୍ୟବସ୍ଥା ଥାଏ । ପୁଅ ହେଉ ବା ଝିଅ ହେଉ ଅବିବାହିତ ଥିଲାଯାଏଁ ଧାଙ୍ଗଡ଼ା ଘରେ ରାତି କଟାଇ-ଥାନ୍ତି । ଧାଙ୍ଗଡ଼ୀଙ୍କ ଦେଖାଶୁଣା କରିବା ପାଇଁ ଜଣେ ବୟସ୍କା ସ୍ତ୍ରୀ ଲୋକ ନିଯୁକ୍ତ ଥାଏ । ଗାଁ ଲୋକ ପାଳିକରି ତାର ବ୍ୟୟଭାର ବହନ କରନ୍ତି । ଧାଙ୍ଗଡ଼ା ଓ ଧାଙ୍ଗଡ଼ୀ ଘରଗୁଡ଼ିକ ଗୀତ, ନାଚ, ଢ଼ଗ, ବୋଲି, ଖେଳ, କସରତ ସବୁର କେନ୍ଦ୍ରସ୍ଥଳୀ ରୂପେ ବ୍ୟବହୃତ ହୁଏ ।

କନ୍ଧ ପରିବାରରେ ବାପ ହେଉଛି ମୁରବୀ । ସଭିଙ୍କ ଉପରେ ତା'ର ଅଧିକାର । ବାପ ପରେ ବଡ଼ ପୁଅ । ପୁଅ ନଥିଲେ ପୋଷ୍ୟପୁତ୍ର ନେବା ବିଧି ପୁରୁଷାନୁକ୍ରମେ ରହି ଆସିଛି । ଔରସ ସନ୍ତାନ ପରି ପୋଷ୍ୟପୁତ୍ର ମଧ୍ୟ ପୈତୃକ ସମ୍ପତ୍ତିର ଅଧିକାରୀ ହୋଇ କୁଳାଗ୍ନିର ଅତୁଟ ରକ୍ଷି କାର୍ଯ୍ୟ କରେ । ବିବାହିତ ପୁଅ କୌଣସି କାରଣରୁ ବାପ'ମାଙ୍କ ଠାରୁ ଅଲଗା ହୋଇ ସ୍ୱତନ୍ତ୍ର ଘରେ ରହିଲେ ସୁଦ୍ଧା ବାପ କଥାକୁ ଅମାନ୍ୟ କରେ ନାହିଁ । ଏ ସମ୍ପ୍ରଦାୟରେ

ବହୁ ବିବାହ ପ୍ରଥା ସର୍ବସମ୍ମତ । ସନ୍ତାନ ହେବାର ଆଶା ନଦେଖିଲେ ପୁରୁଷ ବିନା-ଦ୍ୱିଧାରେ ଅନ୍ୟ ସ୍ତ୍ରୀକୁ ବିବାହ କରେ ଏବଂ ପ୍ରଥମା ସ୍ତ୍ରୀର ମଧ୍ୟ ଆପତ୍ତି ନଥାଏ ସେଥିରେ । ପୁରୁଷଙ୍କ ପରି ଏ ଜାତିର ସ୍ତ୍ରୀମାନେ ଅତ୍ୟଧିକ କଷ୍ଟସହିଷ୍ଣୁ । ଘରକରଣାର ଯାବତୀୟ ଦାୟିତ୍ୱ ତାଙ୍କର ଉପରେ । କ୍ଷେତ ବାଡ଼ରେ ମଞ୍ଜିବୁଣାରୁ ଆରମ୍ଭ କରି ଫସଲ ଅମଳ ଶେଷରେ ହାଟ ବଜାରରେ କଣାବିକା ପର୍ଯ୍ୟନ୍ତ ସବୁ ଦାୟିତ୍ୱ ସେମାନଙ୍କର । ଜନ୍ତୁ ଶିକାର କାଠ ହାଣିବା, ମହୁଲ, ସଲପାଦି ବୃକ୍ଷରୁ ମଦ୍ୟ ସଂଗ୍ରହ କରିବା ପୁରୁଷଙ୍କ ମୁଖ୍ୟ କର୍ମ । ଘରୋଇ କର୍ମରେ ଆଦୌ ହସ୍ତକ୍ଷେପ କରନ୍ତିନି ସେମାନେ । ମୋଟାମୋଟି ଏ ସଂପ୍ରଦାୟର ପୁରୁଷ ଅପେକ୍ଷା ନାରୀ ଜାତି ଅଧିକ ଚଳଚଞ୍ଚଳ ଓ ପରିଶ୍ରମୀ । ଏପରିକି ସନ୍ତାନ ପ୍ରସବ ହେଲଯାଏଁ ଗର୍ଭବତୀ ଯୁବତୀ ପରିଶ୍ରମ କରୁଥିବା ଦେଖାଯାଏ ।

ଆରଣ୍ୟକ ହେଲେ ସୁଦ୍ଧା ଏ ସଂପ୍ରଦାୟର ସାମାଜିକ ଚଳଣି ମାନବିକ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ । ଜାତ କର୍ମରୁ ଆରମ୍ଭ କରି ଅନ୍ତ୍ୟେଷ୍ଟି ପର୍ଯ୍ୟନ୍ତ ଚଳି ଆସୁଥିବା ବିଧି ବିଧାନମାନଙ୍କରେ ତାହାର ସ୍ପଷ୍ଟ ଚିତ୍ର ପ୍ରତିଫଳିତ । ଶିଶୁ ଜନ୍ମ ହେଲ ମାତ୍ର ମା'ବାପ ମନରେ ଯେଉଁ ଆନନ୍ଦ ତାହା ବିଭିନ୍ନ ଦିନର ଉତ୍ସବ ମାଧ୍ୟମରେ ପ୍ରକଟିତ ହୋଇଥାଏ । ପ୍ରସବର ତୃତୀୟଦିନ ପ୍ରଥମେ 'ଇଶାଣ'ରେ ଥିବା ପିତୃପୁରୁଷଙ୍କୁ କୁକୁଡ଼ାଛୁଆ ବଳିଦେଇ ସେହି ରକ୍ତର କିଛି ଅଂଶ କାନ୍ଥରେ ଓ ଆଉ କିଛି ଦାଣ୍ଡ ଦୁଆରେ ଲେପିଥାଆନ୍ତି—କାରଣ ସେଥିଦ୍ୱାରା ଭୂତ ପ୍ରେତ ଘରେ ପ୍ରବେଶ କରିପାରିବ ନାହିଁ । ଏଇଠି ଲକ୍ଷ୍ୟ କରିବା କଥା, ପାର୍ବତ୍ୟ ଶବରଙ୍କ ପରି ଆରଣ୍ୟକ ଗୋଷ୍ଠୀରେ ମଧ୍ୟ ପିତୃପୁରୁଷମାନେ ଘରର ଅନ୍ଧାରୁଆ 'ଇଶାଣ' କୋଣରେ ସ୍ଥାପିତ ହେବା ବିଧି ରହିଛି । ଶିଶୁର ଏକୋଇଶା ଦିନ ନାମକରଣ ପାଇଁ ସ୍ଥାନୀୟ ଜାନି ବା ଦିଶାରିକୁ ଡକରାଯାଏ । ସେ ଆସି ଦୁଇ ହାତରେ ବାଉଁଶ ଧନୁଟିଏ ଧରି ଶିଶୁର ବାପର ପିତୃପିତାମହଙ୍କ ନାମ ଗୋଟି ଗୋଟି କରି ଉଚ୍ଚାରଣ କରେ । ଯେଉଁ ନାଁ ଧଇଲବେଳେ ଧନୁ ଥରି ଉଠେ ଅଜା, ଆଈ କମ୍ବା କୁଟୁମ୍ବର ବୟୋବୃଦ୍ଧ ବ୍ୟକ୍ତି ଦ୍ୱାରା ଶିଶୁଙ୍କୁ ସେଇ ନାଁ ଦିଆଯାଏ । ଏହି ଉତ୍ସବର ନାଁ 'ଗଦାଥିରି' ଏବଂ ଏହା ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାରେ ପାଳିତ ହୁଏ ।

ସନ୍ତାନସନ୍ତତି ସମ୍ବନ୍ଧରେ ଆରଣ୍ୟକଙ୍କ ଧାରଣା ଅଦ୍ଭୁତ ରକମର । ଯାହାର ସନ୍ତାନ ଯେତେ ଅଧିକ ସେ ସେତିକି ଭାଗ୍ୟବାନ୍ । କାରଣ ବଡ଼ ହେଲପରେ ସେମାନେ ବାପମାଙ୍କୁ କ୍ଷେତ ଖମାର ଓ ଗୋଠ ଚରାଇବାରେ ସାହାଯ୍ୟ କରନ୍ତି । ତେଣୁ ପିଲାବୟସରୁ ସେମାନଙ୍କୁ କର୍ମଠ କରି ଗଢ଼ା ହୁଏ ଏବଂ ଭେଣ୍ଡା ହେଲେ ଦାଣ୍ଡୀ ଯୁବତୀ ସହିତ ବିବାହ କରାହୁଏ । ବରକନ୍ୟା ଏକାକୁଳର ହୋଇଥିଲେ ବିବାହ ନିଷେଧ । ଯୁବକ ଯୁବତୀ ଭିତରେ ସାଧାରଣତଃ ଗାନ୍ଧର୍ବ ବିବାହ ଅନୁଷ୍ଠିତ ହୋଇଥାଏ । ବରକନ୍ୟା ପରସ୍ପର ପ୍ରେମାବଦ୍ଧ ହେଲେ ଅଭିଭାବକମାନେ ବାଣ୍ଡି ବନ୍ଧମସ୍ତ ପୂର୍ବକ ଶୁଭଦିନ ଦେଖି ବିବାହକାର୍ଯ୍ୟ ସମ୍ପନ୍ନ କରନ୍ତି । କନ୍ୟାମୂଲ୍ୟ ସେ ଜାତିର ପୁରୁଷାନୁକ୍ରମେ ଚଳିଆସୁଥିବା ପ୍ରଥା ରହିଛି । ବରପକ୍ଷ

କେଉଁଠି କେଉଁଠି ତାହା ଦେଇନପାରିଲେ ଝୋଇଁପୁଅ ଶ୍ୱଶୁରଘରେ ଗୋତି ଖଟି ଭରଣା କରିବା ବିଧି ମଧ୍ୟ ରହିଛି । ବିବାହ ପୂର୍ବରୁ ସେ ସମାଜରେ ଯୁବକ ଯୁବତୀଙ୍କ ମିଳାମିଶାରେ କୌଣସି ଆକଟ ନଥାଏ । ବିବାହ ସ୍ଥିର ହେଲେ ବରପକ୍ଷ ଯାଇ କନ୍ୟାକୁ ଲୁଗାଟିଏ ବା ମୁଦିଟିଏ ପିନ୍ଧାଇ ଆସନ୍ତି । ତାପରେ ବିବାହ ଉତ୍ସବର ଆୟୋଜନ କରିହୁଏ । ଭୋଜିଭାତ, ମଦ, ମାଂସ, ନାଚ, ଗୀତରେ ଗାଁ ମୁଖରିତ ହୋଇ ଉଠେ । ସେ ସମାଜରେ ଛାଡ଼ପତ୍ର ଓ ପୁନର୍ବିବାହ ଅତି ସାଧାରଣ ପ୍ରଥା । ସ୍ୱାମୀର ମୃତ୍ୟୁ ପରେ ଦେବର ବିବାହ ମଧ୍ୟ ନିଷିଦ୍ଧ ନୁହେଁ । ସ୍ୱା ସତ୍ତ୍ୱେ ସ୍ତ୍ରୀ, ପୁରୁଷ ଉଭୟେ ଶ୍ରମଜୀବୀ ହେବା ହେତୁ ଦାମ୍ପତ୍ୟ ଜୀବନ ସୁଖମୟ ହୋଇଉଠିଥାଏ । ବ୍ୟଭିଚାର ବିନା ଅନ୍ୟକାରଣରୁ ସ୍ୱାମୀ ସ୍ତ୍ରୀ ମଧ୍ୟରେ ମନୋମାଳିନ୍ୟ କ୍ୱଚିତ୍ ଦେଖାଦିଏ ।

ଆରଣ୍ୟକ ସମାଜରେ ପ୍ରଚଳିତ ଅନ୍ତ୍ୟେଷ୍ଟି କ୍ରିୟା ପାର୍ବତ୍ୟଶ୍ରେଣୀ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ମୃତ ଶରୀରକୁ ଅଗ୍ନିରେ ଦାହ କରିହୁଏ । କିନ୍ତୁ ଗର୍ଭବତୀ ବା ଶିଶୁ ହୋଇଥିଲେ ମାଟି ଖୋଳି ପୋତି ଦିଆଯାଏ । ମୃତ ବ୍ୟକ୍ତିର ଜୀବିତାବସ୍ଥାରେ ବ୍ୟବହୃତ ଜିନିଷ ପତ୍ର କୋକେଇରେ ପକେଇ ଦିଅନ୍ତି ବା ସ୍ଥାନୀୟ 'ସନ୍ଧା' ଆସି ସେଗୁଡ଼ିକୁ ନେଇଯାଏ । ମୃତ୍ୟୁର ଦ୍ୱିତୀୟ ଦିନ ମାଟି ପାତ୍ରରେ ଭାତ ରାନ୍ଧି ମୃତ ଆତ୍ମା ଉଦ୍ଦେଶ୍ୟରେ ଶବବାହକ ଓ ବନ୍ଧୁ ସ୍ୱଜନଙ୍କୁ ଖାଇବାକୁ ଦେଇ ପ୍ରେତକୁ ପ୍ରାର୍ଥନା କରନ୍ତି ଯେ ସେ ଯେପରି ଆଉ ଗାଁକୁ ଫେରି ଆସି ଲୋକଙ୍କୁ ହରକତ ନକରେ । ତୃତୀୟଦିନ ନଡ଼ାଛଣରେ ମୃତବ୍ୟକ୍ତିର ପ୍ରତିମୂର୍ତ୍ତି ନିର୍ମାଣ କରି ଘରଚାଳରେ ଖୋଷି ଦିଆଯାଏ ଏବଂ ଦଶାହଦିନ ମୃତ ଆତ୍ମାର ତୃପ୍ତି ପାଇଁ ବଳିଦେଇ ସେଥିରେ ବନ୍ଧୁବାନ୍ଧବଙ୍କର ଭୋଜନ ବ୍ୟବସ୍ଥା କରିହୁଏ ।

ଆରଣ୍ୟକ ସମାଜରେ ନାନାବିଧ ପର୍ବ ପର୍ବାଣୀ ପ୍ରଚଳିତ । ସେ ମଧ୍ୟରେ ମଞ୍ଜିବୁଣା ଓ ଧାନ ଅମଳକାଳୀନ ଲଙ୍ଗଳ ଧୁଆ ଓ ଚଇତି ପରବ ଦୁଇଟି ପ୍ରଧାନ । ପର୍ବ ସମୟରେ ଗାଁ ମୁଣ୍ଡି ଗଛମୂଳେ ଏକ ପଥର ଖଣ୍ଡ 'ତାନାପେନୁ' ବା ପୃଥିବୀ ଦେବତା ଭାବେ ପୂଜା ପାଆନ୍ତି । ସେ ହେଉଛନ୍ତି ଗ୍ରାମଦେବତୀ । ଆଗେ ତାହାଙ୍କୁ ମଣିଷ ବଳି ଦିଆଯାଉଥିଲା । ଏବେ ମଣିଷ ବଦଳରେ ମେଣ୍ଢା, ମଇଁଷି, କୁକୁଡ଼ା ବଳି ଦିଆଯାଏ । ବଳି ରକ୍ତ ନେଇ କ୍ଷେତରେ ସିଞ୍ଚିଲେ ଧରଣୀ ଦେବତା ବୁଆଡ଼େ ସନ୍ତୁଷ୍ଟ ହୋଇ ଅଧିକ ଶସ୍ୟ ଫଳାନ୍ତି; ବଳି ନଖାଇଲେ ଦେବତା କୌଣସି କାର୍ଯ୍ୟ କରନ୍ତିନି ବୋଲି ତାଙ୍କର ବିଶ୍ୱାସ । ଅନ୍ଧବିଶ୍ୱାସୀ ହେଲେ ସୁଦ୍ଧା କନ୍ଧ ସମାଜ ଜୀବନକୁ ବେଶ୍ ଉପଭୋଗ କରିଜାଣେ । ପାର୍ବତ୍ୟ ଶବରଙ୍କ ପରି ଗୀତ, ବାଦ୍ୟ, ନୃତ୍ୟ ଏବଂ ମଦ୍ୟପାନ କରିବାରେ ନରନାରୀ ଉଭୟେ ଆନନ୍ଦ ଅନୁଭବ କରନ୍ତି । ସ୍ତ୍ରୀମାନେ ବୃତ୍ତାକାରରେ ହାତ ଛନ୍ଦାଛନ୍ଦି ହୋଇ ନୃତ୍ୟ କଲାବେଳେ ପୁରୁଷମାନେ ତାଳେ ତାଳେ ବାଦ୍ୟ ବଜାନ୍ତି ଓ ବାଳକ ବାଳିକା ନାନା ଛନ୍ଦରେ ଗୀତ ବୋଲନ୍ତି । ସେତେବେଳକୁ ସମସ୍ତେ ମଉଆଳ ।

ପାର୍ବତ୍ୟ ଶବରଗୁଡ଼ିକ କନ୍ଧମାନେ ଯେପରି ମଦ୍ୟପ ପୋଡ଼ୁଚାଷ କରିବାରେ ସେପରି କୁଶଳ । ତାଙ୍କ କହିବାରେ ସମତଳବାସୀ ଓଡ଼ ଶବରଙ୍କଠାରୁ ତାହା ପ୍ରଥମେ ସେମାନେ ଶିକ୍ଷା କରିଥିଲେ । ତା'ର ବଳରେ ଶସ୍ୟ ପନ୍ନପରିବାଦ କ୍ଷେତ୍ର ଓ ବାଡ଼ି ପ୍ରସ୍ତୁତକରି ଉତ୍ପାଦନ କଲେ । ପୂର୍ବକାଳରେ କନ୍ଧ ବଣର ଫଳ, ମୂଳ, କୋଳି, କନ୍ଦ, କରଡ଼, ଶାଗ ପ୍ରଭୃତି ଖାଇ ବଞ୍ଚି ଆସୁଥିଲେ । ସେଥିପାଇଁ ସେମାନଙ୍କୁ ଯାଯାବର ଜୀବନ ଯାପନ କରିବାକୁ ପଡ଼ୁଥିଲା । ହରିଣ, ଠେକୁଆ, ପାରା, ମୟୂର, କପୋତ, କୁକୁଡ଼ା ଯାହା ଯେଉଁଠି ପାଇଲେ ଖାଦ୍ୟରୂପେ ବ୍ୟବହାର କରୁଥିଲେ । ଅଭାବ କାଳରେ ଆମ୍ବକୋଇଲି, ମହୁଲ ଫୁଲ, ଖଜୁରିକନ୍ଦ, ବାଉଁଶ କରଡ଼ ଖାଇ କ୍ଷୁଧା ଶାନ୍ତ କରୁଥିଲେ । କନ୍ଧ ଭାତ ସେମାନଙ୍କର ପ୍ରିୟ ଖାଦ୍ୟ । ପଖାଳଭାତ ସାଙ୍ଗକୁ ଶାଗ ସିଝା ଟିକେ ଖାଇଲେ ଅପାରତୃପ୍ତି ଅନୁଭବ କରନ୍ତି । ତା'ଛଡ଼ା ଭାତ ତୋରାଣିରୁ ପ୍ରଚୁର ମଦ୍ଦ୍ବ ପ୍ରସ୍ତୁତ କରିଥାନ୍ତି । ତାହା କନ୍ଧ ଜାତିର ଏକ ଘରୋଇ ଶିଳ୍ପ । ପୁଣି ମଧ୍ୟ ବଣରୁ ଶାଗ ତୋଳି ଆଣି ତୋରାଣିରେ ସିଝାଇ 'କାଞ୍ଜି' ପ୍ରସ୍ତୁତ କରାଯାଏ । ତାହା ଏକ ପ୍ରଧାନ ତରକାରୀ ରୂପେ ବ୍ୟବହୃତ ହୁଏ । ସେଥିପାଇଁ ନାନାପ୍ରକାର ସ୍ୱାଦୁ ଓ ପୁଷ୍ଟିକର ଶାଗ ଚିହ୍ନି ଦରକାରବେଳେ ତୋଳି ଆଣିଥାଆନ୍ତି । ତେନ୍ତୁଳି, ଚମ୍ପା, ସୋରିଷ, ସୁଣୁସୁଣିଆ, ଗୁଲୁଣ୍ଡା, ସଜନା, ଗନ୍ଧଣା, ମୁଠି, ମଦରଙ୍ଗା ପ୍ରଭୃତି ବଣଶାଗ ସାଙ୍ଗକୁ କୋଶଳା, ବରଗୁଡ଼ି, ଲେଉଟିଆ, ମୂଳା, ପାଳଙ୍ଗ, ବାଳକାଟି, ମାରିସ, ଖଡ଼ା ପ୍ରଭୃତି ଉତ୍ପାଦିତ ଶାଗ ରୂପେ ବ୍ୟବହୃତ ହୁଏ । ତାଛଡ଼ା କଳରା, କାଙ୍କଡ଼, ମକା, ତୋରଡ଼ା, ଜହ୍ନି, ଝୁଟା, ଘିଆ ତୋରଡ଼ା, କନ୍ଦମୂଳ, ଚେରଙ୍ଗା, ମସିଆ, ଖମ୍ବାଳୁ, କଖାରୁ, କାକୁଡ଼ି, ଅଦା, ହଳଦୀ, ମହୁକାଡ଼, ସାଗୁଆ, ତରଭୁଜ ପ୍ରଭୃତି ପରିବା ଉତ୍ପାଦନ ଜାଣିଥିଲେ ସୁଦ୍ଧା ବ୍ୟଞ୍ଜନ ପ୍ରକ୍ରିୟା ଭଲରୂପେ ଜ୍ଞାତ ନଥିଲା । ସୁତରାଂ ସେ ପଦାର୍ଥ ବନ୍ଦମସ୍ତରେ ଉପକୂଳବାସୀଙ୍କଠାରୁ ପ୍ରୟୋଜନୀୟ ବସ୍ତୁମାନ ହସ୍ତ ବନ୍ଦସ୍ତ ସୂତ୍ରରେ ସଂଗ୍ରହ କରି ନେଉଥିଲେ । ଏବେ ସୁଦ୍ଧା ତାହାର ସମ୍ପୂର୍ଣ୍ଣ ବଳୟ ଘଟିନାହିଁ । ଶାଗହେଉ ବା ପରିବାହେଉ ଲୁଣ, ତେଲ ଯୋଗରେ ସିଝାଇ 'ଭାତ' ବା 'ଜାଉ' ସଙ୍ଗେ ଖାଇବାବିନା ସେମାନେ ଅନ୍ୟ ପନ୍ଥା ଜାଣିନଥିଲେ । ମାଣ୍ଡିଆ, ମକା, କାଙ୍ଗୁ, ଜନା, କୋଇଲି ଗୁଣ୍ଡିକୁ ତୋରାଣିରେ ଲୁଣଦେଇ 'ଜାଉ' ପ୍ରସ୍ତୁତ କରାଯାଉଥିଲା । ଏବେ ମଧ୍ୟ ତାହା ସେମାନଙ୍କ ଦୈନନ୍ଦିନ ଖାଦ୍ୟ ରୂପେ ପ୍ରଚଳିତ । ଆରଣ୍ୟକ ଶ୍ରେଣୀଙ୍କ ଦୃଷ୍ଟିରେ ଜୀବନରକ୍ଷା ନିମିତ୍ତ ଖାଦ୍ୟ ଅପେକ୍ଷା ମଦ୍ୟର ଆବଶ୍ୟକତା ଅତ୍ୟଧିକ । ଖାଦ୍ୟ ନମିଳୁପଛେ ମଦ ସରିଏ ହେଲେ ସେ ଜାତି ସଦା ପ୍ରସନ୍ନ । ମନ ଉଲ୍ଲାସରେ ଗୀତଗାଇ ମହାମଉଜରେ ଦିନ କଟାଇ ଦିଏ । ତଥାପି ପାର୍ବତ୍ୟ ସଂସ୍କୃତି ଅପେକ୍ଷା ଆରଣ୍ୟକ ସଂସ୍କୃତି ଅଧିକତର ଉନ୍ନତ ଏଥିରେ ସନ୍ଦେହ ନାହିଁ ।

ସଂସ୍କୃତି ଭଳି ଆରଣ୍ୟକ ଗୋଷ୍ଠୀର ଭାଷା ମଧ୍ୟ ଅପେକ୍ଷାକୃତ ମାର୍ଜିତ ଜଣାପଡ଼େ । ସମତଳବାସୀ ଓଡ଼ ଶବରଙ୍କ ପ୍ରଭାବରେ କନ୍ଧଭାଷା ବଳିଷ୍ଠ ଭାବ ପ୍ରକାଶକ ଭାଷାରେ

ପରିଣତ ହୋଇ ପାରିଛି । ଏଥିରେ ବ୍ୟବହୃତ ଧ୍ୱନି ଓ ବର୍ଣ୍ଣମାନ ଶବର ଭାଷାଠାରୁ ଅଧିକ ଥିବା ଯୋଗୁ ତଦନୁଯାୟୀ ଗଠିତ ଶବ୍ଦାବଳୀର ସଂଖ୍ୟା ମଧ୍ୟ ଅଧିକତର ଏବଂ ମାର୍ଜିତ । ଏ ଭାଷାରେ ସ୍ୱରବର୍ଣ୍ଣ ଅ, ଆ, ଇ, ଉ, ଏ, ଓ, ମିଶି ଛ' ହେଲେ ସୁଦ୍ଧା ଉଚ୍ଚାରଣରେ ଦୀର୍ଘ 'ଏ' ଦୀର୍ଘ 'ଓ' ମିଶି ସମୁଦାୟ ଆଠ; କ, ଖ, ଗ, ଘ, ଚ, ଛ, ଜ, ଝ, ଟ, ଠ, ଡ଼, ଢ଼, ତ, ଥ, ଦ, ଧ, ପ, ଫ, ବ, ଭ, ୟ, ବ, ର, ଲ, ସ, ହ ବ୍ୟଞ୍ଜନ ସାଙ୍ଗକୁ ନ, ମ ଓ ଂ (ଅନୁସ୍ୱାର ) ମିଶିଲେ ଅଣତିରିଶ । ଏପରି ସର୍ବମୋଟ ସଇଁତିରିଶଟି ବର୍ଣ୍ଣ । ଏକାଧିକ ବର୍ଣ୍ଣ ଧ୍ୱନି ସଂଯୋଗରେ ଶବ୍ଦ ଗଠିତ ହୁଏ । ସମସ୍ତ ଶବ୍ଦ ସ୍ୱରାନ୍ତ ହେଲେ ସୁଦ୍ଧା ବ୍ୟଞ୍ଜନାନ୍ତ ଉଚ୍ଚାରଣ ନାହିଁ ବୋଲି କୁହାଯାଇ ନପାରେ । ଶବ୍ଦ ପୂର୍ବରେ ଉପସର୍ଗ ଓ ଅନ୍ତରେ ନାସିକ୍ୟ ଧ୍ୱନି ସେ ଭାଷାରେ ବିରଳ । ଶବ୍ଦ ଏବଂ ଧାତୁ ସହିତ ପ୍ରତ୍ୟୟ ଯୋଗରେ କ୍ରିୟାପଦ ଗଠିତ ହୁଏ । ବିଭକ୍ତି-ପ୍ରତ୍ୟୟ ଧାତୁ-ପ୍ରତ୍ୟୟ ଠାରୁ ଭିନ୍ନ ଥାଏ । ଶବ୍ଦରୂପ ଗଠନ କାଳରେ ସ୍ୱତନ୍ତ୍ର ପ୍ରତ୍ୟୟ ଦ୍ୱାରା ତୃତୀୟା, ପଞ୍ଚମୀ, ଷଷ୍ଠୀ ଓ ସପ୍ତମୀ ବିଭକ୍ତି ଚିହ୍ନିତ ହେଲେ ସୁଦ୍ଧା ପ୍ରଥମା ସକାଶେ କୌଣସି ଚିହ୍ନ ବ୍ୟବହାର କରାଯାଏ ନାହିଁ ଏବଂ ଗୋଟିଏ ବିଭକ୍ତି ପ୍ରତ୍ୟୟଦ୍ୱାରା ଦ୍ୱିତୀୟା ଓ ଚତୁର୍ଥୀ ଉଭୟେ ସଙ୍କେତିତ ହୁଏ । ଯଥା—

ଇଦ୍ଧ୍—ଘରଶବ୍ଦ
ପ୍ରଥମା—ଇଦ୍ଧ୍ (ଘର)
ତୃତୀୟା—ଇଦ୍ଧ୍ତରି (ଘର ଦ୍ୱାରା)
ପଞ୍ଚମୀ—ଇଦ୍ଧ୍ ଦୁ—(ଘରୁ)
ଷଷ୍ଠୀ—ଇଦ୍ଧ୍ତା—(ଘରର)
ସପ୍ତମୀ—ଇଦ୍ଧ୍ରେଇ (ଘରେ)
ଦ୍ୱିତୀୟା ଓ
ଚତୁର୍ଥୀ—ଇଦ୍ଧ୍କି (ଘରକୁ ଏବଂ ଘର ପାଇଁ)

ତା'ଛଡ଼ା ଏକବଚନ ଓ ବହୁବଚନ ସୂଚକ ପ୍ରତ୍ୟୟ ମଧ୍ୟ ରହିଛି । ପୁଲିଙ୍ଗ ଓ ସ୍ତ୍ରୀଲିଙ୍ଗ ରୂପେ ଶବ୍ଦ ଦୁଇ ଶ୍ରେଣୀରେ ବିଭକ୍ତ । କ୍ରିୟାପଦ ଗୁଡ଼ିକ ବର୍ତ୍ତମାନ, ଅତୀତ, ଭବିଷ୍ୟତ, ଆଦେଶ ଓ ସମ୍ଭାବ୍ୟ ରୂପ ପାଞ୍ଚଟି କାଳକୁ ବିଭିନ୍ନ ପ୍ରତ୍ୟୟ ଦ୍ୱାରା ଚିହ୍ନିତ କରନ୍ତି । ଶବ୍ଦରୂପ ଭଳି ଏଥିରେ ମଧ୍ୟ ଦୁଇଟି ବଚନ ପ୍ରଚଳିତ । ଯଥା ବ୍ୟତୀତ ମୁଁ, ତୁ, ସେ, ଇଏ, କିଏ, ଯିଏ ଭଳି ଛ'ଟି ସର୍ବନାମ ଶବ୍ଦର ବ୍ୟବହାର ମଧ୍ୟ ଦେଖାଯାଏ । ବିଶେଷଣ ପଦ ସର୍ବଦା ବିଶେଷ୍ୟାନୁଗାମୀ ନୁହେଁ । ତଥାପି କେତେକ ସ୍ଥଳରେ ବ୍ୟତିକ୍ରମ ନାହିଁ ତା ନୁହେଁ । ଯଥା—'ଇସ୍ୱାଦୁ ବୁଞ୍ଜା ମେହେଂଦୁ'—ସେ ଜଣେ ବୁଢ଼ା ମଣିଷ ଏବଂ 'ଇସ୍ୱାରି ବୁଞ୍ଜାଲୀ ଅସ୍‌ସା' ଇତ୍ୟାଦି । ଇତର ଭାଷାର ଶବ୍ଦାବଳୀ ଗ୍ରହଣ କରିବାରେ ଏ ଭାଷା ପରାଙ୍ମୁଖ ନଥିଲା । ବୋଧହୁଏ, ସମତଳବାସୀ ଓଡ଼ିଆ ସଂପ୍ରଦାୟ ସଂସ୍ପର୍ଶରେ ଆସି

ନୂତନ ଶବ୍ଦ ଆହରଣଦ୍ୱାରା ଅଭାବ ପୂରଣ କରିବା ସଙ୍ଗେ ସଙ୍ଗେ ସ୍ୱକୀୟ ଶବ୍ଦାବଳୀ ଦ୍ୱାରା ଅପର ପକ୍ଷକୁ ପରିପୁଷ୍ଟ କରି ରଖିଥିଲା । ଶାବରୀ ପରିବାର ମଧ୍ୟରେ ଉଭୟ ଅନ୍ତର୍ଭୁକ୍ତ ଥିବା ହେତୁ ଆଦାନ ପ୍ରଦାନରେ ଅସୁବିଧା ନଥିଲା । ତେଣୁ ବୋଧହୁଏ ପରବର୍ତ୍ତୀ ସମୃଦ୍ଧ ଓଡ଼ିଆ ଭାଷାର ଉତ୍ପତ୍ତିପାଇଁ ତାହାକୁ ମୂଳପିଣ୍ଡ କୁହାଯାଏ । ଏହା ପରେ ସ୍ପଷ୍ଟ କରାଯିବ ।

କନ୍ଧ ଭାଷାରେ ଏ ଯାଏଁ ଲିଖିତ ବର୍ଣ୍ଣମାଳା ସୃଷ୍ଟି ହୋଇ ନାହିଁ, ତଥାପି ସେ ଭାଷା-ଭାଷୀ ଲୋକମୁଖରେ ଯେଉଁ ରସସିକ୍ତ କଥା, କାହାଣୀ ଓ ଛନ୍ଦୋବଦ୍ଧ କବିତାମାନ ଶୁଣିବାକୁ ମିଳେ ସେଥିରୁ ତାହାର ବଳିଷ୍ଠତା ପ୍ରମାଣିତ ହୁଏ । ବିବିଧ ଭାବ ପ୍ରକାଶନ ଉପଯୋଗୀ ପଦଯୋଜନା ମାଧ୍ୟମରେ ଅନ୍ତରର ସ୍ୱତଃସ୍ଫୂର୍ତ୍ତି ଭାବୋଚ୍ଛ୍ୱାସକୁ ଗିରିଝରଣା ତୁଲ୍ୟ ପ୍ରବାହିତ କରି ଶ୍ରୋତାକୁ ଅମଳାନନ୍ଦ ସ୍ରୋତରେ ନିମଜ୍ଜିତ କରିବା ପାଇଁ ତାହା କୌଣସି ଗୁଣେ ଅକ୍ଷମ ନୁହେଁ । କନ୍ଧ ଭାଷାର ରଚନା ଗୁଡ଼ିକ ଯେପରି ସରଳ ସେପରି ସ୍ୱଚ୍ଛଳ ଓ ସାବଲୀଳ । ଦୈନନ୍ଦିନ ପରିଶ୍ରମ ଜନିତ ଶାରୀରିକ ଓ ମାନସିକ କ୍ଳାନ୍ତି ଅପନୋଦନ କରିବାରେ ତାହା ଥିଲା ସଞ୍ଜୀବନୀ ସ୍ୱରୂପ । କେତୋଟିର ଉଦାହରଣ ତଳେ ଦିଆଗଲା ।

"ଛତରନକେ ଛତରତଲେ—ବାଜ୍ଞା ବୁଟେନ୍ ବାଂକଝାରେ
ହୁଇଲା ଗୁଡ଼ର ହୁମା ଦୁମା—ଗରି ଆପି ଗ୍ଲେରେ କେମା
ସରକ୍ ମୁନ୍ଦ ରକତ ମୁନ୍ଦ—ସେବା ପୂଜା ଛୁନ ଛୁନ
ଗଡ଼ଦୁଆର ଦୁଆର ଶୁନ—ଯମ ଝିବ ହେଇଥା
ବାଣ ମାରି ଘଣ୍ଟାସୁନ—କଳା ବକା ହେଲେ ଖା
କନ୍ଧେନ୍ ବୁଢ଼ୀ ଭୁଡୁରୁକୁଆ—ଦିଆର ହେଲେନ୍ ଅଥା"

କନ୍ଧମାଳ ଅଞ୍ଚଳରେ ବାସକରିଥିବା ଆରଣ୍ୟକ ଗୋଷ୍ଠୀ 'ଢାଂପ' ବାଦ୍ୟ ବଜାଇ ଯେଉଁ ଗୀତ ବୋଲନ୍ତି ତାହାର ଏକାଂଶ ଏ । ଦେବତାଙ୍କ ଉଦ୍ଦେଶ୍ୟରେ ଏହା ବୋଲାଯାଏ । ସେହିପରି କୋରାପୁଟ ଜଙ୍ଗଲବାସୀ ପରଜା ଗୋଷ୍ଠୀର ଶୃଙ୍ଗାରରସ ସମ୍ବଳିତ ଗୀତଟିଏ ଦେଖନ୍ତୁ । ଏହା ଯୁବକ ଯୁବତୀଙ୍କ ସଂଳାପ ରୂପେ ବୋଲାହୁଏ—

ଯୁବତୀ—ଠପ୍‌କା ବାଦଲ୍ ମସକା ଅରି
ଝିଡ଼ିଆ କୁନାଲ କୁଲ
ସଞ୍ଜ ସଞ୍ଜ ବେଲେ ଆସ୍‌ବ ତମେ
ଧୂର୍ଙ୍ଗିଆ ମାର୍ଙ୍ଗିଲ ପରି ।
ଯୁବକ—ଆସ୍ ବଇଲକୁ ଆସ୍‌କ କଲ
ଝିଟା ରଞ୍ଜା ଛଡ଼ା ହେଲ
ତମ ଘର୍‌ର ଖଳା ଧନ୍ଦ ଶୁନ
ବାଟେ ଇନ୍ଦ ବାହୁଡ଼ଲ ।

ସେହିପରି ଗଦବା ସମ୍ପ୍ରଦାୟର ଗୀତଟିଏ ହେଲା—

ପ୍ରେମିକା—ବାଉଁଶ ମାଇଲା ଚଡ଼ଙ୍ଗ୍ ଘୁଡ଼ଙ୍ଗ୍
ଜାମୁଡ଼ାଲ କୁଆକେ ଧଇଲା ବନେ
କେତେ ହୋଣଇସି ଆମର ଘିନେ
ଆସିବୁ କଖଲ୍ ଜନେ ।
ଜାମୁଡ଼ାଲ, ଆସିବୁ କଖଲ୍ ଜନେ ।

ପ୍ରେମିକ—ବାଆ କଲା ପବନ କଲା
ସେନ୍ଦୁର ପଡର ଡେଲା
ଦେକାକନା, ସେନ୍ଦୁର ପଡର ଡେଲା
ଆ' ଆ' ମର ସେଡ ପାକଲା
ତମେ ଗୁଡ଼ଗଲେ ଆମେ ସ୍ନେକଲା
ବାଟେ ଫୁଲ ଗଛ ଧାଡ଼ ଦେକାକନା
ବାଟେ ଫୁଲ ଗଛ ଧାଡ଼
ସଡ଼କ ବାଟର ରେଙ୍ଗୁଟା ଗୋଡ଼
ମରଗଲେ ନାଇଁ ଛୁଡ଼, ଦେକାବନା ।

ଏହା ମଧ୍ୟ ଅନୁରୂପ ସଂଳାପମୟ ଗୀତକାଟିଏ । ଏହା ଦେଖିଲେ ଆରଣ୍ୟକ ଗୋଷ୍ଠୀର ଭାଷା ନିରକ୍ଷର ହେଲେ ସୁଦ୍ଧା ମନୋଭାବ ପ୍ରକାଶ କରିବାରେ ଅସମର୍ଥ ନଥିଲା ବୋଲି ସ୍ପଷ୍ଟ ପ୍ରମାଣିତ ହୁଏ ।

ଉଲ୍ଲିଖିତ ଆରଣ୍ୟ ସଭ୍ୟତାର ବିଶେଷତ୍ୱ ହେଲା ତାହା ପାର୍ବତ୍ୟ ଚଳଣି ଦ୍ୱାରା ଯେପରି ପ୍ରଭାବିତ ସମତଳ ଓଡ଼ ସଂସ୍କୃତି ମଧ୍ୟ ସେଥିରେ ତତୋଽଧିକ ପ୍ରତିବିମ୍ବିତ । ବନ୍ୟ ଜନ୍ତୁ ଶିକାର କୋଳି କନ୍ଦାଦି ଆହାର, ଗୃହ ଦେବତା ବିଶ୍ୱାସ, ଈଶାଣକୋଣ ଧାରଣା, ଗାଁ ପିଲାଙ୍କ କୋଠ ଘର, ଗାନ୍ଧର୍ବବିବାହ, ଆମୋଦପ୍ରମୋଦ, ମଦ୍ୟପାନ, ପୋଡ଼ୁଚାଷ ପ୍ରଭୃତି ଆଦିମ ଚଳଣିକୁ ଗ୍ରହଣ କଲାପରି ଉଦ୍ଧମ କୃଷିକ୍ଷେତ୍ର, ଶାକସବ୍‌ଜି ସହିତ ଅନ୍ନ ଭୋଜନ, ରନ୍ଧନ କୌଶଳ, ଗ୍ରାମଦେବତା ଉପାସନା, ଜାତକର୍ମ ଓ ଅନ୍ତ୍ୟେଷ୍ଟିକ୍ରିୟାଦି ମାନବିକ ଗୁଣମାନ ସମତଳବାସୀ ସଂପ୍ରଦାୟଠାରୁ ସେ ଆହରଣ କରିଥିଲା । ଏଣୁ ଉଭୟ ସଭ୍ୟତାର ପ୍ରଭାବରେ ଆରଣ୍ୟକ ସମାଜର ଜୀବନ ଧାରଣ ପ୍ରଣାଳୀ ଥିଲା ପାର୍ବତ୍ୟ ଗୋଷ୍ଠୀ ଅପେକ୍ଷା ଅଧିକ ଉନ୍ନତତର । ଏ ପରିପ୍ରେକ୍ଷୀରେ ତତ୍କାଳ କଳିଙ୍ଗର ଉପକୂଳବାସୀ ଓଡ଼ ଶବରଙ୍କ ସାମାଜିକ ବ୍ୟବସ୍ଥା କି ପ୍ରକାର ଥିଲା ଲକ୍ଷଣୀୟ ।

---

## ଷଷ୍ଠ ପ୍ରକାଶ :

## କଳିଙ୍ଗର ଓଡ଼ ସମାଜ

କଳିଙ୍ଗରେ ପାର୍ବତ୍ୟ, ଆରଣ୍ୟକ ଓ ସମତଳବାସୀଭାବେ ତ୍ରିବିଧ ଶବର ଗୋଷ୍ଠୀ ବାସ କରି ରହୁଥିଲେ, ଏହା ଆଗରୁ କୁହାଯାଇଛି । ସେ ମଧ୍ୟରୁ ପାର୍ବତ୍ୟ ଓ ଆରଣ୍ୟକ ସମ୍ପ୍ରଦାୟ ସମ୍ପର୍କରେ ପୂର୍ବ ପରିଚ୍ଛେଦରେ ସୂଚନା ଦିଆଯାଇଛି । ତାଙ୍କ ଛଡ଼ା ଅନ୍ୟ ସମ୍ପ୍ରଦାୟଟି ହେଲା ସମତଳବାସୀ ଓଡ଼ ଶବର । ଏମାନେ ଥିଲେ କପିଶାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କଳିଙ୍ଗର ଉପକୂଳବାସୀ । ଏହାର ଦକ୍ଷିଣ ଭୂଭାଗ ଖ୍ରୀ:ପୂ: ସପ୍ତମ ଶତାବ୍ଦୀଠାରୁ ଅଶ୍ମକ ରାଜାଙ୍କ ଅଧୀନସ୍ଥ ହୋଇ ପଡ଼ିଥିଲା ଏବଂ ମହାପଦ୍ମନନ୍ଦ ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀରେ ଉତ୍ତରପଟକୁ ମହାନଦୀ ପର୍ଯ୍ୟନ୍ତ ମଗଧ ରାଜ୍ୟର ଅନ୍ତର୍ଭୁକ୍ତ କରିନେଇଥିଲେ । ସୁତରାଂ 'କଳିଙ୍ଗ' ବୋଇଲେ କେବଳ ଥିଲା 'ମଧ୍ୟ କଳିଙ୍ଗ' ଅର୍ଥାତ୍ ମହାନଦୀର ଦକ୍ଷିଣକୁ ବଂଶଧାରା କୂଳ ପର୍ଯ୍ୟନ୍ତ । ଏହା ପୂର୍ବାପର ଶବର ଅଧ୍ୟୁଷିତ ରାଜ୍ୟ ଥିଲା । ଉତ୍ତର କଳିଙ୍ଗର ଓଡ଼ ଶବର ମାଗଧୀ ପ୍ରଭାବିତ ହେବାଦ୍ୱାରା ସେଠାରେ 'ଉଡ୍ର-ମାଗଧୀ' ନାମରେ ଏକ ମିଳିତ ସଭ୍ୟତା ଗଢ଼ି ଉଠିଲା ଏବଂ ଦକ୍ଷିଣ କଳିଙ୍ଗ ଭିତରକୁ ଦାକ୍ଷିଣାତ୍ୟ ଗୋଷ୍ଠୀ ପଶି ଆସିବାରୁ ସେଠାରେ ଏକ ସଙ୍କୀର୍ଣ୍ଣ ସଭ୍ୟତା ଜନ୍ମ ଲାଭ କରିଥିଲା । ବର୍ତ୍ତମାନ ସୁଦ୍ଧା ଦକ୍ଷିଣ ଓଡ଼ିଶାରେ 'ଓଡ଼ କାଳିଙ୍ଗୀ' ଓ 'ଆନ୍ଧ୍ର କାଳିଙ୍ଗୀ' ନାମରେ ଦୁଇଟି ସମ୍ପ୍ରଦାୟ ରହୁଥିବା ଦେଖାଯାଏ । ଓଡ଼ ସମ୍ପ୍ରଦାୟର ପାଟକ ଗୋଷ୍ଠୀ ମଧ୍ୟରେ 'ଓଡ଼ କାଳିଙ୍ଗୀ' ଏକତମ ରୂପେ ଗଣ୍ୟ ହେଉଥିବେଳେ ଅପର ସମ୍ପ୍ରଦାୟ 'ଆନ୍ଧ୍ର' ବୋଲି ପରିଚୟ ଦିଅନ୍ତି । ଯାହା ହେଉ ଦୁଇଟିଯାକ ଗୋଷ୍ଠୀ କଳିଙ୍ଗର ଏକା ଓଡ଼ ଶବରଙ୍କ ବଂଶଧର-ଏହା ତାଙ୍କର କୌଳିକ ପ୍ରଥା ଓ ପାରଂପରିକ ରୀତିନୀତି ଅନୁଧ୍ୟାନ କଲେ ପ୍ରମାଣିତ ହୁଏ ।

**ଓଡ଼କାଳିଙ୍ଗୀ (ଡ୍ରିଂ)—**

କଳିଙ୍ଗର ପାଟକ କୁଳ ମଧ୍ୟରେ 'ଓଡ଼ କାଳିଙ୍ଗୀ' ଏକ ଶିକ୍ଷିତ ଓ ମାର୍ଜିତ ରୁଚିସମ୍ପନ୍ନ ସମ୍ପ୍ରଦାୟ । ଅଦ୍ୟାପି ଏମାନେ ମୂଳ କଳିଙ୍ଗର ଅଧିବାସୀ ବୋଲି ଗୌରବ ଅନୁଭବ କରନ୍ତି । ବାସ୍ତବିକ ଏମାନେ ଥିଲେ କଳିଙ୍ଗର ଆଦିମ ଅଧିବାସୀ 'ଓଡ଼ ଶବର' । ବୃତ୍ତି ଖଣ୍ଡାଏତ । ଓଡ଼ ଶବର ଅଧ୍ୟୁଷିତ କଳିଙ୍ଗ ଥିଲା କୃଷି ପ୍ରଧାନ ରାଜ୍ୟ । ଖ୍ରୀ: ପୂ: ଅଷ୍ଟମ ଶତାବ୍ଦୀରୁ ଏମାନେ ଅହିଂସା ଧର୍ମରେ ଦୀକ୍ଷିତ ହୋଇଥିଲେ । ଅବସର ଉଣ୍ଡି ମଗଧ ରାଜା

ମହାପଦ୍ମ ଅଗ୍ରୁନଙ୍କ ଆକ୍ରମଣ ଚଳାଇ କଳିଙ୍ଗର 'ଜିନାସନ' ନେଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ଏ ମଧ୍ୟରେ ମହାବୀର ବର୍ଦ୍ଧମାନଙ୍କ ଧର୍ମ ପ୍ରଚାର ଦେଖି ଆର୍ଯ୍ୟ ବ୍ରାହ୍ମଣ ଗୋଷ୍ଠୀ କ୍ରମାଗତ ଉତ୍କଳିଙ୍ଗରେ ଅନୁପ୍ରବେଶ କରି ଯାଗଯଜ୍ଞାଦି କର୍ମାନୁଷ୍ଠାନ ଓ ସ୍ୱର୍ଗଫଳ ପ୍ରାପ୍ତି ପ୍ରତି ସ୍ଥାନୀୟ ଲୋକସମାଜକୁ ପ୍ରଲୁବ୍ଧ କରିବାର ଚେଷ୍ଟା ଚଳାଇଲେ । ଦୁଇଟି ବିପରୀତ ଧର୍ମ ଧାରଣା ମଧ୍ୟରେ ଦ୍ୱିଧାଗ୍ରସ୍ତ ଓଡ୍ର ସମାଜ କେତେ ସ୍ଥଳରେ ଜୈନ ଅହିଂସା ପ୍ରତି ଅନୁରକ୍ତ ଥିଲେ ତ କେତେବେଳେ ପୁଣି ସ୍ୱର୍ଗ ଫଳ ପ୍ରାପ୍ତି ହେତୁକ ଯାଗ ଯଜ୍ଞ ପ୍ରତି ଆକୃଷ୍ଟ ହେଲେ । କିନ୍ତୁ ମହାନଦୀ ଦକ୍ଷିଣ ପାର୍ଶ୍ୱସ୍ଥ କଳିଙ୍ଗର ଅବସ୍ଥା ସେହିପରି ନଥିଲା । ଇତ୍ୟବସରେ ଓଡ୍ର ସମ୍ପ୍ରଦାୟ ଉତ୍ତର ପଟେ ମଗଧ ରାଜାଙ୍କ ଅପ୍ରତ୍ୟାଶିତ ଆକ୍ରମଣ ଦ୍ୱାରା ଯେଉଁ ଶିକ୍ଷା ଲାଭ କରିଥିଲେ ସେଥିଯୋଗୁ ଆପଣାକୁ ଅନନ୍ୟ ସାଧାରଣ ସମର କୁଶଳ ଜାତିରେ ପରିଣତ କରିବାକୁ ସବୁ କ୍ଷେତ୍ରରେ ଅକ୍ଳାନ୍ତ ଚେଷ୍ଟା ଚଳାଇଥିଲେ । ଚତୁରଙ୍ଗ ବଳ, ଗ୍ରାମସେନା ଗଠନ, ନୌବିଜ୍ଞାନ, ସୁଦୃଢ଼ ଦୁର୍ଗ ନିର୍ମାଣ, ଲୋକ ସଂଗଠନ ସମେତ ବାଣିଜ୍ୟ, ବିଦେଶ ଗମନ, ଦ୍ୱୀପାନ୍ତର ଯାତ୍ରା, ମଣିମୁକ୍ତାଦି ବ୍ୟବସାୟ ପ୍ରଭୃତି ସମସ୍ତ ପ୍ରକାର ପାର୍ଥିବ ଐଶ୍ୱର୍ଯ୍ୟର କ୍ରମାଭିବୃଦ୍ଧି ସଂପାଦନ କରିବା ଫଳରେ ସମକାଳୀନ ଭାରତବର୍ଷର ରାଜ୍ୟସଂଘ ମଧ୍ୟରେ ଏକ ଦୁର୍ଦ୍ଧର୍ଷ ସାହସିକ ଜାତିରୂପେ ଖ୍ୟାତି ଅର୍ଜନ କଲେ । କେବଳ ସାଂସାରିକ ସୌଭାଗ୍ୟ ଦୃଷ୍ଟିରୁ ନୁହେଁ ସଭ୍ୟତା ଓ ସଂସ୍କୃତିଦିଗରୁ ମଧ୍ୟ ସେମାନେ ଉଚ୍ଚକୋଟିର ବିବେଚିତ ହେଲେ । ଏହାର ଧାରକ ଥିଲା ଆଦିମ ବନବାସୀ ଶ୍ରେଣୀର 'ଓଡ୍ର ଶବର' ସମ୍ପ୍ରଦାୟ—ଯାହାଙ୍କୁ ଏବେ ଆମେ 'ଓଡ୍ରଆ'ବୋଲି କହି ଆସୁଛୁ । ସେହି ଓଡ୍ର ସମ୍ପ୍ରଦାୟ ପାଇକକୁଳ ମଧ୍ୟରେ ଅନ୍ୟତମ ହେଉଛି 'ଓଡ୍ର କାଳିଙ୍ଗୀ' ।

ଦକ୍ଷିଣ ଓଡ଼ିଶା ଲଗାଏତ ଆନ୍ଧ୍ର ସୀମାନ୍ତରେ ଏମାନେ ଏକ ସ୍ୱତନ୍ତ୍ର ପାଇକ ଗୋଷ୍ଠୀ—'କଳିଙ୍ଗୀ' ବା 'କାଳିଙ୍ଗି'ନାମରେ ପରିଚିତ । ପରଂପରା, ପରିସ୍ଥିତି ଓ ପରିବେଶ ଯେ କୌଣସି ଦୃଷ୍ଟିରୁ ଦେଖିଲେ ଏ ଜାତି କଳିଙ୍ଗର ମୂଳ ଅଧିବାସୀବୋଲି ମନେହୁଏ । 'କାଳିଙ୍ଗୀ' ନାମରୁ ମଧ୍ୟ ସେଇଥିପ୍ରା ପ୍ରତୀତ ହୁଏ । କୌଳିକ ପରଂପରା ଧରି ବିଚାର କଲେ ଏମାନେ ସୁସଂସ୍କୃତ ଓ ଶକ୍ତିଶାଳୀ ଯୋଦ୍ଧାରୂପେ ସମ୍ମାନିତ ଥିଲେ । କଳିଙ୍ଗର ପାର୍ବତ୍ୟ ଓ ଆରଣ୍ୟକଙ୍କ ଅପେକ୍ଷା ଏମାନେ ଉନ୍ନତତର ଜୀବନ ଯାପନ କରୁଥିଲେ, ଯଦିଚ ଏମାନେ ବି ଥିଲେ ସେହି ଏକା ଶବର ସମ୍ପ୍ରଦାୟର । ଏମାନଙ୍କ ମୁଖ୍ୟ ଜୀବିକା ଥିଲା କୃଷି ଓ ବାଣିଜ୍ୟ । କିରପଟା ପାଣ୍ଡି ଖଣ୍ଡା ଥିଲା ସେମାନଙ୍କ ମୁଖ୍ୟ ଆୟୁଧ ଯାହାର ଭୟରେ ଶତ୍ରୁ ଆସିବାକୁ ସାହସ କରୁ ନଥିଲେ । ସେକାଳ 'କଳିଙ୍ଗା ଖଣ୍ଡା' ଅନ୍ୟମାନଙ୍କୁ ଭୀତତ୍ରସ୍ତ କରି ରଖିଥିଲା । ଏମାନେ ଯେପରି ବୀର୍ଯ୍ୟଶାଳୀ ସେହିପରି ସାହସୀ, ଉପକୂଳ ଭୂଭାଗରେ ଆଧିପତ୍ୟ ବିସ୍ତାର କରି ଏମାନେ ରହିଥିଲା ବେଳେ ଇତର ଶବର ଗୋଷ୍ଠୀ ନିବିଡ଼ ଅରଣ୍ୟ ଓ ଉଚ୍ଚ ପାର୍ବତ୍ୟମାଳ ଅଞ୍ଚଳରେ ବସତି ସ୍ଥାପନ କରି ରହିଥିଲେ ଓ ସମତଳ ବାସୀଙ୍କ ସହ ମିତ୍ରତା ସୂତ୍ରରେ ଆବଦ୍ଧ ଥିଲେ । ସେ ବନ୍ଧନ ଥିଲା ଶାନ୍ତିପୂର୍ଣ୍ଣ

ସହାବସ୍ଥାନ । କେହି କାହାର ବୃତ୍ତି ବା ବ୍ୟବସାୟର ପ୍ରତିବନ୍ଧକ ନ ଥିଲେ । ଗୋଟିଏ ଭୂମି କର୍ଷଣ ଓ ବାଣିଜ୍ୟ କାରବାରକୁ ବୃତ୍ତି ରୂପେ ଗ୍ରହଣ କଲାବେଳେ ଅପର ଜଣକ ପର୍ବତକୁ ଜୀବିକାର୍ଜନର କ୍ଷେତ୍ର ରୂପେ ବାଛିନେଇଥିଲେ । କାଳିଙ୍ଗୀ ଥିଲା ପ୍ରମୁଖ ଶ୍ରେଣୀର ବୃତ୍ତିଜୀବୀ ଗୋଷ୍ଠୀ ।

ଏବେ ଗଞ୍ଜାମ, ଫୁଲବାଣୀ, କୋରାପୁଟ, ଶ୍ରୀକାକୁଲମ୍, ବିଶାଖାପାଟନମ୍ ଜିଲ୍ଲା ମାନଙ୍କରେ କାଳିଙ୍ଗୀ ସମ୍ପ୍ରଦାୟ ବହୁ ସଂଖ୍ୟାରେ ଦେଖାଯାଆନ୍ତି । ଏହାଙ୍କ ସମୁଦାୟ ଲୋକସଂଖ୍ୟା ଅର୍ଦ୍ଧଲକ୍ଷରୁ ବେଶୀ ନୁହେଁ ବୋଲି କୁହାଯାଏ । ଲୋକମୁଖରେ ଏମାନେ 'କାଳିଞ୍ଜି'ବୋଲି ମଧ୍ୟ ପରିଚିତ । ଏ ସମ୍ପ୍ରଦାୟ ଓଡ଼କାଳିଞ୍ଜି ଓ ଆନ୍ଧ୍ରକାଳିଞ୍ଜି ନାମରେ ଦୁଇ ଭାଗରେ ପରିଚୟ ଦିଅନ୍ତି । ଉଭୟଙ୍କ ସାଂସ୍କୃତିକ ପରଂପରା ଅନୁଧ୍ୟାନ କଲେ ଦିନେ ଉଭୟେ ଏକା ଥିଲେ ବୋଲି ସହଜରେ ଅନୁମାନ କରିହୁଏ । ବୋଧହୁଏ, କାଳର ନିଷ୍ଠୁର ଆଘାତରେ ଉଭୟେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ପଡ଼ିଛନ୍ତି । କଳିଙ୍ଗର ଦକ୍ଷିଣ ସୀମାନ୍ତବାସୀ ଥିବା ହେତୁ 'ଅଶ୍ମକ' ଆଡ଼ୁ ମାଡ଼ି ଆସିଥିବା ଦାକ୍ଷିଣାତ୍ୟ ସଭ୍ୟତା ଦ୍ୱାରା ପ୍ରଭାବିତ ହୋଇ 'ଆନ୍ଧ୍ରକାଳିଞ୍ଜି' ଏବଂ ମଧ୍ୟକଳିଙ୍ଗରେ ସ୍ୱାଧୀନଭାବେ ରହି ଯେଉଁମାନେ ସ୍ୱକୀୟ ଦେଶ୍ୟ ସଂସ୍କୃତିକୁ ଅକ୍ଷୁଣ୍ଣ ରଖିଥିଲେ, ସେମାନେ 'ଓଡ଼କାଳିଞ୍ଜି' ରୂପେ ପରିଚିତ ହୋଇ ଆସିଲେ । ଏ ବିଭାଜନ ଅଶୋକଙ୍କ କଳିଙ୍ଗ ଆକ୍ରମଣର ପରବର୍ତ୍ତୀ ଘଟଣା ହୋଇଥିବା ସମ୍ଭାବନା । ଯାହାହେଉ ଉକ୍ତ ଦ୍ୱିବିଧ ସମ୍ପ୍ରଦାୟର କୌଳିକ ପରଂପରା ମଧ୍ୟରେ କି ମୌଳିକ ସାମଞ୍ଜସ୍ୟ ଓ ବୈସାଦୃଶ୍ୟ ରହିଛି ଦେଖିବାର କଥା ।

ଓଡ଼ କାଳିଙ୍ଗୀମାନେ ଗଞ୍ଜାମ ଜିଲ୍ଲା ମଧ୍ୟସ୍ଥ ମହୁରି, ପୂର୍ବଖଣ୍ଡ, ସାନ ଖେମୁଣ୍ଡି, ବଡ଼ ଖେମୁଣ୍ଡି, ପାରଲାଖେମୁଣ୍ଡି, ଧରାକୋଟ, ଖଲ୍ଲିକୋଟ, ଶେରଗଡ଼, ବଡ଼ଗଡ଼, ଘୁମୁସର ଏବଂ କୋରାପୁଟ ଜିଲ୍ଲାର ଜୟପୁର, ନବରଙ୍ଗପୁର, କୋଟପାଡ଼ ପ୍ରଭୃତି ଅଞ୍ଚଳରେ ରହିଥିବା ଦେଖାଯାଏ । ନିଜର ଆଦିମ ବାସସ୍ଥଳୀ ଓ ମୂଳଉତ୍ପତ୍ତି ସମ୍ବନ୍ଧରେ ସେମାନେ ସଂପୂର୍ଣ୍ଣ ଅଜ୍ଞ । ଏ ବିଷୟରେ ଇତିହାସ ମଧ୍ୟ ନୀରବ । ସାଂପ୍ରତିକ ଯୁଗରେ ଏକ କ୍ଷୁଦ୍ର ଗୋଷ୍ଠୀ ହେଲେ ସୁଦ୍ଧା ଏମାନେ ସଗର୍ବେ କହନ୍ତି,"ଅଶୋକଙ୍କ ବିରୁଦ୍ଧରେ ଆମେ ଲଢ଼ିଥିଲୁ, ଦେଶପାଇଁ ଆମେ ପ୍ରାଣ ଦେଇଥିଲୁ, ଏ ରାଜ୍ୟର ପ୍ରଥମ ପ୍ରଜା ଆମେ—କାଳିଙ୍ଗୀ !" ଏତାଦୃଶ ଦୃଢ଼ୋକ୍ତିରେ ସତ୍ୟତା ଯାହା ଥାଉନା କାହିଁକି, ଏକଥା ନିଶ୍ଚିତ ଯେ ଏହାଙ୍କ ଛଡ଼ା ଓଡ଼ିଶାରେ ଏମିତି କୌଣସି ଜାତି ନାହିଁ ଯେ ଏପରି ଦମ୍ଭୋକ୍ତି ପ୍ରକାଶ କରେ । ତାହାଙ୍କ କୌଳିକ ସଙ୍କେତ ମଧ୍ୟ ସେଇ ସୂଚନା ଦିଏ । 'ଖଣ୍ଡା' ଓ 'ଲଙ୍ଗଳ' ହେଉଛି ସେମାନଙ୍କ ଜାତୀୟ ଚିହ୍ନ । 'ଖଣ୍ଡା' ଯେପରି ଯୁଦ୍ଧର ପ୍ରତୀକ 'ଲଙ୍ଗଳ' ସେହିପରି କୃଷିକର୍ମର ସଙ୍କେତ । ତେଣୁ ଉକ୍ତ ସଙ୍କେତ ଦୁଇଟିରେ ଏ ଜାତିର ପୁରାତନ ଐତିହ୍ୟ ସ୍ପଷ୍ଟ ପ୍ରତିଫଳିତ । ଏମାନଙ୍କ ମଧ୍ୟରେ ପ୍ରଚଳିତ ମହା ସିଂ, ରଣ ସିଂ, ରଣ ହାତୀ, ମହାବୀର ପ୍ରମୁଖ ଉପାଧିଗୁଡ଼ିକ ମଧ୍ୟ ଯେ ସାହସ ଓ ବୀରତ୍ୱର ପରିଚାୟକ ସେଥିରେ ସନ୍ଦେହ ନାହିଁ ।

ଅତଏବ ଏ ଜାତିର ଦେଶପ୍ରାଣ ତଥା ଭାଗ୍ୟହୀନ ପୂର୍ବତନ ସନ୍ତାନଗଣ ଦେଶମାତୃକା ପାଇଁ ଆତ୍ମୋତ୍ସର୍ଗ କରି କାଳର ନିର୍ମମ ଅନ୍ଧକାରାସ୍ୟ ମଧ୍ୟରେ ବିଲୁପ୍ତ ହୋଇପଡ଼ିଥିଲେ ସୁଦ୍ଧା ଧ୍ୱସ୍ତବିଧ୍ୱସ୍ତ ବଂଶ ମର୍ଯ୍ୟାଦାର ରକ୍ଷକ ରୂପେ ଯେଉଁ ମୁଷ୍ଟିମେୟ ଦାୟାଦ ଏବେ ସୁଦ୍ଧା, ଉପେକ୍ଷିତ ଭାବେ ହେଉ ପଛେ, ପିତୃପିତାମହକାଳୀନ ବୀରଭୂମି କଳିଙ୍ଗର ସ୍ମୃତି ସ୍ମରଣ କରନ୍ତି ସେମାନେ 'କାଳିଙ୍ଗୀ' ବ୍ୟତୀତ ଅନ୍ୟ କେହି ନୁହନ୍ତି; ଭାବିଲେ ଗର୍ବରେ ମନ ଯେତିକ ଉତ୍ଫୁଲ୍ଲ ହୋଇଉଠେ ସେତିକ ଦୁଃଖାଭିଭୂତ ହୋଇପଡ଼େ ।

ଓଡ଼ ଶବର ଗୋଷ୍ଠୀର ପାଞ୍ଚକ କୁଳ ମଧ୍ୟରୁ କାଳିଙ୍ଗୀ ହେଉଛି ଏକ ସ୍ୱତନ୍ତ୍ର ସଂପ୍ରଦାୟ । ଏମାନଙ୍କ ଚାଲିଚଳନ, ପରଂପରା, କୁଳପ୍ରଥା ଦ୍ରାବିଡ଼ମୂଳ ନୁହେଁ କିମ୍ବା ଆର୍ଯ୍ୟୋଦ୍ଭୂତ ନୁହେଁ । ଏହାଙ୍କ ମଧ୍ୟରେ ଜାତିଭେଦ ପ୍ରଥାର ପ୍ରଚଳନ ନାହିଁ; ଅଥଚ କ୍ଷାତ୍ରଧର୍ମୀ ଏମାନେ । ସ୍ୱାଧୀନତା ଓ ଶକ୍ତି ପ୍ରଦର୍ଶନ ମୂଳମନ୍ତ୍ର । ପୁରୁଷ ସମାଜରେ ଉପବୀତ ଧାରଣ ପ୍ରଥା ରହିଛି; କିନ୍ତୁ ତାହା ବ୍ରାହ୍ମଣ ଓ କ୍ଷତ୍ରିୟଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ । 'ଷଟ୍‌କର୍ମ' ବିଧାନ ପରେ ଏମାନେ 'ଷଡ଼୍‌ଗୁଣ' ଉପବୀତ ଧାରଣ କରନ୍ତି । ଏହାଙ୍କ ଗୋତ୍ର ପରଂପରାରେ 'ନାଗ' ଏବଂ 'ଶଙ୍ଖ' ଦୁଇଟି ପ୍ରଧାନ । ସୁତରାଂ ଆଦିମ 'ନାଗ' ଓ 'ଶଙ୍ଖ'ବଂଶୀ ବନବାସୀ ଶ୍ରେଣୀର ବୋଲି ଏମାନଙ୍କୁ ଧରିନେବା ଅଯୌକ୍ତିକ ନୁହେଁ । ପ୍ରାଗୈତିହାସିକ ଯୁଗରେ ଯେଉଁ ନାଗବଂଶୀ ରାଜନ୍ୟବର୍ଗ ଅନ୍ୟାନ୍ୟ ପ୍ରାନ୍ତରେ ରାଜ୍ୟ ବିସ୍ତାର କରିଥିବା କଥା ଇତିହାସ କହେ, ସେ ମଧ୍ୟରୁ କେଉଁ ଶାଖା ବା ଉପଶାଖା ଏଠାରେ 'କାଳିଙ୍ଗୀ' ରୂପେ ରହିଥିବା ବିଚିତ୍ର ନୁହେଁ । ଅତଏବ ଆର୍ଯ୍ୟ-ଦ୍ରାବିଡ଼ରୁ ଭିନ୍ନ ଅଣଆର୍ଯ୍ୟ ବନବାସୀ ଶ୍ରେଣୀର ଏହା ଏକ 'ଉପଶାଖା' କହିଲେ ଅସଙ୍ଗତ ହେବନାହିଁ । ବିଶେଷତଃ ମିତପ୍ରଥା, ଗଣ୍ଠିବନ୍ଧା, କନ୍ୟାସୁନା ପ୍ରଭୃତି ଶବର ସମାଜର ଆଚାର-ବିଚାରମାନ ଏହାଙ୍କ ସାମାଜିକ ଚଳଣିରେ ସ୍ପଷ୍ଟ ପ୍ରତିଫଳିତ ।

କାଳିଙ୍ଗୀ ସଂପ୍ରଦାୟରେ ବୈବାହିକ ବିଧି ଏକ ସ୍ୱତନ୍ତ୍ର ଧରଣର । ତାହା ଉତ୍ତରଦେଶୀୟ ଆର୍ଯ୍ୟ ପଦ୍ଧତିରୁ ଯେତିକ ଅନ୍ତର ଦାକ୍ଷିଣାତ୍ୟ ଚଳଣିରୁ ମଧ୍ୟ ସେମିତି ଭିନ୍ନ ଅଥଚ ତାହା ଯେତିକ ଦ୍ରାବିଡ଼ୀୟ ସେତିକ ବ୍ରାହ୍ମଣ୍ୟ ମଧ୍ୟ । ବ୍ରାହ୍ମଣ୍ୟ ବିଧି ଅନୁସରଣରେ ସ୍ୱଗୋତ୍ର ବିବାହ ନିଷିଦ୍ଧ ଥିଲାବେଳେ ଦାକ୍ଷିଣାତ୍ୟ ବିଧି ସମ୍ମତ ମାତୁଳକନ୍ୟା ବିବାହ ସାର୍ବଜନୀନ । 'ଅଜାତରଜା' ବିବାହ ସଦୃଶ 'ରଜସ୍ୱଳା' ବିବାହ ସୁଦ୍ଧା ସର୍ବସ୍ୱୀକୃତ । ସେ ସଂପ୍ରଦାୟରେ ଯୌତୁକପ୍ରଥା ଆଦୌ ନଥିଲା । କନ୍ୟାକୁ ଦେଖିଗଲାବେଳେ ବରପକ୍ଷ ସ୍ୱଇଚ୍ଛାରେ ଯାହା କିଛି ସେଠାରେ ଉପହାର ସ୍ୱରୂପ ଦେଇ ଆସୁଥିଲେ । ଏହାକୁ ପରୋକ୍ଷ ଭାବେ "କନ୍ୟା-ସୁନାର' ଆଦିମରୂପ ବୋଲି କୁହାଯାଇପାରେ । ବିବାହ ପୂର୍ବରୁ ଉଭୟପକ୍ଷ ସମ୍ମତିରେ 'ଗଣ୍ଠିବନ୍ଧା' ହୁଏ । ପାର୍ବତ୍ୟ ସମାଜରେ ପ୍ରଚଳିତ 'ଗଣ୍ଠି' ଯାହାର ଅର୍ଥ 'ଜବାବ୍' ତାହାହିଁ 'ଗଣ୍ଠିବନ୍ଧା' ଶବ୍ଦରେ ଲୁକ୍କାୟିତ । ବରକନ୍ୟାଙ୍କ ବିବାହ ସ୍ଥିର ହେଲେ ପାର୍ବତ୍ୟବାସୀ 'ଲଇ' ଖଣ୍ଡେ ଧରି ଉଭୟପକ୍ଷ ଦୁଇପଟୁ ସେଥିରେ ଗଣ୍ଠିଟିଏ ପକାନ୍ତି ।

ତା'ପରେ ହୁଏ ଉତ୍ସବର ଆୟୋଜନ । ତାହାର ରୂପାନ୍ତର 'ଗଣ୍ଠିବନ୍ଧା' ଉତ୍ସବ । ବିବାହ କାର୍ଯ୍ୟ କନ୍ୟାଘରେ ସମ୍ପନ୍ନ ହୁଏ । ଘରକରଣା ଜିନିଷ ସହିତ ଧାନପୁଡ଼ା, (ପାଳ ଦଉଡ଼ିରେ ତିଆରି ବର୍ତ୍ତୁଳ ଗୋଲାକାର ବସ୍ତୁ) ଶିଳଗଡ଼ା, ପଥର ଘୋରଣା ଏବଂ ମାଟିହାଣ୍ଡି ଭିତରେ ଚୁଡ଼ା ଭର୍ତ୍ତି କରି ବର ଘରକୁ କନ୍ୟାସହିତ ପଠାଯାଏ । ଦଶଦିନରେ ଡକରା ପଠାଇ ଝିଅକୁ ପୁଣି ବାପଘରକୁ ଅଣା ହୁଏ । କିଛି ଦିନ ରହିଣି ପରେ ବରଘରୁ ଡକରା ଆସିଲେ ବୋହୂ ଶାଶୁଘରକୁ ଫେରିଯାଏ । ଗଲାବେଳେ କୁଅ ଦଉଡ଼ି, ଶିକା, କୁଲା, ଗୁଙ୍ଗଡ଼ା, ଝୋଟକେଇ, ଲଇ ଓ ବାଉଁଶ ତିଆରି ପଦାର୍ଥମାନ ସାଙ୍ଗରେ ନେଇଥାଏ ।

ଏ ସମ୍ପ୍ରଦାୟର ଶିଶୁଜନ୍ମକାଳୀନ ଲୋକାଚାର ମଧ୍ୟ କେତେକ ଦିଗରୁ ସ୍ୱତନ୍ତ୍ର ମନେ ହୁଏ । ଛୁଆ ଜନ୍ମ ହେବା ପଞ୍ଚମ ଦିନରେ ପଞ୍ଚୁଆତି । ସେଦିନ ଧଳା ଚାଉଳ, କଳା ବିରି, ସାଗୁଆମୁଗ, ନାଲି ବିରଗୁଡ଼ି ଓ ହଳଦିଆ କୋଳଥ ମିଶାଇ ପାଞ୍ଚବର୍ଣ୍ଣର ମଞ୍ଜି ଭଜାହୁଏ । ଏହାକୁ 'ପଞ୍ଚବର୍ଣ୍ଣୀ' ଭଜା କହନ୍ତି । ସାହି-ପଡ଼ିଶା, ବନ୍ଧୁବାନ୍ଧବ ମଧ୍ୟରେ ସେଦିନ ତାହା ବଣ୍ଟା ହୁଏ । ମାମୁ ଘରୁ ସେଦିନ ପାଇଁ ଶିଶୁ ଲାଗି ଖଣ୍ଡିଏ ନୂଆ କନା ସହିତ ତେଲ, ହଳଦୀ, ରସୁଣ, ପିଆଜ ଆସେ । ରାତିରେ କୁଟୁମ୍ବ ଲୋକ ଉଜାଗର ରହି ଶିଶୁକୁ ଜଗି ବସନ୍ତି । ବାରଦିନରେ ହଳଦୀ ଲଗାଇ ଗାଧୋଇଲା ପରେ ମା' ପିଲା ଉଭୟେ ଅନ୍ୟାନ୍ୟଙ୍କ ସଂସ୍ପର୍ଶରେ ଆସନ୍ତି, ସେ ପର୍ଯ୍ୟନ୍ତ ଉଭୟେ ଅସ୍ପୃଶ୍ୟ ।

କାଳିଙ୍ଗୀ କୁଳରେ ବହୁବିଧ ଦେବଦେବୀ ଉପାସିତ ହୁଅନ୍ତି । କିନ୍ତୁ ଦେବୀପୂଜା ସେ ମଧ୍ୟରେ ସର୍ବୋତ୍କୃଷ୍ଟ । ଦଶହରା ସେମାନଙ୍କ ପ୍ରଧାନ ପର୍ବ । ଏହାକୁ 'ବଡ଼ଓଷା' କୁହାଯାଏ । ବିବାହିତା ସ୍ତ୍ରୀ ମାନେ ବଡ଼ଓଷା ବ୍ରତ ପାଳନ କରନ୍ତି । ନିର୍ଜଳା ଉପବାସ ରହି ସେଦିନ ଦେବୀଙ୍କୁ ଦଶବର୍ଣ୍ଣର ଫୁଲ-ଫଳ ସମର୍ପି ମଙ୍ଗଳ ମନାସନ୍ତି । ତା'ଛଡ଼ା ସ୍ତ୍ରୀ ସମାଜର ଆଉ ଏକ ବ୍ରତ ହେଉଛି ଜ୍ୟେଷ୍ଠ ମାସର କୃଷ୍ଣ ଅମାବାସ୍ୟା । ଏହାକୁ 'ସାବିତ୍ରୀ ଅମାବାସ୍ୟା' ବା 'ଆମ୍ବ ଉଆଁସ' କୁହାଯାଏ । ସେଦିନ ବିବାହିତା ନାରୀ ପତିଙ୍କ ଦୀର୍ଘ ଜୀବନ କାମନା କରି ଉପବାସରେ ସାରା ଦିନ କଟେଇଥାଏ । ଏ ଓଷାର ବିଶେଷତ୍ୱ, ଓଷା ପାଇଁ ଆବଶ୍ୟକ ଯାବତୀୟ ଉପକରଣ ଝିଅର ବାପଘରୁ ଆସେ ।

ଏ ସମ୍ପ୍ରଦାୟରେ ଅନ୍ତ୍ୟେଷ୍ଟି କ୍ରିୟା ମାର୍ଜିତ ପ୍ରଣାଳୀରେ ଅନୁଷ୍ଠିତ ହୁଏ । ଲୋକର ମୃତ୍ୟୁ ଘଟିଲେ ଜ୍ଞାତିମାନେ କାଳବିଳମ୍ବ ନକରି ଶବକୁ ଶ୍ମଶାନରେ ନେଇ ଦାହ କରନ୍ତି । ଶବଦାହ ପରେ ସ୍ନାନ ସାରି ସିଧାସଳଖ ମୃତବ୍ୟକ୍ତି ଘରକୁ ଆସନ୍ତି । ସେଠାରେ ପ୍ରେତ ଉଦ୍ଦେଶ୍ୟରେ ଲିଆ, ଗୁଡ଼ପଣା ଖାଇ ନିଜ ନିଜ ଘରକୁ ଯାଆନ୍ତି । ପୁଣି ଦ୍ୱିତୀୟ ଦିନ ଆସି ମୃତ ବ୍ୟକ୍ତି ଘରେ ଅନ୍ନ ବ୍ୟଞ୍ଜନାଦି ରନ୍ଧା ପଦାର୍ଥ ଖାଇବା ବିଧି ରହିଛି । ଏହାକୁ 'ପିତା-ଭାତ' କୁହାଯାଏ । ତିନିରୁ ନଅ ଦିନ ପର୍ଯ୍ୟନ୍ତ ବନ୍ଧୁସ୍ୱଜନଙ୍କୁ ଲିଆ ଗୁଡ଼ପଣାଦି ଭୋଜନ ଦିଆଯାଏ । ମୃତ ବ୍ୟକ୍ତି ଉଦ୍ଦେଶ୍ୟରେ ଦନାରେ ଖାଦ୍ୟ ସାମଗ୍ରୀ ରଖି ଉତ୍ସର୍ଗ କରାହୁଏ । ଦ୍ୱିତୀୟଦିନ ଶବ ଦାହ ସ୍ଥଳରୁ ମୃତବ୍ୟକ୍ତିର ଅସ୍ଥି ଖଣ୍ଡେ ଆଣି ନିଭୃତ ସ୍ଥାନ

ଦେଖି ଗଛ ଭିତରେ 'ଲୁଗ୍ଗାଇ ରଖନ୍ତି । ଦଶମ ଦିନ ଜ୍ଞାତି କୁଟୁମ୍ବ ଜଳାଶୟ ନିକଟରେ କ୍ଷୌର ହୋଇ ଦଶାସ୍ନାନ ପରେ ନୂଆଲୁଗା ପିନ୍ଧି ମୃତ ବ୍ୟକ୍ତିର ଘରକୁ ଆସନ୍ତି ଏବଂ ପଂକ୍ତିଭୋଜନ ପରେ ସମସ୍ତେ ଶୁଦ୍ଧ ହୁଅନ୍ତି ।

ଏ ସଂପ୍ରଦାୟ 'ଓଡ଼ଖଣ୍ଡାଏତ' ଭାବେ ନିଜର ପରିଚୟ ଦିଅନ୍ତି । ସେମାନଙ୍କର ଅନ୍ୟ କୌଣସି ଶାଖା ଗୋଷ୍ଠୀ ଥିବା ସ୍ୱୀକାର କରନ୍ତି ନାହିଁ । ଉତ୍ତର-କଳିଙ୍ଗର 'ଓଡ଼ଖଣ୍ଡାଏତ'ଙ୍କ ସହିତ ବର୍ତ୍ତମାନ ଏମାନଙ୍କ ସାମାଜିକ ସଂପର୍କ ନାହିଁ ଯଦିଚ ଦିନେ ଉଭୟେ ଏକା ଗୋଷ୍ଠୀର ଥିଲେ । ଯୁଦ୍ଧୋତ୍ତର କଳିଙ୍ଗର 'ବିରଜାମଣ୍ଡଳ' ଓ 'ଜଗନ୍ନାଥ ମଣ୍ଡଳ' ରୂପେ ବିଭାଜନଠାରୁ ଉଭୟ ମଣ୍ଡଳ ମଧ୍ୟରେ ସଂପର୍କ ଛିନ୍ନ ହୋଇ ପଡ଼ିଥିବା ଅନୁମାନ । ତଥାପି ଉତ୍ତର କାଳର ବ୍ରାହ୍ମଣ୍ୟ ପ୍ରଭାବ ଯୋଗୁ ସେମାନଙ୍କ ମଧ୍ୟରେ କାଶ୍ୟପ ଓ ଭରଦ୍ୱାଜ ନାମକ ଦୁଇଟି ଗୋତ୍ର ଜଡ଼ିତ ହୋଇଥିବା ଦେଖାଯାଏ । ଅତଏବ ସେ ଜାତିରେ ନାଗ, ଶଙ୍ଖ ସଙ୍ଗେ କାଶ୍ୟପ ଓ ଭରଦ୍ୱାଜ ମିଶି ଚାରୋଟି ଗୋତ୍ରର ପ୍ରଚଳନ ଦୃଷ୍ଟ ହୁଏ । କେବଳ ସେତିକ ନୁହେଁ, ପଡ଼ୋଶୀ 'ଆନ୍ଧ୍ରକାଳିଙ୍ଗୀ' ସଂପ୍ରଦାୟ ସହିତ ମଧ୍ୟ ଏମାନଙ୍କ ସାମାଜିକ ସଂପର୍କ ନାହିଁ—ଯଦିଚ ଉଭୟଙ୍କର କୁଳ ପରମ୍ପରା ଓ ଆଚାର ବିଚାର ପ୍ରାୟ ସମାନ ।

କାଳିଙ୍ଗୀ ସଂପ୍ରଦାୟରେ ଏ ଯାବତ୍ 'ପାତ୍ର' ପ୍ରଥା ଜୀବିତ ରହିଛି । ଅଶୋକ କାଳୀନ କଳିଙ୍ଗର 'ମାତ୍ର' ଓ 'ମହାମାତ୍ର' ବର୍ତ୍ତମାନ ପର୍ଯ୍ୟନ୍ତ 'ପାତ୍ର' ଓ 'ମହାପାତ୍ର' ଭାବେ ଘର ସଂଜ୍ଞା ରୂପେ ପରିଚିତ । ଜାତିଆଣ କର୍ମ ଓ କୌଳିକ ସମସ୍ୟା ଉପସ୍ଥିତ ହେଲେ ସମସ୍ତଙ୍କ ପରାମର୍ଶ ନିଆଯାଏ । ପାତ୍ର ବ୍ୟତୀତ ଭୂୟାଁ, ଖୁଣ୍ଟିଆ, ଅଟୁଆ, ଛଟେଇ, ସାହୁ, ବିଷୟୀ ପ୍ରଭୃତି ଘର ସଂଜ୍ଞାରୁ ଏ ଜାତିର ପ୍ରାଚୀନ ବାସ୍ତବତା ପ୍ରମାଣିତହୁଏ ।

**ଆନ୍ଧ୍ର କାଳିଙ୍ଗୀ—**

ଆନ୍ଧ୍ର ସୀମାନ୍ତବର୍ତ୍ତୀ ବିଶାଖାପାଟନମ୍ ଓ ଶ୍ରୀକାକୁଲମ୍ ଜିଲ୍ଲା ଏବଂ ଓଡ଼ିଶାର ଦକ୍ଷିଣ ପ୍ରାନ୍ତ ଗଞ୍ଜାମ ଓ କୋରାପୁଟ ଅଞ୍ଚଳରେ 'ଆନ୍ଧ୍ର କାଳିଙ୍ଗୀ' ସମ୍ପ୍ରଦାୟ ଛିନ୍ନବିଚ୍ଛିନ୍ନ ଭାବେ ରହିଆସୁଥିବା ଦେଖାଯାଏ । ଏମାନେ 'କେନ୍ଦ୍ରାଣି' ଓ 'ବୌରି' ଭାବେ ଦୁଇ ଭାଗରେ ବିଭକ୍ତ । ଏମାନଙ୍କ ଭାଷା ତେଲଙ୍ଗୀ ହେଲେ ସୁଦ୍ଧା ତେଲିଙ୍ଗ ଭାଷା ବିଶାରଦଙ୍କ ମତରେ ଏହା ଆନ୍ଧ୍ର ଭାଷାର ଏକ ଉପଭାଷା (କଳିଙ୍ଗା ଡାଇଲେକ୍ଟ) । ଏହା ମୂଳ କଳିଙ୍ଗ ଭାଷାର ନୈସର୍ଗିକ ଲକ୍ଷଣଯୁକ୍ତ ହେଲେ ସୁଦ୍ଧା ଆନ୍ଧ୍ର ଭାଷା ସମ୍ମିଶ୍ରଣରେ ସଂକୀର୍ଣ୍ଣ ହୋଇପଡ଼ିଥିବା ଜଣାପଡ଼େ । ବୋଧହୁଏ ତତ୍ପରବର୍ତ୍ତୀ କଳିଙ୍ଗ ଭାଷାଭାଷୀଙ୍କ ଉପରେ ବହୁକାଳରୁ ସଂଖ୍ୟାବହୁଳ ତେଲିଙ୍ଗ ଭାଷା ପ୍ରଭାବ ବିସ୍ତାର କରି ତାହାକୁ କୁକ୍ଷିଗତ କରି ପକାଇଛି, ଯେପରି ପରବର୍ତ୍ତୀକାଳରେ 'ଓଡ଼-ଶାବରୀ' ଭାଷା ମଧ୍ୟରେ 'ଶୌରସେନୀ' ଅନୁପ୍ରବେଶ କରି 'ଔଡ୍ରୀ' ଭାବେ ପରିବର୍ତ୍ତିତ କରିଅଛି । ଭାଷା ବିଚାର ପ୍ରସଙ୍ଗରେ ଏହାର ସ୍ପଷ୍ଟୀକରଣ ଦିଆଯିବ । ଏ ସମ୍ପ୍ରଦାୟ ଆନ୍ଧ୍ର ଅଞ୍ଚଳରେ ତେଲଙ୍ଗି ଭାଷାରେ ଭାବ ବିନିମୟ କରୁଥିଲେ ସୁଦ୍ଧା 'ଔଡ୍ରୀ' ବା 'ଓଡ଼ିଆ'କୁ ପୂର୍ବତନ ମାତୃଭାଷା ବୋଲି ସ୍ୱୀକାର କରନ୍ତି । ଏଣୁ ସ୍ପଷ୍ଟ

କୁହାଯାଇପାରେ ପ୍ରାଚୀନ କଳିଙ୍ଗର 'ଓଡ଼ ଶବର' ମଧ୍ୟରୁ ଗୋଟିଏ ଶାଖା 'ଓଡ଼-କଳିଙ୍ଗୀ' ନାମରେ ଏବଂ ଅନ୍ୟ ଶାଖା 'ତେଲିଙ୍ଗା କାଳିଙ୍ଗା' ବୋଲି ଅଭିହିତ ହୁଅନ୍ତି ।

'ଧନୁଶର ଓ ଧାନକେଣ୍ଡା' ଏ ଶାଖାର ଜାତୀୟ ସଙ୍କେତ । ସ୍ମରଣ ରଖିବା ଉଚିତ, ଓଡ଼ କାଳିଙ୍ଗୀଙ୍କ ଜାତୀୟ ସଙ୍କେତ 'ଲଙ୍ଗଳ ଓ ଖଣ୍ଡା' । ଉଭୟବିଧ ସଙ୍କେତ କୃଷି ଏବଂ ଯୁଦ୍ଧ କର୍ମର ପ୍ରତୀକ । ଏମାନେ ଆନ୍ଧ୍ରପ୍ରଦେଶ ଛଡ଼ା ଦକ୍ଷିଣ ଓଡ଼ିଶାର ଆସିକା, ବରଡ଼ା, ବୁଗୁଡ଼ା ନିକଟସ୍ଥ କ୍ଷୁଦ୍ରପଲ୍ଲୀମାନଙ୍କରେ ପୁରୁଷାନୁକ୍ରମେ ବସବାସ କରି ଆସୁଛନ୍ତି । ଆବହମାନକାଳରୁ ଏମାନଙ୍କ ମଧ୍ୟରେ 'ପାଜ' ବା 'କୁଳପତି' ପ୍ରଥା ପ୍ରଚଳିତ । ବର୍ଣ୍ଣଶ୍ରେଣୀ ବିଭାଗ ଏ ଶାଖାରେ କେବେ ନ ଥିଲା - ଏବେ ବି ନାହିଁ । ପୂର୍ବକାଳର ବାଲ୍ୟବିବାହ ପରିବର୍ତ୍ତେ ବର୍ତ୍ତମାନ ଯୁବତୀ ବିବାହ ହିଁ ପ୍ରଚଳିତ । କୌଣସି କାରଣରୁ ଦଂପତି ମଧ୍ୟରେ ବିଚ୍ଛେଦ କମ୍ବା କାହାର ମୃତ୍ୟୁ ଘଟିଲେ ପୁନର୍ବିବାହ ନିଷିଦ୍ଧ ନୁହେଁ । ଓଡ଼ କାଳିଙ୍ଗୀ ପରି ଏ ସଂପ୍ରଦାୟରେ ବି ଷଟ୍‌କର୍ମ ବିଧାନ ଓ ଉପବୀତ ଧାରଣ ବିଧି ରହିଛି । ସନ୍ତାନର ଜାତ କର୍ମରେ ପୁଂସବନ, ସୀମନ୍ତୋନୟନ, ନାମକରଣାଦି ପାଞ୍ଚଟି ସଂସ୍କାରବିଧି ପାଳିତ ହୁଏ । ସୀମନ୍ତୋନୟନ କର୍ମରେ ଜାତ ସନ୍ତାନର ପିଉସାଘର ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେହିଦିନ ଶିଶୁର ପିତାଙ୍କ ଦ୍ୱାରା ଭଣଜାଭଣିଜୀ ନିମନ୍ତ୍ରିତ ହୋଇ ଘରେ ଉପସ୍ଥିତ ରହନ୍ତି । ଏଣେ ପ୍ରସୂତିର ବାପଘରୁ ଚାଉଳ, ଗୁଡ଼ ଏବଂ ପିଠା ଆସିଥାଏ । ବାପ, ମା ଦିହେଁ ଲଗାଲଗି ପିଢ଼ା ଉପରେ ବସନ୍ତି ଏବଂ ତାଙ୍କ ଆଗରେ ତାହା ଥୁଆ ହୁଏ । ଉପସ୍ଥିତ ଭଣଜା ବା ଭଣିଜୀଙ୍କୁ ସନ୍ତାନର ପିତା କୋଳରେ ବସାଇ ପିଲାର ମାମୁଁଘରୁ ଆସିଥିବା ପଦାର୍ଥ ଖାଇବାକୁ ଯାଚନ୍ତି । ଜନ୍ମିତ ଶିଶୁ 'କନ୍ୟା' ହୋଇଥିଲେ ଭଣଜା ମାମୁଙ୍କଠାରୁ ପ୍ରତିଶ୍ରୁତି ଚାହେଁ ଯେ, ସେ ଚାହିଁଯୋଗ୍ୟା ହେଲେ ତା' ସହିତ ତାକୁ ବିବାହ କରିବେ । ସମ୍ମତି ଜଣାଇଲା ପରେ ସେ ପଦାର୍ଥ ସେ ଗ୍ରହଣ କରେ, ଅନ୍ୟଥା କୋଳରୁ ଉଠିଯାଏ । ପୁତ୍ର ସନ୍ତାନ ହେଲେ ଯୌବନ କାଳକୁ ବିବାହଯୋଗ୍ୟା ଭଣିଜୀ ସହିତ ବିବାହର ପ୍ରତିଶ୍ରୁତି ନିଆହୁଏ । ଅନ୍ୟଥା ପକ୍ଷେ ଇତର ବ୍ୟବସ୍ଥା ଅବୈଧ ବିବେଚିତ ହୁଏ ନାହିଁ । ମାମୁଙ୍କ ପ୍ରତିଶ୍ରୁତି ପରେ ଭଣଜା ମାଈଁ କୋଳକୁ ଉଠି ଆସି ତାହା ପୁଣି ଆବୃତ୍ତି କରେ । ଉକ୍ତ ବିଧାନମାନଙ୍କରୁ ସେ ସଂପ୍ରଦାୟରେ 'ମାତୁଳାକନ୍ୟା' ଓ 'ଭଣିଜୀ' ବିବାହର ଅପରିହାର୍ଯ୍ୟତା ସହିଜେ ଅନୁମେୟ । ଏହା ଦାକ୍ଷିଣାତ୍ୟ ସଂସ୍କୃତିର ଅନୁସରଣ ଛଡ଼ା ଅନ୍ୟ କିଛି ନୁହେଁ । ଓଡ଼ ଶାଖା ପରି ସନ୍ତାନ ଜନ୍ମର ଏଗାର ଦିନ ଯାଏ ଅଶୌଚ ପାଳନ ଓ ଏକୋଇଶ ଦିନରେ ଏକୋଇଶା ବିଧାନ ଏ ସଂପ୍ରଦାୟରେ ମଧ୍ୟ ରହିଛି ।

ଏହାଙ୍କ ବିବାହ ପ୍ରଥାରେ କେତେକ ସ୍ୱତନ୍ତ୍ରତା ପରିଲକ୍ଷିତ ହୁଏ । ଏକେ ତ ମାତୁଳାକନ୍ୟା ଓ ଭଣିଜୀ ବିବାହ ପ୍ରଥା କୌଳିକ ପରଂପରା ଭାବେ ସ୍ୱୀକୃତ ଏବଂ ତା'ଛଡ଼ା କନ୍ୟାଘର ପରିବର୍ତ୍ତେ ବରଘରେ ଏହାଙ୍କ ବିବାହକର୍ମ ସଂପାଦିତ ହୁଏ । ଲଗ୍ନ ସ୍ଥିର ହେଲେ ବରପକ୍ଷ କନ୍ୟାଘରକୁ କନ୍ୟାସୁନା ବାବଦରେ ଉପଢୌକନ ପଠାନ୍ତି । କନ୍ୟା

ପାଲଙ୍କି ବା ସବାରରେ ବସି ବରଘରକୁ ଆସେ । କନ୍ୟାର ଭାଉଜ ନଣନ୍ଦ ବା ଅନୁରୂପ କେହି ଜଣେ ସ୍ତ୍ରୀ କନ୍ୟାକୁ ପାଲଙ୍କି ଭିତରୁ ହାତଧରି ଉଠାଇ ଆଣି ବେଦୀ ଉପରେ ବସାଏ । ସେଠାରେ ଷଟ୍‌କର୍ମ ବିଧାନ ଶେଷରେ ବର 'ରୁଦ୍ରଗଣ୍ଠି' ପଡ଼ିଥିବା ଷଡ଼ଗୁଣା ଉପବୀତ ଧାରଣ କରେ । କନ୍ୟା ପିତା ବର ହାତରେ କନ୍ୟାକୁ ସମର୍ପଣ କଲାପରେ ବିବାହକାର୍ଯ୍ୟ ସମ୍ପୂର୍ଣ୍ଣ ହୁଏ । ଶୁଦ୍ଧସ୍ନାନ ପରେ ବରକନ୍ୟାଙ୍କ ହାତରେ ବନ୍ଧାଥିବା 'ଅସରଳା-ସୂତା' ଫିଟେଇ ଦିଆଯାଏ । ତା'ପରେ ହୁଏ 'ମୁଦି ଖୋଜା' । ଏକ ଜଳପୂର୍ଣ୍ଣ ହାଣ୍ଡି ଭିତରେ ମୁଦ୍ରିକାଟିଏ ପକାଇ ବରକନ୍ୟା ଏକାବେଳକେ ହାତ ପୂରାଇ ଖୋଜନ୍ତି, ଯେ ତାହା ପାଏ ତାକୁ ଅଧିକ ଭାଗ୍ୟବାନ୍ କୁହାଯାଏ । ବିଧି ସମାପନ ପରେ ଗ୍ରାମଦେବତୀ 'ବାଙ୍କେଶ୍ୱରୀଙ୍କୁ' 'ଆଡ଼ଶା ପିଠା' ଭୋଗ ଲଗାଇ ମୁଣ୍ଡିଆ ମାରନ୍ତି । ମନେରଖିବା ଉଚିତ 'ବାଙ୍କେଶ୍ୱରୀ' ମଧ୍ୟ କଳିଙ୍ଗର ଅରଣ୍ୟ ଦେବତାଙ୍କ ମଧ୍ୟରେ ଅନ୍ୟତମ । ବର୍ତ୍ତମାନ ସୁଦ୍ଧା ଏ 'ଖେମୁଣ୍ଡି' ମାଳ ଅଞ୍ଚଳରେ ପୂଜା ପାଇ ଆସୁଛନ୍ତି । ଦେବୀ ଦର୍ଶନ ଶେଷରେ ପ୍ରଥମେ ଗୃହ ପ୍ରବେଶ ବେଳେ ଏରୁଣ୍ଡି ବନ୍ଧ ଉପରେ ବାଟ ଓଗାଳି ବସିଥିବା ଝିଅ ନଣନ୍ଦକୁ ଉପହାର ଦ୍ୱାରା ସନ୍ତୁଷ୍ଟ କଲାପରେ ନୂଆବୋହୂ ଏରୁଣ୍ଡି ଡେଇଁ ଭିତରକୁ ଆସେ ।

ଏ ସମ୍ପ୍ରଦାୟରେ କଶ୍ୟପ ଓ ଭରଦ୍ୱାଜ ସମେତ ଦଶଟି 'ଗୋତ୍ର' ଥିବା ସେମାନଙ୍କ ମୁହଁରୁ ଶୁଣାଯାଏ । ସେ ମଧ୍ୟରେ 'ଓଡ଼ କାଳିଙ୍ଗୀ' ଶାଖାରେ ପ୍ରଚଳିତ ଶଙ୍ଖ ଓ ନାଗଗୋତ୍ର ଅନ୍ତର୍ଭୁକ୍ତ ନୁହେଁ । କିନ୍ତୁ କାଶ୍ୟପ ଓ ଭରଦ୍ୱାଜ ଗୋତ୍ର ଉଭୟ ଶାଖାରେ ସମାନ ରୂପେ ବିଦ୍ୟମାନ । ତା' ଛଡ଼ା ଆନ୍ଧ୍ର କାଳିଙ୍ଗୀ ଶାଖାର କାଶ୍ୟପ ଗୋତ୍ରୀଙ୍କ ଘର ସଂଖ୍ୟା 'ଓଡ଼ିଆ' ଏବଂ 'ପୂଜାରୀ' ଅର୍ଥାତ୍ ସେ ଗୋତ୍ରର ବ୍ୟକ୍ତିଙ୍କ ନାମ ଶେଷରେ 'ଓଡ଼ିଆ' ଶବ୍ଦ ଯୋଡ଼ାହୁଏ । ଯଥା 'କୃଷ୍ଣମୂର୍ତ୍ତି ଓଡ଼ିଆ' ବା 'ରାମାନୁଜ ପୂଜାରୀ' ଇତ୍ୟାଦି । ଏଣୁ ମନେହୁଏ ଓଡ଼ ସଂପ୍ରଦାୟର କାଶ୍ୟପ ଓ ଭରଦ୍ୱାଜ ଗୋତ୍ରୀ କେତେକ ବ୍ୟକ୍ତି ତେଲିଙ୍ଗି ଶାଖା ଅନ୍ତର୍ଗତ ହେଲେ ସୁଦ୍ଧା ମୂଳ ଓଡ଼ ଶାଖାର ସ୍ମାରକୀ ସ୍ୱରୂପ 'ଓଡ଼ିଆ' ଓ 'ପୂଜାରୀ' ଶବ୍ଦକୁ ସଂଖ୍ୟା ଭାବେ ଗ୍ରହଣ କରି ନେଇଛନ୍ତି । ଅନ୍ୟଥା ଦକ୍ଷିଣ ଭାରତୀୟ ପଦ୍ଧତିରେ ଘରସଂଖ୍ୟା ଗ୍ରହଣ କରିଥିଲେ ତାହା ନାମର ଅନ୍ତରେ ନରହି ଆଦିରେ ଯୋଡ଼ା ହୋଇଥାନ୍ତା । ସେଥିଯୋଗୁ କେତେକ ଓଡ଼ କଳିଙ୍ଗବାସୀ 'ଆନ୍ଧ୍ର କାଳିଙ୍ଗୀ' ରୂପେ ତାଦୃଶ ସଂଖ୍ୟା ଧାରଣ କରିଥିବା ବିଶେଷ ସମ୍ଭବ । ଯାହାହେଉ ଓଡ଼କାଳିଙ୍ଗୀ ଅନୁରୂପ ଏମାନଙ୍କ ମଧ୍ୟରେ ସୁଦ୍ଧା ସ୍ୱ-ଗୋତ୍ର ବିବାହ ନିଷିଦ୍ଧ ।

ଏତଦ୍‌ବ୍ୟତୀତ 'ଜନ୍ତାଳ' ପ୍ରଥା ଏ ଜାତିର ଅନ୍ୟତମ ବୈଶିଷ୍ଟ୍ୟ । ଧାନ ଅମଳ ପରେ ଗ୍ରାମବାସୀ ଏକତ୍ରିତ ହୋଇ ଶୁଭଦିନ ଦେଖି ଖଳାଜମି ଉପରେ ଭୋଜି ଭାତର ଆୟୋଜନ କରନ୍ତି । ଗାଁ ପୁରୋହିତେ ଆସନ୍ତି । 'ବନଦେବୀ'ଙ୍କ ପୂଜା ହୁଏ । ବାଳ-ବୃଦ୍ଧନିର୍ବିଶେଷରେ ସମସ୍ତେ ଏକାଠି ବସି ପଂକ୍ତି ଭୋଜନ କରନ୍ତି । ଆନନ୍ଦ ଉଲ୍ଲାସରେ ଗୀତ ଗାହେ । ଏହାର ନାଁ 'ଜନ୍ତାଳ' । ଏହା ପାର୍ବତ୍ୟ ଶବରଙ୍କର ଜାତୀୟ ପର୍ବ 'ବନଦେବୀ' ପୂଜାରୁ ଗୃହୀତ ।

ବନ୍ୟ ସଂପ୍ରଦାୟର ଏହିବ ଆଦିମ ପରମ୍ପରା ଉତ୍ତର କାଳର ଉପକୂଳବାସୀ ମଧ୍ୟରେ ପୁରୁଷାନୁକ୍ରମେ ସୁରକ୍ଷିତ ହୋଇଆସିଥିବା ଅନୁମିତ ହୁଏ ।

ଉକ୍ତ ଉଭୟବିଧ ଶାଖାର ଶବଦାହ ପ୍ରଥା ଓ ଅନ୍ତ୍ୟେଷ୍ଟି ବିଧାନ ପ୍ରାୟ ସମାନ ଭାବରେ ପାଳିତହୁଏ । କନ୍ୟା ଗୃହଯୋଗ୍ୟା ହେବା ସମୟର ସାମାଜିକ ଚଳଣିରେ ମଧ୍ୟ ବିଶେଷ ପାର୍ଥକ୍ୟ ପରିଦୃଷ୍ଟ ହୁଏ ନାହିଁ । ଝିଅ ରଜସ୍ୱଳା ହେଲାମାତ୍ରେ ସାହି ପଡ଼ିଶା ଓ ଗ୍ରାମ-ଲୋକଙ୍କ ଘରକୁ ଶୁଭବାର୍ତ୍ତା ପଠାଯାଏ । ସାତଜଣ ସଧବା ସ୍ତ୍ରୀ ଆଞ୍ଜୁଳାଏ ଲେଖାଏଁ ଧାନ ଧରି ରଜସ୍ୱଳାର ଘରେ ପହଞ୍ଚନ୍ତି । ଆଣିଥିବା ଧାନରେ ଘରକୋଣରେ କୋଠିଟିଏ ତିଆରି କରାହୁଏ । ଗୁଡ଼ ଓ ଚାଉଳର 'ଠୁଲୁକା ପିଠା' 'ଗୁଡ଼ ଖିରି' ସହିତ ମାଟି ସରାରେ ରଖି ଷଠିଦେବୀଙ୍କୁ ଭୋଗଲଗାଯାଏ । ସେଇଦିନୁ ପୁଷ୍ପବତୀ ଅଲଣା ଖାଦ୍ୟ ଖାଇ କୋଠି ଭିତରେ ସାତଦିନ ପର୍ଯ୍ୟନ୍ତ ବସି ରହେ—ବାହାରକୁ ଯିବା ନିଷିଦ୍ଧ । ଅଗାଧୁଆ ରହି ଚାରିଦିନ କଟାଇଲା ପରେ ପଞ୍ଚମଦିନ ରାତି ପାହାନ୍ତାରୁ ମାତୃସ୍ଥାନୀୟା ରମଣୀମାନେ ଝିଅକୁ ସାଙ୍ଗରେ ନେଇ ଗାଁ ପୋଖରୀରେ ସ୍ନାନ କରାଇ ଆଣନ୍ତି । ସେଦିନ କଦଳୀପତ୍ର ବା ଖଲିରେ ତାକୁ ଭାତ ଡାଲି ଖାଇବାକୁ ଦିଆଯାଏ । ଅଗାଧୁଆ ଭିତ୍ତି ସୁଦ୍ଧା ସେ ନିୟମିତ ଦେହରେ ତେଲହଳଦୀ ଲଗାଇବା ବିଧି ରହିଛି । ଷଷ୍ଠଦିନ ପୁଣି ପୂର୍ବ ନିୟମରେ ରହି ସପ୍ତମଦିନ ରାତି ଶେଷରେ ସ୍ନାନ କରାଇ ଆଣି ସାତଟି ବାଇଗଣ ପତ୍ରରେ ଚାଉଳ ପିଠା ଓ ଖିରି ବାଢ଼ି ଇଷ୍ଟଦେବୀଙ୍କୁ ପୂଜା କରନ୍ତି । ସାତଜଣ ଅଜାତରଜା ଝିଅଙ୍କୁ ଡାକି ଆଣି ରଜସ୍ୱଳା ସହିତ ଏକାଠି ବସାଇ ନିୟମିତ ଅନ୍ନବ୍ୟଞ୍ଜନ ଖାଇବାକୁ ଦିଅନ୍ତି । ସେଦିନ ସାତଘରୁ ହଳଦୀ ଓ ତେଲ ଆସେ ଏବଂ ତା' ଲଗାଇ କନ୍ୟା ଶୁଦ୍ଧ ହୁଏ । ଶେଷରେ ବନ୍ଧୁ ସ୍ୱଜନଙ୍କୁ ନିମନ୍ତ୍ରଣ କରି ମିଷ୍ଟାନ୍ନ ଭୋଜନ ଦ୍ୱାରା ଆପ୍ୟାୟିତ କରାଯାଏ । ଏହା କାଳିଙ୍ଗୀ କୁଳର ସାମାନ୍ୟ ବିଧି ।

**ଓଡ଼ ପାଟକ**—ଉପରୋକ୍ତ ଚଳଣିମାନ ଅନୁଧ୍ୟାନ କଲେ ଜଣାପଡ଼େ, ଏହା କେବଳ ସେମାନଙ୍କ ମଧ୍ୟରେ ହିଁ ଆବଦ୍ଧ ନଥିଲା, କଳିଙ୍ଗର ସମସ୍ତ ଓଡ଼ ପାଟକ କୁଳରେ ତାଦୃଶ ବିଧିବିଧାନ ଊଣା ଅଧିକେ ପ୍ରଚଳିତ ଥିଲା । ବର୍ତ୍ତମାନର ଅବଶିଷ୍ଟ ଓଡ଼ ପାଟକଙ୍କ କୁଳପ୍ରଥା ଓ ପରଂପରା ମଧ୍ୟରେ ସେ ସବୁର ସତ୍ତା କେତେକ ସ୍ଥଳରେ ସମ୍ପୂର୍ଣ୍ଣ ଭାବେ ବିଦ୍ୟମାନ ଥିଲାବେଳେ ଆଉ କେତେକରେ ଆଂଶିକ ପରିବର୍ତ୍ତନର ସୂଚନା ମିଳେ । ବିଚାର କଲେ କିନ୍ତୁ ସ୍ପଷ୍ଟ ପ୍ରତୀୟମାନ ହୁଏ, ସମସ୍ତ ପାଟକକୁଳ ପରଂପରାର ଉତ୍ପତ୍ତିମୂଳ ସମାନ । 'ଓଡ଼-ପାଟକ' ବୋଇଲେ ସମଗ୍ର ଉପକୂଳବାସୀ ଓଡ଼ ସମାଜକୁ ବୁଝାଉଥିଲା । ଜାତିଭେଦ ନଥିବା କାରଣରୁ ପ୍ରତ୍ୟେକଙ୍କ ସାମାଜିକ ଚଳଣିରେ ପ୍ରତ୍ୟେକ ଅଂଶୀଦାର ହେବାରେ ବାଧା ନଥିଲା । ସେମାନଙ୍କ ମଧ୍ୟରେ ଯାହା କିଛି ପାର୍ଥକ୍ୟ ଥିଲା ତାହା କୁଳବୃତ୍ତି ମାତ୍ର । ପ୍ରତ୍ୟେକର କୁଳବୃତ୍ତି ଇତରଠାରୁ ଭିନ୍ନ ଥିଲା । କଳିଙ୍ଗବାସୀ ଓଡ଼-ପାଟକ କୁଳର ନାମ ସଙ୍କେତ ଆଗରୁ ପ୍ରଦତ୍ତ ହୋଇଛି, ବର୍ତ୍ତମାନ ସେମାନଙ୍କ କୁଳବୃତ୍ତି ସମ୍ବନ୍ଧରେ କିଞ୍ଚିତ ଆଭାସ ପରପୃଷ୍ଠାରେ ଦିଆଗଲା ।

ଏଠାରେ ଉଲ୍ଲେଖନୀୟ ଯେ ଗୃହ ପାଠକ କୁଳର ସାର୍ବଜନୀନ ବୃତ୍ତି ଥିବାରୁ ସେମାନଙ୍କୁ 'ଓଡ଼' କୁହାଯାଉଥିଲା । ତା ବ୍ୟତୀତ ଯେ ଯେଉଁ ମୁଖ୍ୟବୃତ୍ତି ଅବଲମ୍ବନ କରି ରହିଥିଲା ସମାଜରେ ସେ ତଦନୁରୂପ 'ପାଠକ' ବୋଲି ପରିଚିତ ହୋଇ ଆସୁଥିଲା । 'ବୃତ୍ତି' ହିଁ ଥିଲା କୁଳର ନାମ ସଙ୍କେତ ।

୧ । **ଓଡ଼—ଖଣ୍ଡାଏତ**—ସମ୍ପ୍ରତି ଦକ୍ଷିଣ ଓଡ଼ିଶାରେ 'କାଳିଞ୍ଜି' ନାମରେ ଏମାନେ ଅଭିହିତ । କୁଳବୃତ୍ତି ଯୁଦ୍ଧ । ଦୈନନ୍ଦିନ ଶାରୀରିକ ବ୍ୟାୟାମ, ଯୁଦ୍ଧ କୌଶଳ, ଖଣ୍ଡା, ବର୍ଛା, ଛୁରି, ଭୁଜାଲି ପ୍ରଭୃତି ପରିଚାଳନାରେ ନିୟମିତ ଅଭ୍ୟାସ ସଙ୍ଗେ ସଙ୍ଗେ ଆଗାମୀ ଦିନପାଇଁ ପ୍ରସ୍ତୁତ କରାଇବା ଥିଲା ଏମାନଙ୍କ କୁଳଧର୍ମ । ତେଣୁ ସେ ଜାତିର କୁଳ ସଙ୍କେତ 'ଖଣ୍ଡା' ଓ 'ଲଙ୍ଗଳ' । ଏବେ ସୁଦ୍ଧା ଗହ୍ମାପୂର୍ଣ୍ଣିମା ଓ ଦଶହରା ଦିନରେ ଲଙ୍ଗଳ ଓ ଖଣ୍ଡାପୂଜା ଏ ଜାତିର କୁଳବିଧାନରୂପେ ପ୍ରଚଳିତ । କଳିଙ୍ଗରେ ଏମାନଙ୍କ ସଂଖ୍ୟା ନଗଣ୍ୟ ନଥିଲେ ସୁଦ୍ଧା ଦେଶ କାଳ ବ୍ୟବଧାନହେତୁ ପରସ୍ପର ବିଚ୍ଛିନ୍ନ ରହି କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀରେ ପରିଣତ ହୋଇପଡ଼ିଛନ୍ତି ।

୨ । **ପାଇକ**—'ଓଡ଼-ପାଇକ' ଭାବେ ପରିଚିତ । ଅତୀତରେ ଏମାନେ ଥିଲେ ଗ୍ରାମର ସତର୍କ ପ୍ରହରୀ । ଶାନ୍ତି ସମୟରେ ଚୌରାଦି ଉପଦ୍ରବରୁ ଗ୍ରାମବାସୀଙ୍କୁ ରକ୍ଷା ଏବଂ ଯୁଦ୍ଧ କ୍ଷେତ୍ରରେ ପଦାତିକ ସୈନ୍ୟଭାବେ ଶତ୍ରୁ ସଂହାର କରିବା ଥିଲା ଏମାନଙ୍କ କୁଳବୃତ୍ତି । ଆଖଡ଼ାଘରେ ଯୁବ ସମାଜକୁ ପଦାତିକ ଯୁଦ୍ଧ କୌଶଳ ଶିକ୍ଷାଦେବା ମଧ୍ୟ ସେମାନଙ୍କ କର୍ତ୍ତବ୍ୟ କର୍ମ ଥିଲା । କାଳର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଯେତେବେଳେ ଏମାନଙ୍କ ଗୁରୁତ୍ୱ ହ୍ରାସ ପାଇବାକୁ ଲଗେ ସେତେବେଳେ କୁଳବୃତ୍ତି ତ୍ୟାଗକରି ଜୀବିକାର୍ଜନପାଇଁ ଅନ୍ୟପନ୍ଥା ଆଶ୍ରୟକରି ରହିଛନ୍ତି । ଏଣୁ ବର୍ତ୍ତମାନ ଏମାନଙ୍କୁ ଠିକ୍‌ଭାବେ ଠାବ କରିବା କଷ୍ଟକର ହୋଇପଡ଼ିଛି ।

୩ । **ସୁନାରି**—ସୁନା ରୁପାରେ ବିଭିନ୍ନ କିସମର ଅଳଂକାର ନିର୍ମାଣ କରିବା ଥିଲା ଏମାନଙ୍କ କୁଳବୃତ୍ତି । ସୂକ୍ଷ୍ମ କାରୁକାର୍ଯ୍ୟ ବିଶିଷ୍ଟ ଅଙ୍ଗାଭରଣ, ମୁଦ୍ରା, ପାତ୍ରାଦି ନିର୍ମାଣକରି ବିଦେଶକୁ ପ୍ରେରଣ କରୁଥିଲେ ଏବଂ ବିଦେଶୀବସ୍ତୁ ଅନୁକରଣରେ ନବ ନବ ପ୍ରଣାଳୀରେ ପ୍ରସ୍ତୁତ ଅଳଙ୍କାରଦ୍ୱାରା ଦେଶବିଦେଶରେ ପ୍ରଶଂସିତ ହେଉଥିଲେ । ମଣି ମୁକ୍ତାଦି ମୂଲ୍ୟବାନ୍ ଧାତୁ ଚିହ୍ନିବାରେ ତାହାଙ୍କ ସମକକ୍ଷ କେହି ନଥିଲେ । ତେଣୁ ସେମାନଙ୍କୁ 'ଚିହ୍ନାରି' ମଧ୍ୟ କୁହାଯାଉଥିଲା । ସଂଖ୍ୟାରେ ଅଳ୍ପହେଲେ ସୁଦ୍ଧା ଏମାନେ ସମଗ୍ର କଳିଙ୍ଗରେ ବିକ୍ଷିପ୍ତଭାବେ ରହିଥିଲେ । ସଂଗତିସମ୍ପନ୍ନ କୁଳଭାବେ ଏହାଙ୍କ ସୁଖ୍ୟାତି ଥିଲା । ଏହାଙ୍କ କଳାକୁଶଳତା ଯୋଗୁ କଳିଙ୍ଗ ଦ୍ୱୀପ-ଦ୍ୱୀପାନ୍ତରେ ବିପୁଳ ମର୍ଯ୍ୟାଦାର ଅଧିକାରୀ ହୋଇପାରିଥିଲା । ସୂକ୍ଷ୍ମାତିସୂକ୍ଷ୍ମ କମକୁନ୍ଦ କରିବାରେ ଏମାନେ ଅଦ୍ୱିତୀୟ ଥିଲେ ।

୪ । **ତେଲି**—ତୈଳବୀଜରୁ ତେଲ ପ୍ରସ୍ତୁତ କରିବା ଏ କୁଳର ବ୍ୟବସାୟ । ପାର୍ବତ୍ୟ ଓ ଆରଣ୍ୟକ ସମେତ ସମଗ୍ର ଅଧିବାସୀ ମଧ୍ୟରେ ତୈଳ ବ୍ୟବହାର ଅପରିହାର୍ଯ୍ୟ ଥିବାହେତୁ

ଏ ଜାତି ଲୋକମାନଙ୍କରେ ବିଶିଷ୍ଟ ସ୍ଥାନ ଲାଭ କରିଥିଲା । ବ୍ୟବସାୟଲବ୍ଧ ଧନ ସମ୍ପଦ ଏମାନଙ୍କୁ ଧନିକ ଶ୍ରେଣୀରେ ପରିଣତ କରାଇଥିଲା । ବିଦେଶକୁ ନୌକାଯୋଗେ ତୈଳ ରପ୍ତାନି କରି ପଣ୍ୟଦ୍ରବ୍ୟ ଆମଦାନୀଦ୍ୱାରା ଦେଶର ଆବଶ୍ୟକତା ପୂରଣ କରିବାରେ ସହାୟକ ଥିଲେ । ଏଣୁ ସମାଜରେ 'ସାଧୁ' ବା 'ସାହୁ' ନାମରେ ଏମାନେ ପରିଚିତଥିଲେ । ଏବେ ସୁଦ୍ଧା କଳିଙ୍ଗରେ 'ତେଲି ସାହୁ ମହାଜନ' ରୂପେ ପ୍ରବାଦୋକ୍ତି ପ୍ରଚଳିତ । ବାସ୍ତବିକ ସେମାନଙ୍କ ଯୋଗୁ ଦେଶର ଆର୍ଥିକ ଉନ୍ନତି ଦ୍ରୁତତର ହୋଇପାରିଥିଲା ।

୫ । **ଗୁଡ଼ିଆ**—କୁଳବୃତ୍ତି ମିଷ୍ଟାନ୍ନ ବ୍ୟବସାୟ । ଗୁଡ଼ ସାହାଯ୍ୟରେ ନାନାବିଧ ପିଠାପଣା ପ୍ରସ୍ତୁତ କରି ଲୋକଙ୍କ ଆବଶ୍ୟକତା ପୂରଣ କରୁଥିଲେ । ସୁମିଷ୍ଟ ଖାଦ୍ୟ ପଦାର୍ଥ ବିଭିନ୍ନ ପ୍ରଣାଳୀରେ ପ୍ରସ୍ତୁତ କରି ବିତ୍ତଶାଳୀଠାରୁ ନିମ୍ନତମ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତଙ୍କ ଶ୍ରଦ୍ଧାର ପାତ୍ର ହୋଇପାରିଥିଲେ । ସେହି ପଦାର୍ଥମାନ ଭୋଗ ସାମଗ୍ରୀଭାବେ ଦେବଦେବୀଙ୍କୁ ମଧ୍ୟ ଉତ୍ସର୍ଗ କରାଯାଉଥିଲା । ଏମାନଙ୍କ କର୍ମନୈପୁଣ୍ୟ ଦକ୍ଷିଣ କଳିଙ୍ଗକୁ 'ମିଷ୍ଟ ପିଷ୍ଟକ' ଦେଶରୂପେ ପ୍ରସିଦ୍ଧ କରାଇପାରିଥିଲା । ବର୍ତ୍ତମାନ ଯୁଗରେ ସୁଦ୍ଧା ଏ ସମ୍ପ୍ରଦାୟର ପୂର୍ବ ମର୍ଯ୍ୟାଦା ଅକ୍ଷୁଣ୍ଣ ରହିଥିବାପରି ମନେହୁଏ ।

୬ । **ଚିତ୍ରକର**—ଚିତ୍ରକର୍ମ ଏମାନଙ୍କ କୁଳବୃତ୍ତି । କଳିଙ୍ଗର ବିବିଧ ଅଧିବାସୀଙ୍କ ମଧ୍ୟରେ ଚିତ୍ରକଳା ପ୍ରତି ମୋହ ସମାନ ଭାବେ ସମସ୍ତଙ୍କଠାରେ ପରିଲକ୍ଷିତ । ପାର୍ବତ୍ୟ ଶବରଙ୍କ ରେଖାଚିତ୍ର, ଆରଣ୍ୟକ ସମାଜର ଝୋଟିଚିତ୍ର ଏବଂ ଓଡ଼ ଶବରଙ୍କ ପଞ୍ଚବର୍ଣ୍ଣୀ ଚିତ୍ର ଏହାର ପ୍ରମାଣ । ମାଟି, ପଥର, ଗୋବର, ସୋଲ ସାହାଯ୍ୟରେ ନାନାଶୈଳୀରେ ମୂର୍ତ୍ତି ଗଢ଼ି ନାନାରଙ୍ଗର ଚିତ୍ରମାନ ଆଙ୍କି ଅପୂର୍ବ କଳାକୁଶଳତାର ପରିଚୟ ପ୍ରଦାନ କରିଥିଲେ । ବୃକ୍ଷ, ଲତା, ପଶୁ, ପକ୍ଷୀ, ଦିଅଁ-ଦେବତାଙ୍କ ଜୀବନ୍ତ ପ୍ରତିମା ଗଠନ, ଗୃହସଜ୍ଜା, ଉତ୍ସବ-କାଳୀନ ଛିତ୍ର, ଆତପତ୍ରାଦିର ଚିତ୍ର ଏବଂ ପଟଚିତ୍ର ମାନବିକ ସୌନ୍ଦର୍ଯ୍ୟବୋଧର ଜ୍ୱଳନ୍ତ ଦୃଷ୍ଟାନ୍ତ ରୂପେ ପ୍ରତିଭାତଥିଲା । ଏହାର ମୂଳ ସ୍ରଷ୍ଟାରୂପେ ଚିତ୍ରକର ସମ୍ପ୍ରଦାୟ ବିଦେଶରେ ମଧ୍ୟ କମ୍ ଖ୍ୟାତି ଅର୍ଜନ କରିନଥିଲେ । ଏବେ ସୁଦ୍ଧା ପ୍ରାଚୀନ ଗୌରବକୁ ସେମାନେ ଅକ୍ଷୁଣ୍ଣ ରଖିଥିବା ମନେହୁଏ ।

୭ । **କାଚରା**—ଏମାନେ 'ଶଙ୍ଖାରି' ନାମରେ ମଧ୍ୟ ପରିଚିତ । କଳିଙ୍ଗର ନାରୀ ସମାଜରେ କାଚ ବା ଚୁଡ଼ିର ମୂଲ୍ୟ ସର୍ବାଧିକ । ତାହା ଥିଲା କୁଳରମଣୀ ପକ୍ଷେ ପବିତ୍ର ଭୂଷଣ ଓ ପତି ସୋହାଗର ମଙ୍ଗଳ ସଙ୍କେତ । ଚିତ୍ର ବିଚିତ୍ର କାଚ ପିନ୍ଧି ଐହ୍ୟ ସୁଲକ୍ଷଣୀଭାବେ ପରିଚୟ ଦେଲେ ସେ ନିଜକୁ କୃତାର୍ଥ ମନେକରେ । ସେହି ମନସ୍ତାତ୍ତ୍ୱିକ ପ୍ରୟୋଜନ ପୂରଣ କରିବାରେ କାଚରାକୁଳର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଜଉରଙ୍ଗ, ଅଠା ପ୍ରଭୃତି ବସ୍ତୁଦ୍ୱାରା ରଙ୍ଗ ବେରଙ୍ଗର ଶଙ୍ଖା ପ୍ରସ୍ତୁତ କରି ନାରୀ ସମାଜର ଯେପରି ଶ୍ରଦ୍ଧାଭାଜନ ହୋଇଥିଲେ ସେ ସମସ୍ତ ବସ୍ତୁ ଦ୍ୱୀପାନ୍ତର ପଠାଇ ବିନିମୟରେ ବିଦେଶୀ ପଦାର୍ଥମାନ ସ୍ୱଦେଶକୁ ଆଣିବାରେ ଅନ୍ୟତମ ଅଂଶୀଦାର ଥିଲେ । ଏମାନଙ୍କ ସାମାଜିକ ପ୍ରତିଷ୍ଠା ସ୍ତ୍ରୀସମାଜରେ

କେବଳ ସୀମାବଦ୍ଧ ନଥିଲା । ନାନାବିଧ ପାନ୍ତ, ଦର୍ପଣ, ପ୍ରଭୃତ ଚକ୍ଷୁ ପ୍ରଭୃତ ବସ୍ତୁଦ୍ୱାରା ପୁରୁଷ ସମାଜରେ ମଧ୍ୟ ଆଦୃତ ଥିଲେ । ସୁତରାଂ ସଭ୍ୟତାର ଉନ୍ନୟନ କ୍ଷେତ୍ରରେ ଏହାଙ୍କ ଭୂମିକା ନଗଣ୍ୟ ନଥିଲା । ବର୍ତ୍ତମାନ ସୁଦ୍ଧା କଳିଙ୍ଗରୁ ଏ ଜାତିର ସତ୍ତା ସମ୍ପୂର୍ଣ୍ଣ ଲୋପପାଇନାହିଁ ।

୮ । **ବାଉରିଆ**—ଏହା ଏକ ଲୁପ୍ତପ୍ରାୟ ସମ୍ପ୍ରଦାୟ । ଏହାଙ୍କ ଜୀବିକା ଥିଲା 'ବାଉ' ଜଗିବା । ସମୁଦ୍ରକୂଳ ନଙ୍ଗର ପଡ଼ିବା ସ୍ଥାନକୁ 'ବାଉ' କୁହାଯାଏ । ଓଡ଼ିଆ ଭାଷାରେ ଏହାର ବ୍ୟବହାର ପରିଦୃଷ୍ଟ ନହେଲେ ମଧ୍ୟ ଆନ୍ଧ୍ର କାଳିଙ୍ଗୀ ଉପଭାଷାରୁ ଲୁପ୍ତ ହୋଇ ନାହିଁ । 'ବାଉ'ର ଅର୍ଥ ସମୁଦ୍ରକୂଳ । ସେହି ଅର୍ଥରେ 'ବାଉରୁ' ନାମକରଣ ହୋଇଥିବା ସମ୍ଭବ । 'ବାଉରୁ' ବର୍ତ୍ତମାନର ଓଡ଼ିଶା ସୀମାନ୍ତକୁ ଲାଗି ଆନ୍ଧ୍ର ଅଞ୍ଚଳରେ ଅବସ୍ଥିତ ଏକ ସମୁଦ୍ର ତୀରବର୍ତ୍ତୀ ଗ୍ରାମ । ବନ୍ଦରରୁ ଯିବା ଆସିବା ନୌକାମାନଙ୍କରୁ ଏମାନେ ପଣ୍ୟଦ୍ରବ୍ୟର ଭରଣ-ସାରଣ କରିବା ସଙ୍ଗେ ସଙ୍ଗେ ରକ୍ଷଣାବେକ୍ଷଣ ମଧ୍ୟ କରୁଥିଲେ । ତେଣୁ ନାବିକ, ବଣିକ ଉଭୟ ସମ୍ପ୍ରଦାୟର ବିଶ୍ୱାସଭାଜନ ଥିଲେ । ତା'ଛଡ଼ା ଆକାଶରେ ନକ୍ଷତ୍ର ଦେଖି ଯାତ୍ରାର ଅନୁକୂଳ, ଦିଗ ନିର୍ଣ୍ଣୟ ଏବଂ ବାଣିଜ୍ୟିକ ଲାଭାଲାଭ ସମ୍ବନ୍ଧୀୟ ବିଷୟରେ ଭବିଷ୍ୟ ସୂଚନା ଦେଉଥିଲେ । ବର୍ତ୍ତମାନ ସେମାନେ ଜ୍ୟୋତିଷୀଭାବେ ଦୟନୀୟ ଜୀବନ ଯାପନ କରୁଥିବା ଦେଖାଯାଏ । ସମ୍ପ୍ରତି ଗଞ୍ଜାମ ଅଞ୍ଚଳରେ ବାସକରି ଆସୁଥିବା 'ବାଉରି' ସମ୍ପ୍ରଦାୟ ସହିତ ଏହାଙ୍କ ସମ୍ପର୍କ ଥିଲା କି ନାହିଁ ଅନୁସନ୍ଧେୟ, ଯେହେତୁ 'ବାଉରି' ଏକ ନିମ୍ନ ଶ୍ରେଣୀର ନାଗରିକ ମଧ୍ୟରେ ଗଣ୍ୟହୋଇଆସୁଛନ୍ତି ।

୯ । **ଭଣ୍ଡାରି**—ଏକ ସୂକ୍ଷ୍ମବୁଦ୍ଧିସମ୍ପନ୍ନ ଚତୁର ସମ୍ପ୍ରଦାୟ । ଆନ୍ଧ୍ର କାଳିଙ୍ଗୀ ଭାଷାରେ ଏମାନେ 'ମଙ୍ଗଲି' ନାମରେ ଅଭିହିତ । ସାମାଜିକ ଶୁଭ କର୍ମରେ ଏହାଙ୍କ ଭୂମିକା ଏକାନ୍ତ ଅପରିହାର୍ଯ୍ୟ । ବିବାହ, ଜାତକର୍ମ, ରଜସ୍ୱଳା ବିଧାନ, ପଂଚପର୍ବାଣି ବହୁକାର୍ଯ୍ୟ ଏମାନଙ୍କ ବିନା ସମ୍ପାଦିତ ହୋଇପାରେ ନାହିଁ । ଏହାଙ୍କ କୁଳବୃତ୍ତି କ୍ଷୌରକର୍ମ । ପ୍ରତି ଗ୍ରାମରେ ଏ ସମ୍ପ୍ରଦାୟର ଲୋକ ରହିଆସୁଥିଲେ । 'ବାରିକ' ନାମରେ ବି ଏମାନେ ପରିଚିତ ଥିଲେ । ବୋଧହୁଏ 'ବାର' ଅନୁଯାୟୀ କ୍ଷୌରକର୍ମ ବିଧି ଚଳାଇଥିବା ହେତୁ 'ବାରିକ' କୁହାଯାଉଥିଲା । ଉତ୍ସବ କାଳରେ ଦିହୁଡ଼ି ଧରିବା, ଦିଅଁଙ୍କ ଲାଗି ଛତ୍ର ଚାମର ଚଳାଇବା, ଶୁଭାଶୁଭ ବାର୍ତ୍ତା ନେଇ ଦେବା ପ୍ରଭୃତି କାର୍ଯ୍ୟ ଏମାନଙ୍କ ଅଧିକାରଭୁକ୍ତ ଥିଲା । କୁତ୍ରାପି ଏ ଜାତି ଦଳବଦ୍ଧ ଭାବେ ଅବସ୍ଥାନ କରୁନଥିଲେ ସୁଦ୍ଧା କଳିଙ୍ଗର ଗ୍ରାମ ସମୂହରେ ସର୍ବତ୍ର ଏହାଙ୍କ ଅବସ୍ଥିତି ପରିଲକ୍ଷିତ ହୁଏ । ଏ କୁଳର ସାମାଜିକ ପ୍ରତିଷ୍ଠା ନଗଣ୍ୟ ନଥିଲା ।

୧୦ । **ଗଉଡ଼**—ସମାଜ ପ୍ରତି ଏ ଜାତିର ଅବଦାନ ବିଶେଷ ଲକ୍ଷଣୀୟ । ଗୋପାଳନ ଏହାଙ୍କ କୁଳବୃତ୍ତି । ଗବାଦି ଗୃହପାଳିତ ପଶୁଙ୍କ ରକ୍ଷଣାବେକ୍ଷଣ, ଦୁଗ୍ଧ ଓ ଦୁଗ୍ଧଜାତ ଦ୍ରବ୍ୟର କ୍ରୟ ବିକ୍ରୟ, ଗୋ-ସମ୍ପଦର ସମ୍ୟକ୍ ଅବଧାରଣା, ପଶୁଚିକିତ୍ସା, ଚେରମୂଳାଦି ଔଷଧ ପ୍ରୟୋଗରେ ଅତୀବ ପାରଙ୍ଗମ ଥିଲେ । ଗୋଗୋଷ୍ଠ ସହିତ ଗ୍ରାମୋପାନ୍ତ ତୃଣବହୁଳ ଓ ଲତାସଙ୍କୁଳ ସ୍ଥାନରେ ରହି ଗ୍ରାମ୍ୟ ସମସ୍ୟା ପ୍ରତି ଉଦାସୀନ ଥିବା ହେତୁ ସମାଜରେ

ନିର୍ବୋଧ ଓ ନିଷ୍କପଟ ବ୍ୟକ୍ତି ରୂପେ ଗଣ୍ୟହେଉଥିଲେ । ତଥାପି ଏହାଙ୍କ ପ୍ରତିଷ୍ଠା କମ୍ ନ ଥିଲା । ସମସ୍ତେ ସେମାନଙ୍କୁ ଆଦର କରୁଥିଲେ । ଘୃତ, କ୍ଷୀରାଦି ସ୍ୱାସ୍ଥ୍ୟକର ପଦାର୍ଥ ଦ୍ୱାରା ସମାଜକୁ ସବଳ ଓ ସୁନ୍ଦର କରି ଗଢ଼ିବାରେ ଏହାଙ୍କ ଅବଦାନ ଅନସ୍ୱୀକାର୍ଯ୍ୟ ।

୧୧ । କେଉଟ—ଏହା 'ନାଉରିଆ' ଶବ୍ଦର ପରିବର୍ତ୍ତିତ ରୂପ । ଏମାନେ ହେଲେ ସାମୁଦ୍ରିକ ଗୋଷ୍ଠୀ । ନୌଚାଳନା ଏହାଙ୍କ କୁଳବୃତ୍ତି । ନିର୍ଭୀକ ଭାବେ ଗଭୀର ସାଗର ମଧ୍ୟରେ ଡଙ୍ଗା ବାହି ଯେପରି ମତ୍ସ୍ୟ ଶିକାର କରୁଥିଲେ ସେହିପରି ଦୃଢ଼ ସାହସର ସହିତ ବୃହତ୍ ପୋତମାନ ଚାଳନା କରି ଦୂରଦୂରାନ୍ତସ୍ଥିତ ଅଜ୍ଞାତ ଦ୍ୱୀପପୁଞ୍ଜ ସହିତ ସମ୍ପର୍କ ସ୍ଥାପନ କରିଥିଲେ । ସେକାଳ ଯୁଗରେ ନାବିକଭାବେ ଏମାନଙ୍କ ସମକକ୍ଷ କେହି ଥିଲା ପରି ଲାଗେ ନାହିଁ । ଧନୀ ବ୍ୟବସାୟୀ ଓ ସୌଦାଗରଙ୍କୁ ନୌକାଯୋଗେ ବିଦେଶକୁ ନେଇ ବାଣିଜ୍ୟ ଚଳାଇବା କାର୍ଯ୍ୟରେ ଏମାନଙ୍କ ସାହାଯ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା । ନାଉରିଆମାନେ ଥିଲେ ସାଧବ ଓ ବଣିକଙ୍କ ପ୍ରଧାନ ସହଯୋଗୀ । କଳିଙ୍ଗର ବହିର୍ବାଣିଜ୍ୟର ନିରବଚ୍ଛିନ୍ନ ସମ୍ପ୍ରସାରଣ ଏହାଙ୍କ ଯୋଗୁ ହିଁ ସମ୍ଭବ ହୋଇପାରିଥିଲା । ବର୍ତ୍ତମାନ ଏ ଅଭିଶପ୍ତ ଜାତି ଓଡ଼ିଶାର ସମୁଦ୍ର ବେଳାଭୂମିମାନଙ୍କରେ ଦାରିଦ୍ର୍ୟମୟ ଜୀବନ ଅତିବାହିତ କରୁଥିବା ଦୃଷ୍ଟିଗୋଚର ହୁଏ ।

୧୨ । ମାଳି—ସାଂସ୍କୃତିକ କ୍ଷେତ୍ରରେ ଏ ଜାତିର ପ୍ରମୁଖ ଭୂମିକା ରହିଥିଲା । କୁଳବୃତ୍ତି ଫୁଲମାଳ ଗୁନ୍ଥିବା ଓ ଦେବଙ୍କ ସେବା କରିବା । ଉଭୟ କର୍ମ ଧର୍ମ ସମ୍ବନ୍ଧ ଥିବାହେତୁ ସମାଜରେ ଆଦୃତ ହୋଇ ଆସୁଥିଲେ । ପ୍ରଥମଟି ସ୍ତ୍ରୀ ଓ ଦ୍ୱିତୀୟଟି ପୁରୁଷ ବ୍ୟକ୍ତିଙ୍କ ଦ୍ୱାରା ସମ୍ପାଦିତ ହେଉଥିଲା । ଫୁଲ ଥିଲା ଧନୀ ଦରିଦ୍ର ନିର୍ବିଶେଷରେ ସବୁଶ୍ରେଣୀର ଆଦରଣୀୟ ବସ୍ତୁ । କଳିଙ୍ଗରେ କେତେ ରକମ ସୁବାସିତ ପୁଷ୍ପର ପ୍ରଚଳନ ରହିଥିଲା ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ବଗିଚାମାନଙ୍କରେ ଏମାନେ ନାନାରକମର ଫୁଲଗଛ ଲଗାଇ ଗ୍ରାମ ଦେବତା ଓ ଜନସମାଜର ଚାହିଦା ପୂରଣ କରୁଥିଲେ । ମାଲୁଣୀ ଥିଲା ଜନସମାଜର ପ୍ରିୟପାତ୍ର । ତାହାକୁ କେନ୍ଦ୍ରକରି ପରବର୍ତ୍ତୀ କାଳରେ କେତେ ଯେ କମ୍ବଦନ୍ତୀ ସୃଷ୍ଟି ହୋଇଛି ଗଣନା କରିହୁଏନାହିଁ । ଆମୋଦଦାୟକ କୁଳବୃତ୍ତି ଯୋଗୁ ସମସ୍ତଙ୍କ ପ୍ରିୟଭାଜନ ଥିଲେ । ପର୍ବ, ମହୋତ୍ସବ ଓ ଭୋଗବିଳାସ କାଳରେ ଏହାଙ୍କ ଆଦର ବହୁଗୁଣ ବୃଦ୍ଧି ପାଉଥିଲା । ଆଜିକାଲି ଏ କୁଳର ଅସ୍ତିତ୍ୱ କ୍ୱଚିତ୍ ଦେଖିବାକୁ ମିଳେ ।

୧୩ । ପାନ୍ତିଆ—କୁଳବୃତ୍ତି ପାନ । ପ୍ରଚୁର ପାନ ଉତ୍ପାଦନ କରି ଦେଶ ବିଦେଶକୁ ପଠାଇବାଦ୍ୱାରା ସୁନାମ ଅର୍ଜନ କରିଥିଲେ । କଳିଙ୍ଗର ବେଳାଭୂମି ଥିଲା ପାନବରଜ ପାଇଁ ଉପଯୁକ୍ତ କ୍ଷେତ୍ର । ଏହା ଭୋଗ ସାମଗ୍ରୀର ଅନ୍ୟତମ ଅଙ୍ଗ ରୂପେ ବିବେଚିତ ହେବା ସଙ୍ଗେ ସ୍ୱାସ୍ଥ୍ୟୋପଯୋଗୀ ଔଷଧରୂପେ ମଧ୍ୟ ବ୍ୟବହାର ହୋଇଆସୁଥିଲା । କଳିଙ୍ଗର ଏ ପାନପତ୍ର ପ୍ରଶସ୍ତି ଇତିହାସରେ ବହୁତ୍ର ଲିପିବଦ୍ଧ । ପଣ୍ୟବସ୍ତୁ ହେତୁ ବିଦେଶୀ ଦ୍ରବ୍ୟ ଆମଦାନୀ କରିବାରେ ତାହା ସହାୟକଥିଲା । ଏ ଜାତିର ଲୋକସଂଖ୍ୟା ବର୍ତ୍ତମାନ ଲୁପ୍ତପ୍ରାୟ ।

୧୪ । **ପନ୍ଦରା**—କୁଳବୃତ୍ତି 'ପନ୍ଦ' । ପନ୍ଦର ଅର୍ଥ 'ବାଡ଼-ବଗିଚ୍ଚ' । ଖାଦ୍ୟୋପଯୋଗୀ ବିଭିନ୍ନ ପ୍ରକାର ଶାଗ, ପନିପରିବା, ଫଳ ମୂଳ ଉତ୍ପାଦନ କରି ଏମାନେ ସମାଜର ଆବଶ୍ୟକତା ମେଣ୍ଟାଉଥିଲେ । ଇତର ଗୋଷ୍ଠୀ ଦେଶର ଧନ ମାନ ଅଭିବୃଦ୍ଧିରେ ନିୟୋଜିତ ଥିଲାବେଳେ ପ୍ରାଣଧାରଣୋପଯୋଗୀ ଭୋଜ୍ୟ ସାମଗ୍ରୀର ଉତ୍ପାଦନରୂପୀୟ ଗୁରୁ ଦାୟିତ୍ୱ ଏହାଙ୍କ ଉପରେ ନ୍ୟସ୍ତ ଥିଲା । ତେଣୁ ଲୋକସମାଜରେ ବିଶେଷ ସମାଦୃତ ହେଉଥିଲେ । ଏହାଙ୍କ କୁଳମର୍ଯ୍ୟାଦା ନ୍ୟୂନ ନଥିଲା । ବର୍ତ୍ତମାନ କାଳରେ ଏହାଙ୍କ ସଂଖ୍ୟା ବିଶେଷ ନଗଣ୍ୟ ନୁହେଁ । ବିଭିନ୍ନ ସ୍ଥାନରେ ଏମାନେ ବିଭିନ୍ନ ନାମରେ ବାସକରି ଆସୁଥିବା ଦେଖାଯାଏ ।

୧୫ । **ଲୁହୁରା**—ଏହା ଥିଲା ସମାଜର ଏକ ଅତ୍ୟାବଶ୍ୟକ ସଂପ୍ରଦାୟ । ଏହାଙ୍କ କୁଳବୃତ୍ତି ଲୌହ ବ୍ୟବସାୟ । ରନ୍ଧନପାତ୍ରରୁ ଲୁହାକଣ୍ଟା ପର୍ଯ୍ୟନ୍ତ ଏବଂ ଖଣ୍ଡା, ବର୍ଚ୍ଛା, ସାଙ୍ଗୁ, ଶରମୂନରୁ ଲଙ୍ଗଳ, ସିଅ, କାତ, ଲୁଣ ପ୍ରଭୃତି ଯୁଦ୍ଧ ଓ କୃଷି ଉଭୟ କ୍ଷେତ୍ରୋପଯୋଗୀ ପଦାର୍ଥ ପ୍ରସ୍ତୁତ କରିବାରେ ଏମାନଙ୍କ ଦକ୍ଷତା ଥିଲା । ଲୁହା ଛଡ଼ା ଅନ୍ୟାନ୍ୟ କଠିନ ଧାତୁ ତରଲାଇ ପ୍ରୟୋଜନୀୟ ବସ୍ତୁ ନିର୍ମାଣ କରିବାରେ ମଧ୍ୟ ସେମାନେ ଅଜ୍ଞ ନଥିଲେ । ସେତିକି ନୁହେଁ, କ୍ଷୁଦ୍ର ନୌକା ଓ ବୃହଦାକାର ପୋତ ପ୍ରସ୍ତୁତ କାର୍ଯ୍ୟରେ ସେମାନଙ୍କ ପ୍ରତିଭା ଅନନ୍ୟସାଧାରଣ । ସୁତରାଂ ନୌବାଣିଜ୍ୟ କ୍ଷେତ୍ରରେ ଏହାଙ୍କ ସହାୟତା ଅପରିହାର୍ଯ୍ୟ ଥିଲା । ଏମାନଙ୍କ ବିନା ବସବାସ ଗୃହ, ଅଟ୍ଟାଳିକା, ଦୁର୍ଗ, ପ୍ରାଚୀରାଦି ଗଠନ ସମ୍ଭବ ହୋଇପାରୁନଥିଲା । ବର୍ତ୍ତମାନ ଓଡ଼ିଶାରେ ସର୍ବତ୍ର ଏ ପାଇକ କୁଳର ସତ୍ତା ଦେଖିବାକୁ ମିଳେ; ଯଦିଚ ଏମାନେ କମାର, ଲୁହୁରା, ଅଷ୍ଟଲୋହ ଆଦି ବିଭିନ୍ନ ନାମରେ ପରିଚିତ ।

୧୬ । **କୁମ୍ଭାର**—ଏ ଏକ ପୁରାତନ ସଂପ୍ରଦାୟ । ମାଟିରେ ବିଭିନ୍ନ ପ୍ରକାର ବସ୍ତୁ ନିର୍ମାଣ କୁଳବୃତ୍ତି । ପାର୍ବତ୍ୟ ସମାଜରୁ ସ୍ଥଳବାସୀ ପର୍ଯ୍ୟନ୍ତ ସବୁ ଶ୍ରେଣୀର ପ୍ରୟୋଜନୀୟ ରନ୍ଧନପାତ୍ର, ହାଣ୍ଡି, ମାଠିଆ, ସରା, ଆଟିକା, ଦୀପାଳି ପ୍ରଭୃତି ଏହାଙ୍କ ଦ୍ୱାରା ପ୍ରସ୍ତୁତ କରାଯାଉଥିଲା । ପର୍ବ, ପର୍ବାଣି, ଉତ୍ସବ, ବିବାହ, ଶୁଭକର୍ମ, ଅଶୁଭକର୍ମ ସବୁରେ ଥିଲା ଏହାର ଆବଶ୍ୟକତା । ତେଣୁ ଏ ଶ୍ରେଣୀ ପ୍ରତି ଜନସାଧାରଣର ଅନୁରକ୍ତ ରହିବା ସ୍ୱାଭାବିକ । ଏବେ ସୁଦ୍ଧା କଳିଙ୍ଗରେ ଏ କୁଳର ଅସ୍ତିତ୍ୱ ସର୍ବତ୍ର ଦେଖିବାକୁ ମିଳେ ।

୧୭ । **ପାଟରା**—ପାଟ କୋଷାରୁ ସୂତା ବାହାରକରି ବସ୍ତ୍ର ବୁଣିବା ଏହାଙ୍କ କୁଳବୃତ୍ତି । ବଣ ଭିତରୁ ପାଟକୋଷା ଖୋଜି ଆଣିବା ଏବଂ ତାକୁ ସୂକ୍ଷ୍ମ ସୂତ୍ରରେ ପରିଣତ କରିବା ସହଜକାର୍ଯ୍ୟ ନୁହେଁ । ତଥାପି ତାଦୃଶ ସୁକୁମାର ତନ୍ତୁରେ ଚମତ୍କାର ଉତ୍ତରୀୟାଦି ନିର୍ମାଣ କରି ସ୍ୱଦେଶ ଓ ବିଦେଶରେ ଖ୍ୟାତି ଅର୍ଜନ କରିଥିଲେ । କଳିଙ୍ଗର ପଟ୍ଟବସ୍ତ୍ର ଦ୍ୱୀପ ଦ୍ୱୀପାନ୍ତରରେ ପ୍ରସାର ଲାଭ କରି ଏତେ ଲୋକପ୍ରିୟ ହୋଇପଡ଼ିଥିଲା ଯେ ତାହା କଳିଙ୍ଗର ପର୍ଯ୍ୟାୟବାଚୀ ଶବ୍ଦ ରୂପେ ବ୍ୟବହୃତ ହୋଇଆସିଥିଲା, ଅର୍ଥାତ୍ 'କଳିଙ୍ଗ'ର ଅର୍ଥ 'ଲୁଗା' ।

ଉତ୍ପାଦିତ ବସ୍ତ୍ର ନାମରେ ଦେଶ ନାମିତ ହୋଇଥିବାରୁ ଏହାର ଉତ୍କୃଷ୍ଟତା ଓ ଜନପ୍ରିୟତା ସହଜେ ଅନୁମେୟ । ସ୍ତ୍ରୀ-ପୁରୁଷ ଉଭୟେ ସମାଜର ଚିତ୍ତାକର୍ଷକ ବନବନକାର ବସ୍ତ୍ର ବାଣିଜ୍ୟରେ ମୂଲ୍ୟବାନ୍ ମଣିମୁକ୍ତାଦି ସଂଗ୍ରହ କରି ଦେଶକୁ ସମୃଦ୍ଧିଶାଳୀ କରିଥିଲେ । କଳିଙ୍ଗର ପଟ୍ଟବସ୍ତ୍ର ଏ ଯାଏଁ ବିଶ୍ୱପ୍ରସିଦ୍ଧ ହେବାର ମୂଳରେ ଥିଲା ପାଟ୍ଟରିକୁଳ । ଏବେ କିନ୍ତୁ ଏମାନେ ଡେରା, ରଙ୍ଗୁଣି, କୁଳି ଆଦି ଉପଶାଖାରେ ବିଭକ୍ତ ହୋଇ ସ୍ୱତନ୍ତ୍ର ଜାତି ବୋଲି ପରିଚୟ ଦିଅନ୍ତି । କିନ୍ତୁ ମୂଳତଃ ସମସ୍ତେ ଥିଲେ 'ପାଟ୍ଟରି' କୁଳର । ସେକାଳ ସମାଜରେ ଏହା ଉଚ୍ଚତର ଆସନର ଅଧିକାରୀ ଥିଲା । ସଂଖ୍ୟାରେ ଅଳ୍ପ ହେଲେ ସୁଦ୍ଧା ସେ ଜାତିର ପ୍ରତିପତ୍ତି ଏବଯାଏଁ ଅକ୍ଷୁଣ୍ଣ ଥିବା ଦେଖାଯାଏ ।

୧୮ । **କେଉଟ**—ଏହା ଏକ ମତ୍ସ୍ୟଜୀବୀ କୁଳ । କ୍ଷୁଦ୍ର ଡଙ୍ଗା ସାହାଯ୍ୟରେ ନଦୀ, ପୋଖରୀ, ସମୁଦ୍ରରୁ ଲଇ, ଜାଲ, ସୂତା, ବାଉଁଶ ତିଆରି ବେନ୍ଦା, ବନଶୀ ଦ୍ୱାରା ମାଛ ଧରିବାରେ ଏମାନେ ପାରଙ୍ଗମ । ନରନାରୀଙ୍କ ଉତ୍ତମ ସ୍ୱାସ୍ଥ୍ୟ ରକ୍ଷା ପାଇଁ ମାଛ ଏକ ପୁଷ୍ଟିକର ଖାଦ୍ୟ ଥିବାରୁ ଏହାଙ୍କ କୁଳବୃତ୍ତି ନ୍ୟୂନ ବିବେଚିତ ହେଉନଥିଲା । ବିଳି ଖେଳିରେ ସକାଶେ ଜୀଅନ୍ତା ମାଛ, ଦେବସ୍ଥାନକୁ ପରିଷ୍କାର ରଖିବା, ଦିଅଁଙ୍କ ଗୃହପଟେ ଲଇ-ବାଉଁଶ ବାଡ଼ ବେଢ଼ିବା ଦାୟିତ୍ୱ ମଧ୍ୟ ତାଙ୍କ ଉପରେ ନ୍ୟସ୍ତ ଥିଲା । ତାହା ଥିଲା ଏକ ଶୃଙ୍ଖଳିତ ଗୋଷ୍ଠୀ । ଆଭ୍ୟନ୍ତରୀଣ ଶୃଙ୍ଖଳା ତାହାର ସ୍ୱଭାବଜ ଗୁଣ । ବିଲକ୍ଷଣ ଦେଶପ୍ରୀତି ହେତୁ ସମାଜର ଅତି ଶ୍ରଦ୍ଧାର ପାତ୍ର ଥିଲେ । ବିଶେଷତଃ ଦେଶବାସୀଙ୍କ ଐକ୍ୟ ସଂପାଦନରେ ଏହାଙ୍କ ଉଲ୍ଲେଖନୀୟ ଭୂମିକା ରହିଆସିଥିଲା ।

୧୯ । **ପାଲଆ**—କୁଳବୃତ୍ତି 'ପାଲ' ଟାଣିବା । ନାନା କିସମର ପାଲ ତିଆରି କରି ନୌକାରେ ଖଞ୍ଜିବା, ସମୁଦ୍ର ମଧ୍ୟରେ ନୌକାର ଗତି ନିୟନ୍ତ୍ରଣ କରିବା, ପ୍ରୟୋଜନ ଅନୁଯାୟୀ ପାଲ ପରିବର୍ତ୍ତନ କରିବା, ପଣ୍ୟବସ୍ତୁ ଭାବେ 'ପାଲ' ବିଦେଶକୁ ପଠାଇବା ପ୍ରଭୃତି କାର୍ଯ୍ୟ ସଂପାଦନ କରୁଥିଲେ । ଜଳଯାତ୍ରା କାଳରେ ସେମାନେ ଥିଲେ ନାବିକଙ୍କ ମୁଖ୍ୟ ସହଯୋଗୀ । ନୌବାଣିଜ୍ୟ କାରବାରରେ ଏମାନଙ୍କ ଅବଦାନ ସର୍ବସ୍ୱୀକୃତ । ଏ ଗୋଷ୍ଠୀ ବର୍ତ୍ତମାନ ଲୁପ୍ତପ୍ରାୟ ଯଦିଚ ଏହାଙ୍କ ସଂଖ୍ୟା ସେ କାଳରେ ନଗଣ୍ୟ ନଥିଲା । କୁଳ ବ୍ୟବସାୟ ନୌବାଣିଜ୍ୟ ଭିତ୍ତିକ ଥିବାରୁ ନୌବାଣିଜ୍ୟ ସହିତ ସେ ଜାତିର ପତନ ଅବଶ୍ୟମ୍ଭାବୀ ହୋଇପଡ଼ିଲା । କର୍ପୂର ଗଲା କନା ରହିଗଲା ।

୨୦ । **କଂସାରି**—ପାଟକ କୁଳ ମଧ୍ୟରେ ଅପେକ୍ଷାକୃତ ଅର୍ବାଚୀନ ସଂପ୍ରଦାୟ । କୁଳବୃତ୍ତି କଂସାପିତଳରେ ବାସନକୁସନ ନିର୍ମାଣ । ଲୌହ-ତାମ୍ର ଯୁଗ ପରକାଳରେ ବୋଧହୁଏ ଏହାର ଉଦ୍ଭବ ଘଟିଛି । ସଂଗଠିତସଂପନ୍ନ ତଥା ଧନିକ ଶ୍ରେଣୀର ବ୍ୟବହାର ଉପଯୋଗୀ ଦୀର୍ଘକାଳସ୍ଥାୟୀ କାଂସ୍ୟପାତ୍ରାଦି ବସ୍ତୁମାନ ନିର୍ମାଣ କରି ଦେଶ ବିଦେଶକୁ ପ୍ରେରଣ କରିଥିଲେ । ବାଣିଜ୍ୟରେ ସେଠାରୁ ଆବଶ୍ୟକ ପଦାର୍ଥ ଆଣିବା ଦୃଷ୍ଟାନ୍ତ ମଧ୍ୟ ନ ରହିଛି ନୁହେଁ । ଉତ୍ତମ ଧାତୁ ପଦାର୍ଥ ବ୍ୟବହାରୀ ଭାବେ ଏମାନଙ୍କ ସ୍ଥାନ ଥିଲା ସମାଜର

ଧନିକ ଶ୍ରେଣୀରେ । ସମଗ୍ର କଳିଙ୍ଗରେ ଏମାନେ ବିସ୍ତୃତହୋଇ ରହିଥିଲେ । ଅଦ୍ୟାପି କଳିଙ୍ଗର କଂସାପିତଳ ବାସନ ଲୋକପ୍ରସିଦ୍ଧ । ନ୍ୟୂନ ସଂଖ୍ୟକ ହେଲେ ସୁଦ୍ଧା ଏହାଙ୍କ ସାମାଜିକ ପ୍ରତିପତ୍ତି ନଗଣ୍ୟ ନଥିଲା । ଧାତୁ ଶିଳ୍ପୀ ଭାବେ ଦେଶର ଖ୍ୟାତିବର୍ଦ୍ଧନ କରିବାରେ ଏମାନଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ ।

୨୧ । **କାଳ**—କୁଳବୃତ୍ତି ଦିଅଁ ପୂଜା । ପାର୍ବତ୍ୟ ଓ ଆରଣ୍ୟକ ସମାଜରେ ଏହାଙ୍କ ସ୍ଥାନ ଅତି ମହତ୍ତ୍ୱପୂର୍ଣ୍ଣ । ଏମାନେ 'ଦିଶାରି' ନାମରେ ମଧ୍ୟ ପରିଚିତ । ଦେବତାଙ୍କ ପୂଜାର୍ଚ୍ଚନା ପର୍ବପର୍ବାଣିରେ ହୋଳସା, ସିନ୍ଦୂର, ଫୁଲଲାଗି କରାଇବା, ଭୋଗବୈରାଗରେ ଦେବତାଙ୍କୁ ପ୍ରସନ୍ନ କରାଇବା ଏମାନଙ୍କ ଅଧିକାରଭୁକ୍ତ ଥିଲା । ତତ୍କାଳ ଲୋକସମାଜରେ ଏମାନେ ଦେବତାଙ୍କ ପ୍ରତିନିଧି ବୋଲି ବିବେଚିତ ହେଉଥିଲେ । ଏହାଙ୍କୁ ଛାଡ଼ି କୌଣସି ଯାତ୍ରାପର୍ବ ଅନୁଷ୍ଠିତ ହୋଇପାରୁ ନଥିଲା । 'ଯାତ୍ରା' ସହିତ 'ଯାନି'ର ଅବିଚ୍ଛେଦ୍ୟ ସଂପର୍କ ଥିବାଯୋଗୁଁ ଏବେ ସୁଦ୍ଧା 'ଯାନିଯାତ୍ରା'ରୂପେ ପ୍ରଚଳନ ରହିଆସିଛି । ସମାଜରେ ଏମାନେ ଏକାଧାରରେ ଭୟ ଓ ଭକ୍ତିର ପାତ୍ରଥିଲେ । ପରବର୍ତ୍ତୀ କାଳରେ ସମତଳ ସମାଜରେ ପୂଜାରୀ ଓ ରାଉଳ ନାମରେ ଦୁଇଟି ପୂଜକ ଗୋଷ୍ଠୀର ଉଦ୍‌ଭବ ଘଟିଥିଲେ ସୁଦ୍ଧା ପାର୍ବତ୍ୟ ଓ ଆରଣ୍ୟକ ଅଞ୍ଚଳରେ ଏମାନଙ୍କ ପୂର୍ବପ୍ରତିପତ୍ତି ଅଦ୍ୟାପି ବିଦ୍ୟମାନ । ସରଳ ବିଶ୍ୱାସୀ ନିରୀହ ଜନସାଧାରଣ ଏମାନଙ୍କ ଇଙ୍ଗିତରେ ପରିଚାଳିତ ହେଉଥିବା ଦୃଷ୍ଟ ହୁଏ ।

୨୨ । **ଧୋବା**—ଲୁଗା ପରିଷ୍କାର କରିବା ଏହାଙ୍କ କୁଳବୃତ୍ତି । ଗ୍ରାମବାସୀଙ୍କ 'କରିଆ' ଠାରୁ ଦିଅଁ ଲାଗି ଲୁଗାପର୍ଯ୍ୟନ୍ତ ସବୁ ଏହାଙ୍କଦ୍ୱାରା ପରିଷ୍କୃତ ହୁଏ । ଅଶୁଦ୍ଧ ବସ୍ତ୍ର ଏହାଙ୍କ ସ୍ପର୍ଶରେ ଶୁଦ୍ଧ ହୋଇପଡ଼େ । ଏହା ଥିଲା ଏକ ପବିତ୍ର କୁଳ । ଏମାନଙ୍କ ଦ୍ୱାରା ଛେଦିତ କାଷ୍ଠ ପବିତ୍ର ବିବେଚିତହୋଇ ଶବଦାହ କର୍ମ ସଂପାଦିତ ହେଉଥିଲା । ସେହି କାରଣରୁ ଉତ୍ତର କାଳରେ ସେମାନଙ୍କ ନାଁ ହେଲା 'ଶ୍ରେଣି' ବା 'ସେଠି'; ଏବେ ବି ସେ ଶବ୍ଦର ସଂପୂର୍ଣ୍ଣ ଲୋପ ଘଟିନାହିଁ । ଏହାଛଡ଼ା ସେମାନେ ଦୁର୍ଦ୍ଦମନୀୟ ଓ ସାହସିକ ଜାତିଭାବେ ପରିଚିତଥିଲେ । ଯେତିକ ବିଶ୍ୱାସୀ ସେତିକ ନିଷ୍ଠୁର । ସ୍ୱଳ୍ପ ସଂଖ୍ୟକ ହେଲେ ସୁଦ୍ଧା ପ୍ରତି ଗ୍ରାମରେ ଅବସ୍ଥିତି ତାଙ୍କର । ଯୁଦ୍ଧଭୂମିରେ ଏମାନେ ବିକ୍ରମ ପ୍ରଦର୍ଶନ କରିବାରେ ଖଣ୍ଡାଏତଙ୍କ ସମକକ୍ଷ ଥିଲେ ।

୨୩ । **ବଢ଼େଇ**—କୁଳବୃତ୍ତି କାଠକାମ । ବିଭିନ୍ନ ଜାତିର କାଠ ଚିହ୍ନି ଉପକରଣ ପ୍ରସ୍ତୁତ କରିବା ମୁଖ୍ୟକର୍ମ । ଦୁଆର କବାଟ, ଏରୁଣ୍ଡିଠାରୁ କଡ଼ି ବରଗାଯାଏଁ ଏବଂ କ୍ଷୁଦ୍ର ହାତ ବାକ୍‌ସରୁ ବୃହଦାକାର ପେଟିକା ପର୍ଯ୍ୟନ୍ତ ବସ୍ତୁ ନିର୍ମାଣ କରିବାରେ ଅତ୍ୟନ୍ତ କୁଶଳୀ । ତା'ଛଡ଼ା ନାବୋପଯୋଗୀ ଉପଯୁକ୍ତ କାଷ୍ଠ ନିର୍ବାଚନ, ବୃହତ୍‌କାଷ୍ଠ ପୋତ ନିର୍ମାଣ, ବିଚିତ୍ର କାରୁକଳା ମଣ୍ଡିତ କାଷ୍ଠଗୃହ ପ୍ରସ୍ତୁତକରି ନାବିକ କୁଳର ଯେପରି ଶ୍ରଦ୍ଧାଭାଜନ ସେହିପରି ଲଙ୍ଗଳ, ଜୁଆଳି, ଶକଟାଦି କୃଷି ଉପକରଣଦ୍ୱାରା କୃଷକ ସମାଜର ପ୍ରିୟପାତ୍ର ଥିଲେ । ଦୁର୍ଗ, ପ୍ରାଚୀର, ପ୍ରାସାଦ ସମେତ ଯୁଦ୍ଧୋପକରଣାଦି ନିର୍ମାଣ କାର୍ଯ୍ୟରେ ଏମାନଙ୍କ ଅବଦାନ କମ୍ ନଥିଲା । ଏ ଜାତି ଯେପରି ଚତୁର ସେହିପରି ସୁଭଗମ୍ମନ୍ୟ । ଦ୍ୱୀପଦ୍ୱୀପାନ୍ତର ଯାଇ

ଏମାନେ କଳିଙ୍ଗର ଶୈଳ୍ପିକ ପରାକାଷ୍ଠା ପ୍ରଦର୍ଶନ କରିଥିଲେବୋଲି ଐତିହାସିକମାନେ କହନ୍ତି । ବର୍ତ୍ତମାନ ସମାଜରେ ମଧ୍ୟ ଏହାଙ୍କ ପୂର୍ବ ପ୍ରତିପତ୍ତି ଅକ୍ଷତ ରହିଥିବା ଦେଖାଯାଏ ।

**୨୪ । ବଳୁଆ**—ଖଣ୍ଡାଏତଙ୍କ ତୁଲ୍ୟ ଏକ ଦୁର୍ଦ୍ଧର୍ଷ ଜାତି । କୁଳବୃତ୍ତି ଦେଶରକ୍ଷା । ଶତ୍ରୁ ଆକ୍ରମଣର ସମ୍ମୁଖୀନ ହେବାକୁ ଦଳବଦ୍ଧଭାବେ ସର୍ବଦା ଜାଗ୍ରତ ଥାଆନ୍ତି ଏମାନେ । ଶାରୀରିକ ବ୍ୟାୟାମ, ଯୁଦ୍ଧକୌଶଳ, ଶସ୍ତ୍ରାସ୍ତ୍ର ପରିଚାଳନା, ସେନା ନିୟନ୍ତ୍ରଣ ପ୍ରଭୃତି ଥିଲା ଏମାନଙ୍କ ପ୍ରଧାନ କର୍ତ୍ତବ୍ୟ । ସମର କ୍ଷେତ୍ରରେ ପାଇକ ଓ ଖଣ୍ଡାଏତଙ୍କ ସହିତ ଅଗ୍ରଗାମୀ ଦଳରେ ରହି ଶତ୍ରୁସେନା ମନରେ ଆକସ୍ମିକ ଭୀତି ଉତ୍ପାଦନ କରୁଥିଲେ । ଦକ୍ଷିଣ-ଓଡ଼ିଶାର ନିର୍ଦ୍ଦିଷ୍ଟ କେତୋଟି ଅଞ୍ଚଳ ଛାଡ଼ିଦେଲେ ଅନ୍ୟତ୍ର ଏହାଙ୍କ ସତ୍ତା ପରିଲକ୍ଷିତ ହୁଏ ନାହିଁ । ଦଳବଦ୍ଧଭାବେ ଶତ୍ରୁ ଉପରେ ଝାମ୍ପି ପଡ଼ିବାରେ ଏମାନେ ଥିଲେ ଅନନ୍ୟସାଧାରଣ । କଳିଙ୍ଗର ସାମରିକ ବାହିନୀରେ ଏମାନଙ୍କ ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା ।

**୨୫ । ସାଧୁ ବା ସାଧବ**—ଏ କୁଳ ଥିଲା କଳିଙ୍ଗର ମେରୁଦଣ୍ଡ । ଏହାଙ୍କ କୁଳବୃତ୍ତି ବାଣିଜ୍ୟ । ଏମାନଙ୍କୁ 'ସାଧୁ' ଓ 'ସାଧବ' ଉଭୟ କୁହାଯାଉଥିଲା । ବାଣିଜ୍ୟ ପୋତ ସାହାଯ୍ୟରେ ସ୍ୱଦେଶୀ ପଣ୍ୟଦ୍ରବ୍ୟ ନେଇ ଦ୍ୱୀପଦ୍ୱୀପାନ୍ତରରୁ ମୂଲ୍ୟବାନ୍ ଧନ, ରତ୍ନ, ମଣି, ମୁକ୍ତାଦି ସଂଗ୍ରହ କରି ଆଣୁଥିଲେ । ଦେଶବିଦେଶରେ ସ୍ଥାୟୀ ଓ ଅସ୍ଥାୟୀଭାବେ ବସବାସ କରି ଦୁର୍ଲଭ ପଦାର୍ଥମାନ ସ୍ୱଦେଶକୁ ପ୍ରେରଣ କରୁଥିଲେ । ବୃହଦାକାର ବୋଇତ ଓ ବାଣିଜ୍ୟ ପୋତମାନ ଏମାନଙ୍କ ଅଧୀନରେ ରହିଥିଲା । କେବଳ ନୁହେଁ ବଣିକ ବା ବଢ଼େଇ, ଚିତ୍ରକର, ପଥୁରିଆଆଦିଙ୍କୁ ସ୍ୱଦେଶରୁ ନେଇ ବିଦେଶରେ କାଳିଙ୍ଗୀ ଶିଳ୍ପ ଓ କଳାଭାସ୍କର୍ଯ୍ୟର ଅପୂର୍ବ ନିଦର୍ଶନ ରଖିଥିଲେ । ବହୁମୂଲ୍ୟ ମଣିମାଣିକ୍ୟାଦି ନିଜସ୍ୱ ବିନିମୟ ଦ୍ୱାରା ସମାଜରେ ଯେପରି ଉଚ୍ଚକୋଟିର ଧନିକ ଶ୍ରେଣୀ ମଧ୍ୟରେ ଗଣ୍ୟ ଥିଲେ ସେହିପରି ଉତ୍ତମ ସାଧୁ ବ୍ୟବସାୟୀ ରୂପେ ବିଶ୍ୱବିଶ୍ରୁତ ହୋଇଥିଲେ । ଏମାନଙ୍କ ଯୋଗୁ କଳିଙ୍ଗ ଧନ, ଧାନ୍ୟ ଐଶ୍ୱର୍ଯ୍ୟରେ ପରିପୂର୍ଣ୍ଣଥିଲା । ଏବେସୁଦ୍ଧା ଏମାନଙ୍କୁ କେନ୍ଦ୍ରକରି ବହୁ ଗାଥା ଓ କିମ୍ବଦନ୍ତୀ ଦେଶରେ ପ୍ରଚଳିତ । ବାସ୍ତବରେ ଏହାଙ୍କ ଯୋଗୁ ହିଁ କଳିଙ୍ଗ ଥିଲା 'ବହୁବସୁପ୍ରସୂ' । ଅବଶ୍ୟ ସାଂପ୍ରତିକ ଯୁଗରେ 'ସାହୁ' ସଂଖ୍ୟାଧାରୀ କେତେଗୋଷ୍ଠୀ 'ସାଧୁ' କୁଳର ଦାୟାଦଭାବେ ଆପଣାର ପରିଚୟ ଦିଅନ୍ତି, କିନ୍ତୁ ସେଥିରେ କେତେଦୂର ସତ୍ୟତା ବିଦ୍ୟମାନ ଅନୁସନ୍ଧାନ ସାପେକ୍ଷ ।

**୨୬ । ମାଟିଆ**—ଏକ ଶ୍ରମିକ ସଂପ୍ରଦାୟ । କୁଳବୃତ୍ତି ମାଟିକାମ । ମାଟି ଖୋଳିବା, ଚକଟିବା, କାନ୍ଥବାଡ଼ ତିଆରି କରିବା, କୂଅ ପୋଖରୀ ଖୋଳିବା, କୁମ୍ଭାରଙ୍କୁ ମାଟି ଯୋଗାଇବା ଥିଲା ତାଙ୍କର ଜୀବିକା । କୁଟୀରଠାରୁ ଦୁର୍ଗ ପର୍ଯ୍ୟନ୍ତ ସମସ୍ତ ନିର୍ମାଣ କାର୍ଯ୍ୟରେ ଏମାନଙ୍କ ସାହାଯ୍ୟ ଅପରିହାର୍ଯ୍ୟ ଥିଲା । ସୁସ୍ଥ ସବଳ ଥିବାହେତୁ ଗ୍ରାମରକ୍ଷୀ ଓ ସ୍ଥଳସେନା ଭାବେ ଏମାନଙ୍କୁ ନିଯୁକ୍ତ ଦିଆଯାଉଥିଲା । ଆଭିଜାତ୍ୟସଂପନ୍ନ ନହେଲେ ସୁଦ୍ଧା କାର୍ଯ୍ୟଶାଳୀ ରୂପେ ସମାଜରେ ଆଦୃତ ହେଉଥିଲେ । ଦକ୍ଷିଣ କଳିଙ୍ଗ ଛଡ଼ା ଅନ୍ୟତ୍ର ଏମାନଙ୍କ ଅସ୍ତିତ୍ୱ

ଦେଖାଯାଏ ନାହିଁ । ମୁଷ୍ଟିମେୟ ହେଲେ ସୁଦ୍ଧା ପ୍ରାକ୍ତନ 'ମାଟିଆ' କୁଳର ଅଭିଶପ୍ତ ଦାୟାଦ ରୂପେ ବର୍ତ୍ତମାନ ଗଞ୍ଜାମର କେତୋଟି ପୁରପଲ୍ଲୀରେ ଏମାନେ ବସବାସ କରି ରହିଥିବା ଦେଖାଯାଏ ।

**୨୭ । ମାହୁନ୍ତିଆ**—ହାତୀକୁ ନିୟନ୍ତ୍ରଣ କରିବା କୁଳବୃତ୍ତି । ଏ ଜାତି ଏକାବେଳକେ ଲୁପ୍ତପ୍ରାୟ । ଏହାଙ୍କ ଜୀବିକା ଥିଲା ବଣରୁ କୌଶଳ ପୂର୍ବକ ହାତୀ ଧରିବା, ପୋଷା ମନେଇବା, ଯଥୋପଯୁକ୍ତ ଆହାର ଯୋଗାଇବା, ତାଲିମ୍ ଦେଇ ଯୁଦ୍ଧସମର୍ଥ କରାଇବା ପ୍ରଭୃତି । ଏମାନଙ୍କ ଦକ୍ଷତାଯୋଗୁ କଳିଙ୍ଗ ଅପରାଜେୟ ଗଜସେନାର ଅଧିନାୟକ ଭାବେ ଖ୍ୟାତି ଅର୍ଜନ କରିଥିଲା । ଦେଶର ଚତୁରଙ୍ଗ ବଳମଧ୍ୟରେ ତାହାଥିଲା ସର୍ବୋତ୍କୃଷ୍ଟ ଶକ୍ତିଶାଳୀ ସେନା । ମାହୁନ୍ତିଆଙ୍କ ନିଷ୍ଠା ଯୋଗୁ ତାହା ସମ୍ଭବ ହୋଇଥିଲା । କଳିଙ୍ଗର ଅବକ୍ଷୟ ସଙ୍ଗେ ସଙ୍ଗେ ଗଜସେନା ଓ ମାହୁନ୍ତିଆ ଗୋଷ୍ଠୀର ଅଧଃପତନ ଘଟିବା ସ୍ୱାଭାବିକ; ତାହାହିଁ ଘଟିଛି । ଇତିହାସରୁ ଜଣାପଡ଼େ ଇଂରେଜ ଶାସନାଧୀନ ହେବାଯାଏଁ ବିକ୍ଷିପ୍ତଭାବେ ହେଉପଛେ ଓଡ଼ିଶା ରାଜାଙ୍କ ହସ୍ତୀ ବର୍ଗକୁ ନିୟନ୍ତ୍ରଣ କରି ଆସୁଥିଲେ । ଉତ୍ତର କାଳରେ ଧନବନ୍ତ ସୌଦାଗର ଓ ଜମିଦାରଙ୍କ ହାତୀଗୁଡ଼ିକ ଏମାନଙ୍କ ରକ୍ଷଣାବେକ୍ଷଣରେ ରହିଥିଲା । ସମସ୍ତେ ଜାଣନ୍ତି ଇଂରେଜ କବଳରୁ ମୁକ୍ତ ହେବାଯାଏଁ ଭାରତର ବିଭିନ୍ନ ରାଜା ମହାରାଜାଙ୍କ ମନ୍ଦିରମାନ ଦର୍ଶନୀୟ ହାତୀ ଦ୍ୱାରା ଅଳଂକୃତ ହୋଇଆସୁଥାଏ । ହାତୀ ଥିଲା ବଂଶମର୍ଯ୍ୟାଦାର ଗୌରବାବହ ସଙ୍କେତ ଏବଂ ମାହୁନ୍ତିଆ ଥିଲେ ତାହାର ତତ୍ତ୍ୱାବଧାରକ । ବର୍ତ୍ତମାନ ଏ ଜାତିର ଅସ୍ତିତ୍ୱ ପ୍ରାୟ ଦେଖିବାକୁ ମିଳେ ନାହିଁ । ଅନୁସନ୍ଧାନରୁ ଜଣାପଡ଼େ କୁଳବୃତ୍ତି ଅଭାବରେ ଅନ୍ୟ ପନ୍ଥାର ଆଶ୍ରୟ ନେଇ ସେମାନେ ଦେଶତ୍ୟାଗୀ ହୋଇପଡ଼ିଛନ୍ତି ଏବଂ ଇତର ଗୋଷ୍ଠୀରୂପେ ପରିଚୟ ଦେଇ ଆସୁଛନ୍ତି । ଅବଶ୍ୟ କଳିଙ୍ଗର ଉତ୍ତର ଭାଗରେ ରହିଥିବା 'ମାହାନ୍ତ' ଉପାଧିଧାରୀ ଗୋଷ୍ଠୀ ସହିତ ଏହାଙ୍କର ସମ୍ପର୍କ ଅଛି କି ନାହିଁ ତାହା ଅନୁସନ୍ଧେୟ । ଯାହାହେଉ ପ୍ରାଗୈତିହାସିକ କଳିଙ୍ଗର ମାନ ବୃଦ୍ଧି କରିବାରେ ଏ ଜାତିର ଭୂମିକା ଅନସ୍ୱୀକାର୍ଯ୍ୟ ।

**୨୮ । ଗୋଲା**—କୁଳବୃତ୍ତି ପଶୁପାଳନ । ବିଶେଷତଃ ଛେଳି, ମେଣ୍ଢା, ମହିଷୀ । ଏହା ଏକ ଅର୍ଦ୍ଧ ଆରଣ୍ୟକ ଗୋଷ୍ଠୀ ସମତଳବାସୀ ହେଲେ ସୁଦ୍ଧା ଅର୍ଦ୍ଧାଧିକ ସମୟ ଅରଣ୍ୟରେ କଟେ । ଅରଣ୍ୟରେ ଅସ୍ଥାୟୀ କୁଟୀର ନିର୍ମାଣ କରି ପାଳିତ ପଶୁଙ୍କୁ ହିଂସ୍ରଜନ୍ତୁ କବଳରୁ ରକ୍ଷା କରିବାଲାଗି ଅହୋରାତ୍ର ଜଗି ରହନ୍ତି । ସେଥିପାଇଁ ଡଙ୍ଗର, ଚଣ୍ଡି, ବାନ୍ଦୁର, ଖମନା ପ୍ରମୁଖ ବଣ୍ୟ ଦେବତାଙ୍କୁ ବିପଦନାଶିନୀ ମନେକରି ଫୁଲପତ୍ର ଦେଇ ପ୍ରସନ୍ନ କରାଇଥାନ୍ତି । ନିରୀହ ତଥା ସରଳ ବିଶ୍ୱାସୀ ଏ ଜାତି । କ୍ଷୀର, ଦହି, ଚହ୍ଲା, ଘିଅ ପ୍ରଭୃତି ଦୁଗ୍ଧଜାତ ଦ୍ରବ୍ୟ ଦ୍ୱାରା ଜୀବିକା ନିର୍ବାହ କରନ୍ତି । ନିର୍ବୋଧ ହେଲେ ସୁଦ୍ଧା ଏହାଙ୍କ ସାହସ ଓ ପ୍ରତିରୋଧ ଶକ୍ତି ପ୍ରଶଂସନୀୟ । ଗ୍ରାମ ଜନପଦର ସାମୂହିକ ବିପଦ ଆପଦରେ

ଏମାନେ ପ୍ରାଣପାତ କରିବାକୁ ଆଗଭର ହୋଇ ଉଠନ୍ତି—ଅରେ କମ୍ପୁ ବୁଝିଲେ ହେଲା । ଏବେ ସୁଦ୍ଧା ଏମାନେ ବହୁ ସ୍ଥାନରେ ଦେଖାଯାନ୍ତି ।

୨୯ । **ବଣ୍ଟାଣି**—ଏକ ବିଚକ୍ଷଣ କଳାକୁଶଳ ଗୋଷ୍ଠୀ, କୁଳବୃତ୍ତି ସ୍ଥାପତ୍ୟ, ଚିତ୍ର ବିଚିତ୍ର ମୂର୍ତ୍ତି, ପଥରଖୋଦେଇ, କାଷ୍ଠକୁନ୍ଦନ, ଗୋପୁର ପ୍ରାକାର, ନୌକା, ପାଷାଣ ଦୁର୍ଗ, ବାସସ୍ଥଳୀ, ରଙ୍ଗସ୍ଥଳୀ, ବିବିଧାକାର ପଶୁପକ୍ଷୀ ନିର୍ମାଣ କରିବା ଏବଂ ସୂକ୍ଷ୍ମ କାରୁକାର୍ଯ୍ୟ ଦ୍ୱାରା ନିର୍ଜୀବ କାଠ ପଥରକୁ ଜୀବନ୍ତ କରି ଗଢ଼ିବାରେ ଏମାନେ ଥିଲେ ଅନନ୍ୟସାଧାରଣ । ଏହାଙ୍କ ସୌନ୍ଦର୍ଯ୍ୟବୋଧ ଓ ଦୂରଦର୍ଶିତା ଅତୁଳନୀୟ । ସଭ୍ୟତା ଓ ସଂସ୍କୃତିର ବିକାଶ ଘଟାଇ କଳିଙ୍ଗ ଶିଳ୍ପୀ ଭାବେ ଦେଶଦେଶାନ୍ତରରେ ଅପୂର୍ବ କଳାକୁଶଳତାର ନିଦର୍ଶନ ରଖିଆସିଥିଲେ । ଏହାଙ୍କ ଅମର କୀର୍ତ୍ତି ଏବେ ସୁଦ୍ଧା ବାଲି, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପପୁଞ୍ଜରେ ଜାଜ୍ୱଲ୍ୟମାନ ରହିଅଛି । ପ୍ରାଚୀନକାଳରୁ କଳିଙ୍ଗର ପାର୍ବତ୍ୟ ପଥର ଓ ଗୁହାମାନଙ୍କରେ ଥିବା ଚିତ୍ରକଳା ଓ ସ୍ଥାପତ୍ୟର ସ୍ରଷ୍ଟା ଏହାଙ୍କ ଛଡ଼ା ଅନ୍ୟ କେହି ନଥିଲେ । ଏ ଜାତି ଯୋଗୁ କଳିଙ୍ଗ ସମଗ୍ର ବିଶ୍ୱରେ ସୁନାମ ଅର୍ଜନ କରି ଆସିଥିଲା । କାଳର କରାଳ ଲହରୀର ଆବର୍ତ୍ତନ ମଧ୍ୟରେ ବିଭିନ୍ନ ଉତ୍ଥାନ ପତନ ଦେଇ ଆସିଲେ ସୁଦ୍ଧା ଏ ସମ୍ପ୍ରଦାୟର ଯଦିଓ ସୁଦ୍ଧା ଅବକ୍ଷୟ ଘଟିନାହିଁ ବରଂ ପୋଡ଼ା ସୁନା ଭଳି ଅଧିକ ତେଜସ୍କର ହୋଇଉଠିଛି । ସେ ଯୁଗ ସମାଜରେ ଏମାନଙ୍କ ମର୍ଯ୍ୟାଦା ଅତ୍ୟନ୍ତ ଉଚ୍ଚରେ ଥିଲା । ବର୍ତ୍ତମାନ ଏ ଜାତି ଖଣ୍ଡ-ବିଖଣ୍ଡିତ ଭାବେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ବାସକରି ଆସୁଥିବା ଦେଖାଯାଏ ।

୩୦ । **ହାଟୁଆ**—କୁଳବୃତ୍ତି ବସ୍ତୁ ବିନିମୟ । ସ୍ଥାନରୁ ସ୍ଥାନାନ୍ତର, ଗ୍ରାମରୁ ଗ୍ରାମାନ୍ତର ଭ୍ରମଣ କରି କ୍ଷୁଦ୍ର ଓ ମଧ୍ୟମ ମୂଲ୍ୟର ବ୍ୟବସାୟ କରିଥାନ୍ତି । ବୃଦ୍ଧ ବିକାଳି ଗୋଷ୍ଠୀ ଏ । ଜୀବିକାର୍ଜନ ପାଇଁ ଯାଯାବର ଜୀବନଯାପନ କରୁଥିଲେ ସୁଦ୍ଧା ନିର୍ଦ୍ଦିଷ୍ଟ ସ୍ଥାନରେ ସପରିବାର ରହିଥାନ୍ତି । ବିଭିନ୍ନ ହାଟରେ ପଲ୍ଲୀ ଓ ଜନପଦମାନଙ୍କରେ ପସରା ମେଲାଇ ତତ୍ରତ୍ୟ ଅଧିବାସୀଙ୍କ ସହ କାରବାର ଚଳାଇଥାନ୍ତି । ପାର୍ବତ୍ୟ, ଆରଣ୍ୟକ ଓ ସମତଳବାସୀ ମଧ୍ୟରେ ଏମାନେ ଥିଲେ ଏକ ଯୋଗସୂତ୍ର । ଦୁର୍ଲଭ ପଦାର୍ଥ ସୁଲଭ ସ୍ଥାନରୁ ନେଇ ଯୋଗାଇବା ଏମାନଙ୍କ ମୁଖ୍ୟ କର୍ମ । ତଦ୍ୱାରା ଲୋକସମାଜ ଅତ୍ୟନ୍ତ ଉପକୃତ ହେଉଥିଲେ । ବସ୍ତୁ ବିନିମୟ କେନ୍ଦ୍ରସ୍ଥଳୀର ନାଁ ଥିଲା 'ହାଟ' । ହାଟରେ ସମ୍ମିଳିତ ଦୂରଦୂରାନ୍ତର ଗ୍ରାମବାସୀଙ୍କ ବାର୍ତ୍ତାବହ ରୂପେ ମଧ୍ୟ ଏହାଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । 'ହାଟୁଆ' ନାମରେ ଏକ କ୍ଷୁଦ୍ର ଗୋଷ୍ଠୀ ସମ୍ପ୍ରତି ଦେଖାଯାଉଥିଲେ ସୁଦ୍ଧା ସେ ମଧ୍ୟରୁ ଅଧିକାଂଶ କୁଳବୃତ୍ତି ଛାଡ଼ି ଅନ୍ୟ ପନ୍ଥା ଗ୍ରହଣକରିଥିବା ଜଣାପଡ଼େ । ବର୍ତ୍ତମାନ 'ହାଟୁଆ' କୁଳର ବୋଲି ପରିଚୟ ଦେବାକୁ ସେମାନେ ସଙ୍କୋଚ ଅନୁଭବ କରନ୍ତି ।

୩୧ । **ଖେଉ**—ଯୋଦ୍ଧା ଜାତି ଭାବେ ଏମାନଙ୍କ ପ୍ରସିଦ୍ଧି ରହି ଆସିଛି । ଅଶ୍ୱ, ପାଲିଙ୍କି, ରଥ, ଶକଟାଦି ଚାଳନା ଏମାନଙ୍କ କୁଳବୃତ୍ତି । ଅଶ୍ୱକୁ ଯୁଦ୍ଧାଶ୍ୱରେ ପରିଣତ କରି ଅଶ୍ୱାରୋହୀ ସେନାଭାବେ ଦେଶରକ୍ଷା କରିବା ଏ ଜାତିର ମୁଖ୍ୟକର୍ମ ଥିଲା । ସାହସ ଓ ବୀରତ୍ୱ ଯୋଗୁ ଏମାନେ ଲୋକପ୍ରିୟ ହୋଇଥିଲେ । ଅଶ୍ୱ ନିର୍ବାଚନରେ ଏ ଜାତି ଥିଲା ବିଚକ୍ଷଣ ବୁଦ୍ଧି-ସମ୍ପନ୍ନ । ଏ ସମ୍ପ୍ରଦାୟ ସମଗ୍ର କଳିଙ୍ଗରେ ବିଚ୍ଛୁରିତ ହୋଇ ରହିଥିଲା । ଏବେ ସୁଦ୍ଧା ଏମାନଙ୍କ ଅହଂଭାବ ଓ ସ୍ୱାଭିମାନ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇନାହିଁ ।

୩୨ । **ତନ୍ତୀ**—ବସ୍ତ୍ର ବୟନ କୁଳବୃତ୍ତି । ସୂକ୍ଷ୍ମ ତନ୍ତୁ ପ୍ରସ୍ତୁତ କରି ଚିତ୍ର ବିଚିତ୍ର ଲୁଗା ବୁଣିବାରେ ଏମାନଙ୍କ ଦକ୍ଷତା ଅତୁଳନୀୟ । ବିତସ୍ତି ପରିମିତ ଗାମୁଛାରୁ ବହୁମୂଲ୍ୟ ଚୀନାଂଶୁକ ପର୍ଯ୍ୟନ୍ତ ବିଚିତ୍ର ରଙ୍ଗରେ କମକରା ବହିର୍ବାସ ଓ ଅନ୍ତର୍ବାସ ନିର୍ମାଣ କରି ବୟୋଜ୍ୟେଷ୍ଠଙ୍କ ନିର୍ବିଶେଷରେ ସମସ୍ତଙ୍କର ପ୍ରଶଂସାଭାଜନ ହୋଇଥିଲେ । କାର୍ପାସ ଭଳି ପଟ୍ଟନିର୍ମିତ ବସ୍ତ୍ର ମଧ୍ୟ କଳିଙ୍ଗର କଳାକୁଶଳତାର ଅପୂର୍ବ ନିଦର୍ଶନ ଥିଲା । ନିମ୍ନବିତ୍ତ ଓ ଧନବନ୍ତ ଉଭୟ ସମାଜର ଆବଶ୍ୟକତା ପୂରଣ କରୁଥିଲା ଏ ଜାତି । ବୟନ କର୍ମରେ ସେମାନେ ଥିଲେ ଅନନ୍ୟସାଧାରଣ । ତେଣୁ କଳିଙ୍ଗର ବସ୍ତ୍ର ବିଦେଶୀ ମୁହଁରେ 'କଳିଙ୍ଗ' ଭାବେ ଅଭିହିତ ହୋଇଆସିଥିଲା । ସେଥିରୁ ଏହାର ଲୋକପ୍ରିୟତା ବୁଝାପଡ଼େ । ବର୍ତ୍ତମାନ ଏମାନଙ୍କ ସଂଖ୍ୟା ଆଖିଦୃଶିଆ ଥିଲେ ସୁଦ୍ଧା ଅଧିକାଂଶ କୁଳବୃତ୍ତି ଠାରୁ ଦୂରେଇଯାଇଥିବା ସନ୍ଦେହ ନାହିଁ । କିନ୍ତୁ ପ୍ରାଚୀନ କଳିଙ୍ଗର ଦିଗନ୍ତବିସ୍ତାରୀ କୀର୍ତ୍ତିରାଜି ମଧ୍ୟରେ ଏମାନଙ୍କ ଅବଦାନ ଥିଲା ଉଲ୍ଲେଖନୀୟ ।

୩୩ । **ମାହାର**—କୁଳବୃତ୍ତି ଗୋରୁ ଚରାଇବା । କୃଷକର ପ୍ରଧାନ ସହାୟକ ଗୋରୁ, ବଳଦ, ମଇଁଷି, ପୋଢ଼ଙ୍କୁ ଅଡ଼େଇ ନେଇ ପଡ଼ିଆ ଭୂଇଁରେ ଚରାଇ ଆସୁଥିଲେ । ଅପ୍ରାପ୍ତ ବୟସ୍କ ପୁଅଝିଅଙ୍କୁ ତାହାଙ୍କ ଜଗାରଖା କାର୍ଯ୍ୟରେ ନିଯୁକ୍ତ କରାଯାଉଥିଲା । ମୁରବୀମାନେ ନାନାବିଧ ବନଜାତ ଫଳ, ମୂଳ, କୋଳି, କନ୍ଦାଦି ଦ୍ରବ୍ୟ ସାଉଁଟି ଆଣି ବିଭିନ୍ନ ଦ୍ରବ୍ୟ ବିନିମୟରେ ଗ୍ରାମବାସୀଙ୍କୁ ବିତରଣ କରୁଥିଲେ । ଏମାନଙ୍କୁ 'ସାଉଁଟିଆ' ବୋଲି ମଧ୍ୟ କୁହାଯାଉଥିଲା । ଶାରୀରିକ ବଳ ଓ ଦୃଢ଼ ସାମର୍ଥ୍ୟ ଯୋଗୁ ଏମାନେ ସେନାବାହିନୀ ମଧ୍ୟରେ ଅନ୍ତର୍ଭୁକ୍ତ ଥିଲେ । ଦକ୍ଷିଣ ଓଡ଼ିଶା ଛଡ଼ା ଅନ୍ୟତ୍ର ଏମାନଙ୍କ ଅବସ୍ଥିତି ଦୃଷ୍ଟିଗୋଚର ହୁଏ ନାହିଁ । ବର୍ତ୍ତମାନ ଏମାନଙ୍କ ସଂଖ୍ୟା ଅତି ନଗଣ୍ୟ କହିଲେ ଚଳେ ।

୩୪ । **ବାଣାଏତ**—ବଣରୁ ଉତ୍ତମ ଜାତିର କାଠ ବାଉଁଶ ବାଛି ତୀକ୍ଷ୍ଣମୁନ ଲୁହା ଲଗାଇ ଶର ପ୍ରସ୍ତୁତ କରିବା ଏମାନଙ୍କ କୁଳବୃତ୍ତି ଥିଲା । ବାଉଁଶରେ ଧନୁ, ବର୍ଚ୍ଛା, ଠେଙ୍ଗା ପ୍ରଭୃତି ଯୁଦ୍ଧାସ୍ତ୍ର ନିର୍ମାଣରେ ଧୁରନ୍ଧର ଥିଲେ ଏମାନେ । ଦୂରରୁ ଲକ୍ଷ୍ୟ ଭେଦ କରି ଧନୁର୍ଦ୍ଧର ଯୋଦ୍ଧାଭାବେ ଶତ୍ରୁ ନିପାତ କରିବାରେ ଅଦ୍ୱିତୀୟ । ଅବସର ସମୟରେ ବାରହା, ସମ୍ବର, କଳାହରିଣ, ମିରିଗାଦି ବନ୍ୟଜନ୍ତୁ ଶିକାର ଏମାନଙ୍କ ସୌଖୀନ ବ୍ୟବସାୟ ଥିଲା । ଏମାନଙ୍କ ଲକ୍ଷ୍ୟ ଥିଲା ଅବ୍ୟର୍ଥ । ଆଖଡ଼ା ବା ମେଳାପରେ ଯୁବକଙ୍କୁ ବାଣସନ୍ଧାନ ଶିକ୍ଷାଦେବା ଅନ୍ୟତମ

କର୍ତ୍ତବ୍ୟ ଓ କର୍ମ ଥିଲା । ତେଣୁ ସମାଜରେ ମାନ୍ୟଗଣ୍ୟ ବ୍ୟକ୍ତିରୂପେ ସମ୍ମାନିତ ହେଉଥିଲେ । ଦେଶରକ୍ଷା ଓ ଶତ୍ରୁ ପ୍ରତିହତ କରିବାରେ ଏମାନଙ୍କ ମହତ୍ତ୍ୱର ଦାନ ରହି ଆସିଥିଲା । ଓଡ଼ ଚଷା କୁଳର ଅନ୍ୟତର ଶାଖାରୂପେ ପରିଚୟ ଦେବାଦ୍ୱାରା ଏ କୁଳର ବର୍ତ୍ତମାନ ସ୍ୱାତନ୍ତ୍ର୍ୟ ଲୋପ ହେବାକୁ ବସିଛି ।

**୩୫ । ପଥୁରିଆ**—ପଥର କାଟିବା କୁଳ ବ୍ୟବସାୟ । ବିରାଟ ପଥର ଗାତରେ ଚଟାଣ, ଖୋଲ, ଆସ୍ଥାନ ପ୍ରଭୃତି ପ୍ରସ୍ତୁତ କରିବାରେ ଅତ୍ୟନ୍ତ ଦକ୍ଷ ଥିଲେ ଏମାନେ । ପଥର ଖଣ୍ଡି ପଶୁପକ୍ଷୀ, ମଣିଷ, ଶିଳ, ଶିଳପା, ପାତ୍ର, ଥାଳି, ଗିନା ପ୍ରଭୃତି ଦୈନନ୍ଦିନ ବ୍ୟବହାରୋପଯୋଗୀ ଦ୍ରବ୍ୟ ସମେତ ବିଶାଳାକୃତି ପ୍ରାସାଦ, ଦୁର୍ଗ, ପ୍ରାଚୀର, ସେତୁ ଇତ୍ୟାଦି ଦୀର୍ଘସ୍ଥାୟୀ ବସ୍ତୁ ନିର୍ମାଣ କରି ଚିରସ୍ମରଣୀୟ ହୋଇ ରହିଆସିଛନ୍ତି । ସେତିକି ନୁହେଁ ଏହାଙ୍କ କର୍ମଦକ୍ଷତା ବିଦେଶରେ ଏତେଦୂର ପ୍ରଶଂସିତ ହୋଇଥିଲା, ଯାହାଯୋଗୁ ସେମାନେ ସାଦରେ ନିମନ୍ତ୍ରିତ ହୋଇଯାଇ ସେଠାରେ ଆପଣା କଳା କୁଶଳତାର ନିଦର୍ଶନ ସ୍ୱରୂପ ଦୁର୍ଗ, ମନ୍ଦିର, ସ୍ତୂପାଦି ନିର୍ମାଣ କରି ଅକ୍ଷୟ କୀର୍ତ୍ତି ରଖିଆସିଥିଲେ । ଯବ, ବାଲି, ସୁମାତ୍ରା, ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପପୁଞ୍ଜରେ ଏହାଙ୍କ କଳା କୃତିର ଅବଶେଷ ଅଦ୍ୟାପି ବିଦ୍ୟମାନ । ବର୍ତ୍ତମାନ ଏ ଜାତିର ଆର୍ଥିକ ଅବସ୍ଥା ଅତ୍ୟନ୍ତ ଦୟନୀୟ ।

**୩୬ । ଓଡ଼ିଆ**—'ଓଡ଼-ଚଷା' ରୂପେ ପ୍ରସିଦ୍ଧ । ଏ ଜାତିର କୁଳବୃତ୍ତି ଏକମାତ୍ର କୃଷି । ଯଦିଚ ଉପରୋକ୍ତ ସମସ୍ତ ସମ୍ପ୍ରଦାୟ 'ଓଡ଼-ପାଟକ' ଭାବେ ପରିଚିତ ହୋଇ ଆସୁଥିଲେ ତଥାପି କୃଷି ଛଡ଼ା ଅନ୍ୟତର ବୃତ୍ତିମଧ୍ୟ ସେମାନଙ୍କ ଅବଲମ୍ବନ ଥିଲା । କିନ୍ତୁ 'ଓଡ଼ିଆ' ସେଇସ୍ୱା ନ ଥିଲେ । ସମସ୍ତ ଶକ୍ତି ବିନିମୟରେ ଜମିରେ ଖାଦ୍ୟଶସ୍ୟ ଉତ୍ପନ୍ନ କରି ସର୍ବଦା ଦେଶକୁ ଧନଧାନ୍ୟପୂର୍ଣ୍ଣ କରିବା ସେମାନଙ୍କର ଏକମାତ୍ର ବ୍ୟବସାୟ । ଫଳରେ ଦେଶବାସୀ କସ୍ମିନ୍‌କାଳେ ଖାଦ୍ୟାଭାବ ଅନୁଭବ କରୁନଥିଲେ । ଉଦ୍‌ବୃତ୍ତ ଖାଦ୍ୟଦ୍ରବ୍ୟ ବଦଳରେ ବିଦେଶରୁ ଦୁର୍ଲଭ ବସ୍ତୁମାନ ସଂଗୃହ କରାଯାଉଥିଲା । ପ୍ରୟୋଜନ ବେଳେ ସେମାନେ ବୀର ଦର୍ପରେ ରଣଭୂମିରେ ଅବତୀର୍ଣ୍ଣ ହେଉଥିଲେ । ଅବସର ସମୟରେ ଯୁଦ୍ଧକୌଶଳ ଶିକ୍ଷା କରି ଅପ୍ରତ୍ୟାଶିତ ବିପଦ ପାଇଁ ସର୍ବଦା ପ୍ରସ୍ତୁତ ରହୁଥିଲେ । ଏହା ଥିଲି ସମାଜର ଏକ ସୁପ୍ରତିଷ୍ଠିତ ସମ୍ପ୍ରଦାୟ । ଅନ୍ନଦାତା ଏବଂ ବୀରଯୋଦ୍ଧା ଭାବେ ସମାଜରେ ଏମାନଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଥିଲା । କଳିଙ୍ଗରେ ଏହାଙ୍କ ସଂଖ୍ୟା ଥିଲା ସର୍ବାଧିକ । ସମ୍ପ୍ରତି ଯଦିଚ ଅପର ତୁଳନାରେ ଏହାଙ୍କ ସଂଖ୍ୟା ଅଧିକତର, ତଥାପି ଅନେକ କୁଳ ବୃତ୍ତି ଛାଡ଼ି ଜୀବିକାର୍ଜନ ପାଇଁ ଅନ୍ୟ ପନ୍ଥା ଗ୍ରହଣ କରିଥିବା ଦୃଷ୍ଟ ହୁଏ । ଧନଧାନ୍ୟ ଭରା ପ୍ରାଚୀନ କଳିଙ୍ଗ ରାଜ୍ୟ ପ୍ରତି ଏ ଜାତିର ଅବଦାନ ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏମାନେ ନାନା ଶାଖା ଓ ଉପଶାଖାରେ ବିଭକ୍ତ ହୋଇ ଦେଶର ବିଭିନ୍ନ ସ୍ଥାନରେ ବର୍ତ୍ତମାନ ରହିଆସୁଛନ୍ତି ।

ଏହାଛଡ଼ା ଆହୁରି କେତେକ ସମ୍ପ୍ରଦାୟ ନିଜକୁ 'ପାଟକ' କୁଳର ବୋଲି ମଧ୍ୟ ପରିଚୟ ଦେବା ଦେଖାଯାଏ; କିନ୍ତୁ କୁଳବୃତ୍ତି ଓ ପରମ୍ପରାଧର୍ମ ବିଚାରକଲେ ସେମାନେ ଉପରୋକ୍ତ

ଛଅଟି କୁଳ ମଧ୍ୟରୁ କୌଣସି ଏକ ଗୋଷ୍ଠୀର ଶାଖା ବା ଉପଶାଖା ଭିନ୍ନ ଅନ୍ୟ କିଛି ନୁହନ୍ତି ବୋଲି ଜଣାପଡ଼େ । ସେ ମଧ୍ୟରୁ ପୁଣି କେତେକ ନୀଚ ଜାତି ରୂପେ ଗଣ୍ୟ ହୋଇ ଆସୁଛନ୍ତି । ଉଚ୍ଚ-ନୀଚ ଜାତି ବିଭାଗ କଳିଙ୍ଗର ପରମ୍ପରା ନଥିଲା । ପରବର୍ତ୍ତୀ ଯୁଗରେ ଇତର ସଭ୍ୟତାର ସଂସ୍ପର୍ଶରେ ତାଦୃଶ ଶ୍ରେଣୀ ବିଭାଗ ତାହାର ଅଙ୍ଗ ହୋଇପଡ଼ିଛି । ଯାହାହେଉ ଉକ୍ତ ପାଞ୍ଚକ କୁଳର ସମ୍ମିଳିତ ଉଦ୍ୟମରେ ସ୍ୱ ସ୍ୱ କ୍ଷେତ୍ରରେ ଯେଉଁ ଅନନ୍ୟ ସାଧାରଣ ଦକ୍ଷତା ପ୍ରଦର୍ଶିତ ହୋଇ ଆସୁଥିଲା, ତା'ର ବଳରେ କଳିଙ୍ଗ ସଭ୍ୟତା ମଧ୍ୟାହ୍ନ ସୂର୍ଯ୍ୟ ସମାନ ଦେଦୀପ୍ୟମାନ ରହିଥିଲା । ଏହା ଉତ୍ତରାପଥ ଓ ଦାକ୍ଷିଣାତ୍ୟ ସଭ୍ୟତା ରୂପ ଦୁଇ ବାହୁ ମଧ୍ୟରେ ବକ୍ଷସ୍ଥଳ ଭଳି ଶୋଭାପାଉଥିଲା । ବର୍ତ୍ତମାନର ଅବଶେଷ ଧରି ବିଚାର କଲେ ସେ ସଭ୍ୟତାର ବିଭିନ୍ନ ବିଭାବ ମଧ୍ୟରୁ କେତେକର ପୂର୍ଣ୍ଣ ବିକାଶ ଘଟିଥିଲାବେଳେ ଆଉ କେତେକର କଙ୍କାଳମାତ୍ର ଦୃଷ୍ଟହୁଏ । ସେତିକ ଛିଅଧରି କେବଳ କଳିଙ୍ଗର ପ୍ରାକ୍ତନ ସଭ୍ୟତା ସମ୍ବନ୍ଧରେ କିଂଚିତ୍ ଅଧ୍ୟାହାର କରାଯାଇପାରେ ।

---

# ସପ୍ତମ ପ୍ରକାଶ :

## କଳିଙ୍ଗର ସଭ୍ୟତା ଓ ସଂସ୍କୃତି

ସଭ୍ୟତା ଓ ସଂସ୍କୃତି ଜାତିର ମୂଳଭିତ୍ତି । ସେ ଦୁଇଟି ଯାହାର ଯେତିକି ଦୃଢ଼ ସେ ଜାତି ସେତିକି ସମୃଦ୍ଧ । ସଭ୍ୟତା ଜାତିର ବହିରଙ୍ଗ ଏବଂ ସଂସ୍କୃତି ଅନ୍ତରଙ୍ଗ । ଉଭୟେ ଆତ୍ମା ଓ ଶରୀର ପରି ପରସ୍ପର ନିର୍ଭରଶୀଳ । ବାସ, ବସତି, ବ୍ୟବସାୟ, ବେଶ ଭୂଷା, ଭାଷା ପ୍ରଭୃତି ସଭ୍ୟତାର ପରିପ୍ରକାଶକ ହେଲାବେଳେ ଗୀତ, ନୃତ୍ୟ, ଚିତ୍ରକଳା, ଭାସ୍କର୍ଯ୍ୟ, ସାହିତ୍ୟ, ଧର୍ମଭାବନାଦି ସଂସ୍କୃତିର ଅଭିବ୍ୟଞ୍ଜକ । ତେଣୁ ଜାତିର ମାନ ନିରୂପଣ କରିବାକୁ ଗଲା-ବେଳେ ସେଗୁଡ଼ିକ ଉପରେ ପ୍ରଥମେ ଦୃଷ୍ଟିପଡ଼େ ।

**ବାସ ବସତି**—ଆଗରୁ କୁହାଯାଇଛି, ତ୍ରିବିଧ ଶବର ସଂପ୍ରଦାୟ କଳିଙ୍ଗର ମିଳିତ ଅଧିବାସୀ ଭାବେ ଅଖଣ୍ଡ ଐଶ୍ୱର୍ଯ୍ୟ ଉପଭୋଗ କରି ଆସୁଥିଲେ । ସେମାନଙ୍କ ସଭ୍ୟତା ଓ ସଂସ୍କୃତି କି ପ୍ରକାର ଥିଲା—ତାହା ସ୍ପଷ୍ଟ କରି କହିଦେବାର ଉପାୟ ନାହିଁ । ସେଥି ସକାଶେ ଏଯାବତ୍ ବିଧିବଦ୍ଧ ଚେଷ୍ଟା ହେବାର ଶୁଣାନାହିଁ । ଇତିହାସ, ପୁରାଣ, ଶାସ୍ତ୍ର, କାବ୍ୟ, ଓ ଧର୍ମଗ୍ରନ୍ଥମାନଙ୍କରେ 'କଳିଙ୍ଗ'ର ବହୁବାର ନାମୋଲ୍ଲେଖ ଥିଲେ ସୁଦ୍ଧା ତାହା ଏକ ସମୃଦ୍ଧିଶାଳୀ ରାଜ୍ୟ ଥିଲା—ଏତିକି ଛଡ଼ା ବିଶେଷ କିଛି ବର୍ଣ୍ଣନା ଦୃଷ୍ଟ ହୁଏ ନାହିଁ । କରକଣ୍ଡୁ, କାରୁବାକୀ, ପିଥୁଣ୍ଡ, ତୋଷଳୀ, ସମାପ ପ୍ରଭୃତି କାଁ ଭାଁ ଯେଉଁ କେତୋଟି ଶବ୍ଦ ମିଳେ, ତାକୁ ହିଁ ସୂତ୍ର କରି କଳିଙ୍ଗ ସମ୍ବନ୍ଧରେ ଯାହାକିଛି ଅନୁମାନ କରାହୋଇଆସୁଛି । ସେଥିପାଇଁ ଆକ୍ରମଣକାରୀ ଅଶୋକଙ୍କ ଦ୍ୱାରା ଖୋଦିତ ଧଉଳି ଓ ଜଉଗଡ଼ ଅନୁଶାସନ ଆଲୋକବର୍ତ୍ତିକା ରୂପେ ପଥପ୍ରଦର୍ଶକ ହୋଇଆସିଛି । ସେଥିରେ ପରାଜିତ କଳିଙ୍ଗବାସୀଙ୍କ ଉଦ୍ଦେଶ୍ୟରେ ପ୍ରଦତ୍ତ ନୀତି ଉପଦେଶଦ୍ୱାରା ଅଶୋକଙ୍କ ଉଦାରତା ଓ ମାନବିକତା ଯେତିକି ପ୍ରକଟିତ କଳିଙ୍ଗ ପରି ଏକ ଦୁର୍ଦ୍ଧର୍ଷ ବୀରଜାତିକୁ ଧ୍ୱଂସ କରିପାରିବାର ଅହଂକାର ତଦପେକ୍ଷା ଅଧିକ ପରିସ୍ଫୁଟ । ତୀକ୍ଷ୍ଣ ଦୃଷ୍ଟିରେ ବିଚାର କଲେ ବାସ୍ତବିକ୍ ତାହା ଥିଲା କଳିଙ୍ଗବାସୀଙ୍କ ପ୍ରତି ଚରମ ଅବମାନନାର ସଙ୍କେତ । ସେଥିରୁ ବା କଳିଙ୍ଗର ସାମାଜିକ ଅବସ୍ଥା ସମ୍ବନ୍ଧରେ କି ଧାରଣା କରାଯାଇପାରେ ? କିନ୍ତୁ, ଏକଥା ସତ ଯେ ଅଶୋକଙ୍କ ମଗଧ ତୁଳନାରେ କଳିଙ୍ଗର ଅବସ୍ଥା କୌଣସି ଗୁଣରେ ନ୍ୟୂନ ନଥିଲା । ବରଂ ସଭ୍ୟତା, ସଂସ୍କୃତି, ବାଣିଜ୍ୟ, ବ୍ୟବସାୟ, କଳା, ଭାସ୍କର୍ଯ୍ୟ ସବୁ କ୍ଷେତ୍ରରେ ଉତ୍କର୍ଷ ଲାଭ କରିଥିଲା ।

ସୁତରାଂ ତାହା ଥିଲା ମଗଧ ଅପେକ୍ଷା ଅଧିକ ସମୃଦ୍ଧିଶାଳୀ ରାଜ୍ୟ । ତା' ନହେଲେ ପିତୃ ପିତାମହ ଅମଳରୁ ସ୍ୱାଧିକାରଭୁକ୍ତ ଉତ୍ତର କଳିଙ୍ଗକୁ ଲାଗିଥିବା ଖଣ୍ଡିଏ ଅଗମ୍ୟ ବନପର୍ବତ ଘେରା ରାଜ୍ୟକୁ ଜୟ କରିବା ପାଇଁ ଅଶୋକଙ୍କ ମନରେ ଏତେଦୂର ଆକାଂକ୍ଷା ଜାଗ୍ରତ ହୁଅନ୍ତା ନାହିଁ କିମ୍ବା ଏତେବଡ଼ ମଗଧ ସେନାବାହିନୀ ସାହାଯ୍ୟରେ ମଧ୍ୟ ଦୁଇବର୍ଷ ପର୍ଯ୍ୟନ୍ତ ଯୁଦ୍ଧ କରିବାକୁ ପଡ଼ନ୍ତା ନାହିଁ ଏବଂ ଲକ୍ଷ ଲକ୍ଷ ପ୍ରାଣବଳି ଦେଇ ନିଷ୍ପତ୍ତିମୂଳକ ସଂଗ୍ରାମରେ ଅବତୀର୍ଣ୍ଣ ହୁଅନ୍ତେ ନାହିଁ । ସେ ଯୁଦ୍ଧରେ କୁଆଡ଼େ ଉଭୟ ପକ୍ଷର ମିଶି ଆଠ ଲକ୍ଷରୁ ଅଧିକ ସେନା ମୃତାହତ ହୋଇଥିଲେ । ତା ସତ୍ତ୍ୱେ କଳିଙ୍ଗରେ କୃତାସ୍ୱାଂଶରୁ ଅଧିକ ଭିତରକୁ ଅଗ୍ରସର ହେବା ସାହସ ନଥିଲା ତାଙ୍କର । ଏକ ଦିଗରେ ରଣାଙ୍ଗନରେ ଲକ୍ଷ ଲକ୍ଷ ହତାହତ ସେନାଙ୍କ ବିକଳ ଆର୍ତ୍ତଚିତ୍କାର, ଅନ୍ୟଦିଗରେ ଅବିଜିତ ଉପାନ୍ତବାସୀଙ୍କ ନିରବଚ୍ଛିନ୍ନ ଆତଙ୍କ ସୃଷ୍ଟିକାରୀ ଆକ୍ରମଣ ତାହାଙ୍କୁ ହିଂସାବର୍ଜନ ନୀତିର ପ୍ରରୋଚିତ କରିଥିଲା । ତାହାହିଁ ଅନୁଶାସନ ଦୁଇଟିର ପ୍ରକୃତ ଅନ୍ତଃସ୍ୱର । ସେ ଅନୁଶାସନରୁ କଳିଙ୍ଗର ଐତିହ୍ୟ ସମ୍ବନ୍ଧୀ ସୂଚନା ଆଶା କରିବା ନିରର୍ଥକ । ଏଣୁ ଭଗ୍ନାବଶେଷ ଭିତ୍ତିପ୍ରସ୍ତର ଧର ଲୁପ୍ତ ମନ୍ଦିରର ବାସ୍ତୁ କଳ୍ପନା କଲାପରି ବର୍ତ୍ତମାନ ପ୍ରଚଳିତ କୁଳପ୍ରଥା ଓ ଲୁପ୍ତାବଶିଷ୍ଟ ଚଳଣିର ବିଶ୍ଳେଷଣ ଓ ସଂଶ୍ଳେଷଣ ସାହାଯ୍ୟରେ ପ୍ରାଗୈତିହାସିକ କଳିଙ୍ଗର ଇତିବୃତ୍ତ କଳନା କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ଅନୁଧ୍ୟାନରୁ ଜଣାପଡ଼େ, ପ୍ରଥମ ଅବସ୍ଥାରେ 'ନାଗ' ସଂଜ୍ଞକ ଶବର ଗୋଷ୍ଠୀ କଳିଙ୍ଗରେ କ୍ଷମତା ବିସ୍ତାରପୂର୍ବକ ବିଶାଳ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ସାଧାରଣରେ ତାଙ୍କୁ 'କଳିଙ୍ଗ' କୁହାଯାଉଥିଲା । 'ନାଗ' ଥିଲା କଳିଙ୍ଗ୍ ଗୋଷ୍ଠୀର ଶାଖା ସଂପ୍ରଦାୟ । ମାଲୟ ଅନ୍ତରୀପରେ ଏମାନେ 'ଓରଂ କ୍ଲିଙ୍ଗ୍' (ଓଡ଼-କଳିଙ୍ଗ) ନାମରେ ଅଭିହିତ ହେଉଥିଲେ । ସିଙ୍ଗାପୁର ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳ ଅଦ୍ୟାପି 'କ୍ଲିଙ୍ଗ୍'ନାମରେ ନାମିତ ହୋଇ ରହିଥିବା ତତ୍ତ୍ୱବିତ୍‌ମାନେ କହନ୍ତି । ଐତିହାସିକ ଫର୍ଗୁସନ୍ ସାହେବ କହନ୍ତି, କ୍ଲିଙ୍ଗ୍' ନାଁଟି ଯେଉଁ ଜାତି ପାଇଁ ଉଦ୍ଦିଷ୍ଟ, ତାହା ଭାରତବର୍ଷର ପ୍ରସିଦ୍ଧ କଳିଙ୍ଗ ଦେଶବାସୀ ଛଡ଼ା ଅନ୍ୟ କେହି ନୁହନ୍ତି । ଏମାନେ କଳିଙ୍ଗରୁ ନୌକାଯୋଗେ ଆସି ସିଙ୍ଗାପୁର ଅଞ୍ଚଳରେ ସ୍ଥାୟୀ ବସତି ସ୍ଥାପନ କରିଥିଲେ ଏବଂ ତାହା ଖ୍ରୀ:ପୂ: ପଞ୍ଚମ ଶତାବ୍ଦୀ ଆଗରୁ ଘଟିଥିବା ସମ୍ଭବ । ବୋର୍ଣ୍ଣିଓ ପ୍ରଭୃତି ଦ୍ୱୀପପୁଞ୍ଜରେ ପ୍ରଚଳିତ କିମ୍ବଦନ୍ତୀ ଅନୁସରଣରେ କହନ୍ତି—'କଳିଙ୍ଗ' ନାମକ ଜାତି ଭାରତବର୍ଷରୁ ଯାଇ ଉକ୍ତ ଦ୍ୱୀପମାନଙ୍କରେ ବସତି ସ୍ଥାପନ କରିଥିଲେ । ତାହା କରିବାକୁ କଳିଙ୍ଗର ତାମ୍ରଲିପ୍ତିଠାରୁ ଗୋଦାବରୀ ନଦୀ ମୁହାଣ ପର୍ଯ୍ୟନ୍ତ ଲମ୍ବିତ ଉପକୂଳସ୍ଥ ଗୋଟେ-ବଡ଼ ବନ୍ଦର ସହାୟକ ଥିଲା । ସେହି କାରଣରୁ ବୁଦ୍ଧଙ୍କ ପରିନିର୍ବାଣ ପରେ ସ୍ମୃତି ସ୍ୱରୂପ ଦାନ୍ତଟିଏ ସିଂହଳକୁ କଳିଙ୍ଗ ବନ୍ଦର ବାଟେ ପ୍ରେରିତ ହୋଇଥିଲା । ଏଥିରୁ ପ୍ରମାଣିତ ହୁଏ, ଅଶୋକଙ୍କ ଆକ୍ରମଣ ପୂର୍ବରୁ କଳିଙ୍ଗ ଗୌରବମଣ୍ଡିତ ଏବଂ ସମୃଦ୍ଧିଶାଳୀ ରାଜ୍ୟ ରୂପେ ପ୍ରତିଷ୍ଠିତ ଥିଲା । ଶାସନ ବ୍ୟବସ୍ଥା ଯେପରି ସୁଦୃଢ଼, ସାମାଜିକ

ଅବସ୍ଥା ସେହିପରି ଶୃଙ୍ଖଳିତ ଥିଲା । ଏ ସମ୍ପର୍କରେ ବୌଦ୍ଧଜାତକ ଓ ଜୈନଗ୍ରନ୍ଥମାନଙ୍କରୁ ଯେଉଁ ଆଭାସ ମିଳେ, ତାହା ଯଥେଷ୍ଟ ନହେଲେ ସୁଦ୍ଧା ପ୍ରାକ୍ତନ କଳିଙ୍ଗର ପାର୍ଥିବ ବିଭୂତି କଳନା କରିବାରେ ବହୁଧା ଉପାଦାନ ଯୋଗାଇଥାନ୍ତି ।

ବୌଦ୍ଧଜାତକ କଥାରେ ଉଲ୍ଲେଖ ଅଛି, ବିଭିନ୍ନ କିସମର ଇଟା, ମାଟି ଓ ପଥର ଦ୍ୱାରା ନିର୍ମିତ ବହୁ ସଂଖ୍ୟକ ଦୁର୍ଗ, ନବର, ନଗର ଓ ପ୍ରାସାଦ କଳିଙ୍ଗରେ ରହିଥିଲା । 'କୁମ୍ଭାବର୍ତ୍ତ' ଓ 'ନାରିକେର' ନାମକ ଦୁଇଟି ଦୁର୍ଗରେ ରାଜପରିବାର ବାସ କରୁଥିଲେ । 'ଦାଠା-ଧାତୁବଂଶ'ର ବର୍ଣ୍ଣନାରୁ ଜଣାପଡ଼େ, କଳିଙ୍ଗରେ ଦୁଇମହଲା ଓ ତିନମହଲା ବିଶିଷ୍ଟ ଦୁର୍ଗ ଗଢ଼ାଯାଇଥିଲା । ମଧ୍ୟରେ ଚଉବିଚିତ୍ର କୋଠରି ଓ ବହିଃସୀମାରେ ଶତାଧିକ ଗୃହ ଓ ବିରାଟ ପ୍ରକୋଷ୍ଠ ରହିଥିଲା । ରାଜପୁରୁଷ ଓ ଦୁର୍ଗ ରକ୍ଷକମାନେ ସେଠାରେ ଅବସ୍ଥାନ କରୁଥିଲେ । ମୂଳ ନବରକୁ ଲାଗି ରାଜରମଣୀଙ୍କ ପାଇଁ ରାଣୀହଂସପୁର ଏବଂ ତା ପାଖକୁ ଅନ୍ତର୍ଗୃହମାନ ନିର୍ମିତ ହୋଇଥିଲା । ଶତ୍ରୁ ଆକ୍ରମଣରୁ ରକ୍ଷାପାଇବା ଲାଗି ସେଥିରେ ବିଭିନ୍ନ ବନ୍ଦୋବସ୍ତ କରାଯାଇଥିଲା । ପ୍ରବେଶ ପଥରେ ସିଂହଦ୍ୱାର । ଅନ୍ତଃପୁର ଭିତ୍ତିଗାତରେ ସୁପରିକଳ୍ପିତ ବାତାୟନ ଓ କ୍ଷୁଦ୍ରକ୍ଷୁଦ୍ର ଗୁପ୍ତରନ୍ଧ୍ର । ସେଗୁଡ଼ିକ ଥିଲା ଅଗମ୍ୟ, ସୁରକ୍ଷିତ ଓ କାରୁକଳାପୂର୍ଣ୍ଣ । ସେଥିରେ ସେକାଳ କଳିଙ୍ଗ ଶିଳ୍ପୀଙ୍କ ଅପୂର୍ବ କଳା କୁଶଳତା ପ୍ରକଟିତ ହେଉଥିଲା । ମୋଟାମୋଟି କହିଲେ ଭୁବନେଶ୍ୱର 'ରାଣୀଗୁମ୍ଫା' ଓ 'ମଞ୍ଚପୁରୀ'ର ନିର୍ମାଣ ପଦ୍ଧତିଠାରୁ ତାହା ଭିନ୍ନ ନଥିଲା ।

ତା ଛଡ଼ା ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମଧ୍ୟରେ 'ସୁବର୍ଣ୍ଣଗିରି' ନାମକ ଏକ ଗିରିଦୁର୍ଗ ଥିବା ଐତିହାସିକମାନେ କହନ୍ତି । ତାକୁ ଲାଗି କୁଆଡ଼େ 'ଇସିଲ' ନାମରେ ଏକ ସମୃଦ୍ଧ ନଗର ଅବସ୍ଥିତ ଥିଲା । ସେହିପରି ବଂଶଧାରା ନଦୀ କୂଳର 'ଶାଳିହୁଣ୍ଡି' ପର୍ବତ ନିକଟରେ ମଧ୍ୟ ଏକ ଜନଗହଳପୂର୍ଣ୍ଣ ସହର ଥିବା ଜଣାପଡ଼େ । ଚୀନ ପରିବ୍ରାଜକ ହୁଏନ୍‌ସାଂଙ୍କ କହିବାନୁସାରେ ପୂର୍ବଘାଟ ପର୍ବତମାଳାରୁ ବଙ୍ଗୋପସାଗର ମଧ୍ୟରେ ଦଶଟି ସୁରକ୍ଷିତ ନଗର ରହିଥିଲା । ସେଗୁଡ଼ିକ ଏପରି ସୁଦୃଢ଼ ପ୍ରାଚୀର ବେଷ୍ଟିତ ଯେ ଶତ୍ରୁ ପ୍ରବେଶ କରିବା ସହଜସାଧ୍ୟ ନଥିଲା । ସେଠାରେ ବିରାଟକାୟ ଯୁଦ୍ଧହସ୍ତୀମାନଙ୍କୁ ରଖାଯାଇ-ଥିଲା । ଏଣୁ ଅନୁମାନ, ପ୍ରତ୍ୟେକ ନଗରାଞ୍ଚଳ ଦୁର୍ଗଦ୍ୱାରା ସୁରକ୍ଷିତ ହୋଇ ରହିଥିଲା । ସେ-ଗୁଡ଼ିକ ଥିଲା ରାଜ୍ୟର ଏକ ଏକ କେନ୍ଦ୍ରସ୍ଥଳୀ । ତାର ଚତୁର୍ଦ୍ଦିଗରେ ଛୋଟ-ବଡ଼ ବସତିମାନ ଗଢ଼ିଉଠିଥିଲା । ଆକାର ଓ ଜନସଂଖ୍ୟା ଅନୁଯାୟୀ ସେଗୁଡ଼ିକର ନାମକରଣ କରାଯାଉଥିଲା । ଗଡ଼, ଗୁଡ଼ା, ପୁଟ୍, ପଡ଼ା, ମା, ଗୁମ୍ଫା, ଦା, ଡ଼ା, ଅଙ୍ଗ ପଦାନ୍ତ ଶବ୍ଦରୁ ତାହାର ଆକାର ବାରିହୋଇପାରୁଥିଲା । ଗଡ଼ ଥିଲା 'ରାଜପୁରୁଷ'ଙ୍କ ଆବାସସ୍ଥଳୀ । ତାଙ୍କର ନିର୍ଦ୍ଦେଶରେ ତାହା ପରିଚାଳିତ ହେଉଥିଲା । ଗଡ଼ ହେଉ ବା ଗ୍ରାମ ହେଉ ପ୍ରତିଷ୍ଠା କାଳରେ 'ଓଡ଼' ଶବରମାନେ ଜଳ, ଜୀବିକା ଓ ନିରାପତ୍ତା ତିନୋଟି ବିଷୟ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖୁଥିଲେ । ଏ ମଧ୍ୟରୁ ଗୋଟିକର ଅଭାବ ଥିଲେ ବି ସେ ସ୍ଥାନକୁ ବାସଯୋଗ୍ୟ ମଣୁ

ନଥିଲେ । ସ୍ମରଣାତୀତ କାଳରୁ କଳିଙ୍ଗରେ ରହିଆସିଥିବା ବୈପାରିଗୁଡ଼ା, ବୁଗୁଡ଼ା, ବାଲିଗୁଡ଼ା, ବଜ୍ରକୁଟ, କରୁପୁଟ, ଲୋଧାପୁଟ, ଆଡ଼ପଡ଼ା, ଖଣ୍ଡପଡ଼ା, କରପଡ଼ା, ହୁକୁମା, ହୁମ୍ମା, ଏର୍ସମା, ବରଗୁମ୍ଫା, କାକରଗୁମ୍ଫା, ଗୁମ୍ଫା, ଅମରଡା, ଖୁର୍ଦା, ବର୍ଦା, ମାହାଙ୍ଗା, କୁଡ଼ଙ୍ଗା, କେସିଙ୍ଗା ପ୍ରଭୃତି ଅସଂଖ୍ୟ ନାମ ରହିଛି, ଯାହାର ସମ୍ପୂର୍ଣ୍ଣ ତାଲିକା ଦେବା ସହଜସାଧ୍ୟ ନୁହେଁ—ତହିଁରୁ ଏହାର ପ୍ରମାଣ ମିଳେ ।

ରାଜପୁରୁଷ ରହିବା ସ୍ଥାନକୁ 'ଗଡ଼' କୁହାଯାଉଥିଲା । ତା' ଚାରିପଟେ ଶ୍ରେଣୀ ଶ୍ରେଣୀ ପଲ୍ଲୀ ବା ଜନପଦ ଥିଲା । ସେଥିରେ ବନଜାତ ଓ ମାଟିମାଟିର ଘରମାନ ପରସ୍ପର ସଂଲଗ୍ନ ହୋଇ ରହିଥିଲା । ସେଥିରେ ଆଗ ପଛକୁ ଦୁଇଟି କାଠବସ୍ତୃତ 'ପିଣ୍ଡା' ଗାଁ ନାଁରେ 'ଭେଣ୍ଡା-ଘର' ଅନ୍ୟନାମ ମେଳଘର ବା 'ଆଖଡ଼ା ଘର' । ଅବସର ସମୟରେ ଆବାଳବୃଦ୍ଧ ସେଠାରେ ଏକତ୍ରିତ ହେଉଥିଲେ । ଗାଁ ମଧ୍ୟରେ କଳିଗୋଳ ହେଲେ, ସାମୂହିକ ବିପଦ ଘଟିଲେ 'କମ୍ବା' ପଞ୍ଚପଞ୍ଚାଣି ଢଙ୍ଗରେ ସେଠାରେ ବିଚାର ଆଲୋଚନା ହୋଇ ନିଷ୍ପତ୍ତି ନିଆଯାଉଥିଲା । ଅତିଥି ଅଭ୍ୟାଗତ ପାଇଁ ତାହା ଥିଲା ଏକ ବିଶ୍ରାମ ଗୃହ । ଅଭିଜ୍ଞ ବୟସ୍କ-ମାନେ ଗାଁ ଯୁବକଙ୍କୁ ଖଣ୍ଡା ସାଧନ, ପାହିଲି, ବଣାବାଡ଼ି, ଚକାପାଙ୍ଗା, ନଳୀଭେଦ, ଧନୁଶର, ଛେଲ ଫାଳିଆ, ଢାଲ-ଆଡେଣି ଇତ୍ୟାଦି ବିଦ୍ୟାରେ ଅଭ୍ୟସ୍ତ କରାଉଥିଲେ । ଚିତ୍ତବିନୋଦନ ସକାଶେ ସକଟା, ପଶା, ଡୁଗି, ଦସ୍ତ, ବାଘଛେଳି, ଧାଡ଼ି-ଧୋକଡ଼ି ପ୍ରଭୃତି ଖେଳର ବନ୍ଦୋବସ୍ତ ଥିଲା । ସେ ମଧ୍ୟରେ ରଣପା କୌଶଳ ଶିକ୍ଷା ଥିଲା ସର୍ବପ୍ରଧାନ । 'ରଣପା' ପିନ୍ଧି ଯୁଦ୍ଧକ୍ଷେତ୍ରରେ କିପରି ସହଜରେ ଶତ୍ରୁ ନିପାତ କରାହୁଏ, ସେ ସମ୍ବନ୍ଧୀୟ ସୂକ୍ଷ୍ମ ଉପାୟମାନ ବତାଇ ଦିଆଯାଉଥିଲା । ଯଦିଓ ଏବେ ତାହା ଏକ ନୃତ୍ୟ ଶ୍ରେଣୀରେ ପରିଗଣିତ—ବାସ୍ତବ ପକ୍ଷେ ସେ ଥିଲା କାଳିଙ୍ଗୀ ସେନାର ଅନ୍ୟତମ ଯୁଦ୍ଧ କୌଶଳ । ଏହା ବ୍ୟତୀତ ଯୁବସମାଜ ମଧ୍ୟରେ ଡୁଡୁ, ବୋହୂଚୋର, ବାରଦାଣ୍ଡି, ତାଲମାଙ୍କଡ଼, ଡାହି-ପିଲ ପ୍ରଭୃତି ଖେଳ ଅତ୍ୟନ୍ତ ପ୍ରିୟ ଥିଲା । ବାସ୍ତବ ଦୃଷ୍ଟିରେ ମେଳଘର ଥିଲା ଗ୍ରାମବାସୀଙ୍କ ପକ୍ଷେ ଏକ ତାଲିମ୍ ଶିବିର ।

'ଗଡ଼'ଛଡ଼ା ବନ୍ଦର ସନ୍ନିକଟ ସ୍ଥାନରେ ବାଣିଜ୍ୟିକ ନଗରମାନ ଗଢ଼ିଉଠିଥିଲା । ସେଗୁଡ଼ିକର ନାମ ଥିଲା 'ପାଟଣା' । ଏହା 'ଗଡ଼' ତୁଳନାରେ ବୃହତ୍ତର ଏବଂ ବିଦେଶୀ ଓ ସ୍ୱଦେଶୀ ଉଭୟ ପଣ୍ୟଦ୍ରବ୍ୟର ବ୍ୟବସାୟ କେନ୍ଦ୍ର ଥିଲା । ବର୍ତ୍ତମାନ ସମୁଦ୍ର ଉପକୂଳସ୍ଥ ବିଶାଖାପାଟଣା, କଳିଙ୍ଗପାଟଣା, ବାଲିପାଟଣା, ମାଣିକପାଟଣା ପ୍ରଭୃତି ତା'ର ସଙ୍କେତ ବହନ କରନ୍ତି । ବନ୍ଦରଗୁଡ଼ିକ ସାଧାରଣତଃ ନଦୀ ମୁହାଣରେ ଗଢ଼ିଉଠିଥାଏ । ତେଣୁ ସୁବର୍ଣ୍ଣରେଖା, ବୈତରଣୀ, ମହାନଦୀ, କୁଶଭଦ୍ରା, ଚନ୍ଦ୍ରଭାଗା, ଋଷିକୁଲ୍ୟା, ବାହୁଦା, ବଂଶଧାରା ନଦୀମୁହାଣ ଓ ସାଗର ଉପକୂଳ ଚିପସ୍ଥାନ ଦେଖି ତାହା ପ୍ରତିଷ୍ଠା କରାଯାଇଥିଲା । ତେଣୁ ପୁରୀଜିଲ୍ଲା ମାଣିକପାଟଣା, ବାଲିପାଟଣା, ଚିଲିକା ହ୍ରଦ ସଂଲଗ୍ନ ପୋତାଗଡ଼, ଛତ୍ରପୁର ନିକଟସ୍ଥ ପାଲୁରୁ, ଗୋପାଳପୁର ବନ୍ଦର ଗାଁ, ବ୍ରହ୍ମପୁର ନିକଟବର୍ତ୍ତୀ ମନ୍ତ୍ରିଡ଼ି, ଆନ୍ଧ୍ର

ସୀମା ଭିତରେ ବାଉରୁ, ଶ୍ରୀକାକୁଲମଜିଲ୍ଲା କଳିଙ୍ଗପାଟଣା ଶ୍ରେଷ୍ଠ ବଡ଼ ବାଣିଜ୍ୟିକ ନଗର ରୂପେ ପ୍ରସିଦ୍ଧି ଲାଭ କରିଥିଲା । ପୋତାଶ୍ରୟ ରୂପେ 'ବାଉରୁ' ବିଂଶ ଶତାବ୍ଦୀଯାଏ ବ୍ୟବହୃତ ହେଉଥିବା ଓ ରେଙ୍ଗୁନଯାତ୍ରୀମାନେ ସେଠାରୁ ଯିବା ଆସିବା କରିବା କଥା ପ୍ରତ୍ୟକ୍ଷଦର୍ଶୀଙ୍କ ମୁହଁରୁ ଶୁଣାଯାଏ । 'ମନ୍ଦିଡ଼ି'ରେ ବାରହାତ ମାଟିତଳୁ ଆବିଷ୍କୃତ 'ଭୈରବୀ' ମୂର୍ତ୍ତି ତତ୍କାଳ କଳିଙ୍ଗ ବଣିକଙ୍କଦ୍ୱାରା ପ୍ରତିଷ୍ଠିତ ବୋଲି ଜନଶ୍ରୁତି ରହିଛି । ଅବଶ୍ୟ ସେକାଳରେ ଏସବୁର ପ୍ରକୃତ ନାମ କଣ ଥିଲା ସ୍ପଷ୍ଟ ବୁଝାପଡ଼େ ନାହିଁ । କିନ୍ତୁ ଏକଥା ସତ ଯେ, ନୌ-ସାଧନା କୁଶଳ କଳିଙ୍ଗବାସୀ ଉପଯୁକ୍ତ ସ୍ଥାନରେ ବନ୍ଦର-ନଗରୀ ପ୍ରତିଷ୍ଠା କରି ବାଣିଜ୍ୟ ବ୍ୟବସାୟ ପନ୍ଥା ସୁଗମ କରି ରଖିଥିଲେ । ସେଥିପାଇଁ କୌଣସି ସମ୍ଭାବ୍ୟ ସୁଯୋଗର ମଧ୍ୟ ଉପଯୋଗ ନକରି ଛାଡ଼ୁନଥିଲେ । ବନ୍ଦରଗୁଡ଼ିକ ବିଦେଶୀ ଭ୍ରମଣକାରୀଙ୍କ ଦ୍ୱାରା ଶତମୁଖରେ ପ୍ରଶଂସିତ ହୋଇଆସୁଥିଲା । ସେଗୁଡ଼ିକ ଯାହା ବିଦେଶୀ ମୁହଁରେ କୋସବା, କେକଲା, ଟାଇଣ୍ଡିସ୍ ପ୍ରଭୃତି ରୂପେ ଉଚ୍ଚାରିତ, ଠିକ୍ କେଉଁ ସ୍ଥାନରେ କି ନାମରେ ପ୍ରତିଷ୍ଠିତ ଥିଲା ଏବେ ଗବେଷଣାର ବିଷୟ ହୋଇପଡ଼ିଛି । କିନ୍ତୁ ଅଶୋକଙ୍କ ଆକ୍ରମଣ ପୂର୍ବରୁ କଳିଙ୍ଗର ଶତାଧିକ ସହର ବାଣିଜ୍ୟ କେନ୍ଦ୍ରରୂପେ ଏତେଦୂର ଧନସମ୍ପଦ ଓ ଐଶ୍ୱର୍ଯ୍ୟପୂର୍ଣ୍ଣ ଥିଲା । ଯାହା ପଡ଼ୋଶୀ ରାଜ୍ୟ ମନରେ ଅହେତୁକ ଈର୍ଷାର କାରଣ ହୋଇଥିଲା । କଳିଙ୍ଗରେ ବର୍ତ୍ତମାନ ପ୍ରଚଳିତ କିମ୍ବଦନ୍ତୀ, ଗ୍ରାମଗୀତ, ଦେଶାଚାର, କୁଳାଚାର, ଲୋକାଚାର, ଲୋକସାହିତ୍ୟ, ଲୁପ୍ତାବଶେଷ ପଦାର୍ଥ ଅନୁଶୀଳନରୁ ଉପଲବ୍ଧ ନିର୍ଯ୍ୟାସ ସେ କାଳ ସମାଜର ଅବିକଳ ପ୍ରତିବିମ୍ବ ବୋଲି ଦୃଢ଼ଭାବେ କହି ନପାରିଲେ ସୁଦ୍ଧା ତାହା ସମ୍ପୂର୍ଣ୍ଣ ଅବାସ୍ତବ ବୋଲି କହିଦେବାର ଉପାୟ ନାହିଁ । କାରଣ କୁଳପ୍ରଥା ଆକସ୍ମିକ ନୁହେଁ କିମ୍ବା ପରଂପରା ସଦ୍ୟୋଜାତ ନୁହେଁ । ତାହା ପୁରୁଷାନୁକ୍ରମେ ଗଡ଼ି ଗଡ଼ି ଆସୁଥାଏ । ରଙ୍ଗ ବଦଳିଲେ ସୁଦ୍ଧା ମଜ୍ଜା ବଦଳିନଥାଏ । ସେହି ସୂତ୍ର ଧରି ସିଂହାବଲୋକନ କଲେ ପ୍ରାଚୀନ କଳିଙ୍ଗରେ ନିମ୍ନଲିଖିତ ବସ୍ତୁ ସମୂହର କାରବାର ଚାଲୁଥିବା ହୃଦୟଙ୍ଗମ ହୁଏ ।

**ଅଳଙ୍କାର**—ପାଟଣା ଥିଲା ପାଟକ ଗୋଷ୍ଠୀର ବାସ୍ତବ ସ୍ଥଳୀ । କ୍ରୟ ବିକ୍ରୟ ଉଦ୍ଦେଶ୍ୟରେ ବୃତ୍ତି ଲବ୍ଧ ବସ୍ତୁଜାତ ସେଠାରେ ଗଚ୍ଛିତ ରହୁଥିଲା । ସେ ମଧ୍ୟରେ ସୁନାରି, ପାଟରା, ସାଧବ, ଡେରା, ଲୁହୁରା, ହାଟୁଆ, କୁମ୍ଭାର ପ୍ରଭୃତି ସଂପ୍ରଦାୟ ଅବସ୍ଥାନୁରୂପ ଗୃହ ଓ ଅଟ୍ଟାଳିକା ତୋଳି ସ୍ଥାୟୀ ଭାବେ ରହୁଥିଲେ । ପସରାମେଲି ଯେ ଯାହାର ପଦାର୍ଥ ଆକର୍ଷଣୀୟ ଭାବେ ସଜାଇ ରଖୁଥିଲେ । ସୁନାରି ପସରାରେ ହୀରା,ନୀଳା, ମୋତି, ମାଣିକ୍ୟ, ମରକତ, ବୈଦୂର୍ଯ୍ୟ, ପଦ୍ମରାଗ, ଗୋମେଦ, ଗରୁଡ଼ୋଦ୍‌ଗାର, ପୋହଳା ସମେତ ସୁନା, ପିଟାସୁନା, କୁନ୍ଦନ ସୁନା, ପାରସିକା, କପିତାନ, ସିକା, ଗର୍‌ନାଲି, ସୁରତ, ଆଡ଼କାଠି, ଦଶମାସି, ଦେଶୀ, ମଙ୍ଗରାଜ ପ୍ରଭୃତି ନାନା ଜାତିର କଞ୍ଚା ସୁନା ବିକ୍ରୟ ପାଇଁ ପ୍ରସ୍ତୁତ ହୋଇ ରହିଥିଲା । ତା'ଛଡ଼ା ରତ୍ନାଦି ଖଚିତ ଅଳଙ୍କାରମାନ ମଧ୍ୟ ନିର୍ମିତ ହୋଇ ପସରାରେ

ରଖାଯାଉଥିଲା ବୋଲି ବର୍ଣ୍ଣିତ ଅଛି । ଦୃଷ୍ଟାନ୍ତ ରୂପେ ସେ ମଧ୍ୟରୁ କେତୋଟିର ନାମୋଲ୍ଲେଖ କରାଗଲା—ଝୁଣ୍ଟିଆ, ଝମକ ଝୁଣ୍ଟିଆ, ଗଣ୍ଠିବଳା, କମଗଣ୍ଠିବଳା, ବାଜେଣୀ ନୂପୁର, ଆଠ ଅଂଶାବଳା, ରତ୍ନ ପାହୁଡ଼, ଚଳବାଙ୍କି, ଦକ୍ଷିଣିବଳା, ବଳା, ଗଣ୍ଠିଆ । ଏହା ଥିଲା ପାଦର ଶୋଭାବର୍ଦ୍ଧକ ଅଳଙ୍କାର । ହସ୍ତାଳଙ୍କାର ମଧ୍ୟରେ—କାଚ, ଷୋଳବସା କାଚ, ଗୁଞ୍ଜାର, ଛାଡ଼, ସୁନାଦୁବ, ଫିରଫିଶ, ମରକତ ଛାଡ଼, ମାଣିକ ଛାଡ଼, ହଦାବନ୍ଧଆ, ଖଡ଼ୁ, ବାଙ୍କି କାଚ, ଘନ୍ତୁଆ ପ୍ରଧାନ । ସେହିପରି ଫାସିଆ, ଅର୍ଦ୍ଧଚନ୍ଦ୍ର ଗୁଣା, ମାଣିକ ଗୁଣା, ବଜ୍ରକୁଳ ଗୁଣା, ପଦ୍ମକେଶରୀ ଗୁଣା, ତ୍ରିଲୋଚନ ଗୁଣା, ସିଂହମୁହାଁଗୁଣା, ବନ୍ଦାଗୁଣା, ଘସାଗୁଣା, ଫୁଲଗୁଣା, କମଗୁଣା, ରୁଅବସାଗୁଣା, ବନ୍ଧଗୁଣା, ଝଲକା, ଷୋଳବସା, ଢନଫୁଲିଆ, ମଲ୍ଲିକଢ଼ି, କାନବନ୍ଧଆ, ନାଗୁଲ, ଝିଙ୍କା ପ୍ରଭୃତି ଥିଲା କର୍ଣ୍ଣାଳଙ୍କାର । ବଦମାଳି, ତେଉଁରଆମାଳି, ଗୁପସରି, ସୋଷିରଆ ମାଳି, ବଉଳମଞ୍ଜିଆ, ଯୋଡ଼ମାଳି, ଗଣ୍ଠିମାଳି, ନକ୍ଷତ୍ରମାଳି, ଦନ୍ତମାଳି, ଗରଗଡ଼ିଆ, ରସୁଣିଆ, ଧାନମାଳି, ଛେଡ଼ା କଣ୍ଠିମାଳି, ସେହିମାଛ ମାଳି, ଦଶଅବତାର ମାଳି, କଣ୍ଠା, କଆପତର ପ୍ରଭୃତି କଣ୍ଠାଳଙ୍କାର । ଅଣ୍ଟାପାଇଁ—ସୁନା ସୂତା, ସୁନା ଶିକୁଳି, କମର ପଟା, କଙ୍କିଣି, ଓଡ଼ିଆଣି, ଘାଗୁଡ଼ି ବନ୍ଧ, ସୁନାପାଡ଼ିଆ ଏବଂ ଚଙ୍ଗୁଡ଼ି ଗ୍ରେପା, ଷିଆଳଫୁଲ, ଉସ୍ତପତର, ଗୋଲି, ଛେଗ୍ଲ, ଲବଙ୍ଗ, ଜାଇମଣ୍ଡା, କଳାବର, ଗଡ଼ଗଡ଼ିଆ, ବାଙ୍କଟା ନାମରେ ଦଶଅଙ୍ଗୁଠିରେ ପିନ୍ଧିବା ମୁଦି । ମୁଖ ଶୋଭାବର୍ଦ୍ଧକ ନାସାଳଙ୍କାର ଭାବେ—ବସଣି, ନାକଚଣା, କଅପତର ନାକଚଣା, ଲେଉଟମୁହାଁ ନାକଚଣା, ମାଣିକ ଆଖି ନାକଚଣା, ସରୁ ନାକଚଣା, ଷୋଳବସା ନାକଚଣା, ମିନାବସା ନାକଚଣା, ମାଣିକ ନାକଚଣା, ବଉଳକୋଳି ନାକଚଣା, ଆମ୍ବକେରିଆ, ନାକୁଆସି, ମୁକୁତାଥୋପି, କମପଟି, ଖସାବସା, କମକାପ, ବସଣି, ନୋଥ, ଦଣ୍ଡି, ଷୋଳବସା ଦଣ୍ଡୀ ଇତ୍ୟାଦି । ପୁଣି ଚଉଁର, କମ ଚଉଁର, କଆପତରୀ, ଗଛଆଣି, ସରଳିଆ, ଘାସଚୂଳି, ଚନ୍ଦ୍ରଝୁମ୍ପା, ଅଳକାପାଟି, ଅଂଳାମଞ୍ଜିଆ, ଚଉଁରଝୁମ୍ପା, ଚଉଁରମୁଣ୍ଡି, ଗିଗିଡ଼ି, ମୁଗରେଖା, ପାନପତର, ଝଟ୍କାଠି, ମଥାମଣି ପ୍ରଭୃତି ଥିଲା କେଶ ଶୋଭାବର୍ଦ୍ଧକ ଅଳଙ୍କାର । ଏହାଛଡ଼ା କଙ୍କଣ, ବାଜୁବନ୍ଧ, କୁଣ୍ଡଳ, ସୁନାସୂତା ପ୍ରଭୃତି ପୁରୁଷୋପଯୋଗୀ ଅଷ୍ଟଧାତୁ ନିର୍ମିତ ଭୂଷଣ ସାମଗ୍ରୀ ମଧ୍ୟ ସମାଜରେ ଅଭାବ ନଥିଲା । ଦ୍ରବ୍ୟଗୁଡ଼ିକ ଏପରି ଢଙ୍ଗରେ ସଜାଇ ରଖାଯାଉଥିଲା ଯେପରି ଦୃଷ୍ଟି ପଡ଼ିବାମାତ୍ରେ ନାରୀସମାଜ ଲୋଭାକୃଷ୍ଟ ନହୋଇ ରହିପାରିବେ ନାହିଁ । ଅଳଙ୍କାର ପ୍ରତି ଆଗ୍ରହ ନାରୀଜାତିର ସର୍ବାପେକ୍ଷା ପ୍ରବଳ । ଅଳଙ୍କାର ମଣ୍ଡିତା ନହେଲେ ରମଣୀ ବିଶେଷତଃ କଳିଙ୍ଗ ରମଣୀର ମନ ଅବସନ୍ନ ହୋଇପଡ଼େ । ଏବେ ସୁଦ୍ଧା କଳିଙ୍ଗ ନାରୀ ମନରୁ ଅଳଙ୍କାର ମୋହ ସମ୍ପୂର୍ଣ୍ଣ ତୁଟିନାହିଁ । ଏବେ ସୁଦ୍ଧା ସଂଗତିସମ୍ପନ୍ନ ଅଭିଜାତ ପରିବାରରେ ସଂଚିତ ଅଳଙ୍କାରମାନ ପର୍ବପର୍ବାଣି ଦିନରେ କୁଳରମଣୀମାନେ ଧାରଣ କରୁଥିବା ଦୃଷ୍ଟିଗୋଚର ହୁଏ । ଅନ୍ୟପକ୍ଷେ ସ୍ତ୍ରୀସମାଜ ରୌପ୍ୟାଳଙ୍କାର ବ୍ୟବହାର

କରିବାକୁ ମଧ୍ୟ କୁଣ୍ଠିତ ନଥିଲେ । ଅଳଙ୍କାରଗୁଡ଼ିକ ଯେ ଖାଣ୍ଟି ସ୍ୱଦେଶୀବସ୍ତୁ ଥିଲା ସେଥିରେ ସନ୍ଦେହ କରିବାର କାରଣ ନାହିଁ । ନାମକରଣରୁ ତାହା ପ୍ରତିପାଦିତ ହୁଏ । ପଦାର୍ଥବିନା ନାମକରଣ ସମ୍ଭବ ନୁହେଁ ଏବଂ ନାମରୁ ପଦାର୍ଥର ସତ୍ତା ସ୍ୱୀକୃତ ହୁଏ । ସୁତରାଂ ଅଳଙ୍କାରଗୁଡ଼ିକ ଦେଶୀ ଭାଷାରେ ସଙ୍କେତିତ ହେବାଯୋଗୁ ତାହା ସ୍ମରଣାତୀତ କାଳରୁ ଦେଶରେ ପ୍ରଚଳିତ ଥିବା ନିଃସନ୍ଦେହ । ପୁନଶ୍ଚ ଦେବଦେବୀଙ୍କ ବେଶରଚନା ଏବଂ ସ୍ତ୍ରୀ-ପୁରୁଷଙ୍କ ଦୈନିକ ପରିଚ୍ଛଦ ପରିଧାନ କାଳରେ ପରମ୍ପରା କ୍ରମେ ସେଗୁଡ଼ିକର ଉପଯୋଗ ହୋଇ ଆସୁଛି । ନୃତ୍ୟାଙ୍ଗନାମାନେ ଉଲ୍ଲିଖିତ ଅଳଙ୍କାର ଦ୍ୱାରା ସର୍ବାଙ୍ଗ ମଣ୍ଡିତ ହୋଇ ଅଭିନୟ ପ୍ରଦର୍ଶନ କରିବା ବିଧି ଅଦ୍ୟାପି ପ୍ରଚଳିତ । ସୁନାରି ସମାଜରେ ଏବେ ସୁଦ୍ଧା ଏପରି ଦକ୍ଷ କାରିଗର ଅଛନ୍ତି, ଯେଉଁମାନେ ସେଗୁଡ଼ିକୁ ଅକ୍ଳେଶରେ ପ୍ରସ୍ତୁତ କରିପାରନ୍ତି । ଏଣୁ ସେ ସବୁ ପ୍ରାଚୀନ କଳିଙ୍ଗର ଜାତୀୟ ବେଶଭୂଷାର ଅଙ୍ଗବିଶେଷ ଥିଲାବୋଲି ଅନାୟାସରେ କୁହାଯାଇପାରେ ।

**ବେଶଭୂଷା**—ଅଳଙ୍କାର ସଦୃଶ ବେଶପୋଷାକ ମଧ୍ୟ ଜାତୀୟ ସଭ୍ୟତାର ଅନ୍ୟତମ ନିଦର୍ଶନ । ଜାତିମାନେ ଜାତୀୟ ପରିଚ୍ଛଦ ଓ ପରିଧାନ ପରିପାଟୀରେ ବିଶେଷତ୍ୱ ଥାଏ ଏବଂ ତଦନୁସାରେ ଦେଶର ବସ୍ତ୍ରଶିଳ୍ପ ଗଢ଼ିଉଠେ । ପାରମ୍ପରିକ ଭାବରେ ପ୍ରଚଳିତ ବେଶ-ପୋଷାକ ଅନୁଧ୍ୟାନ କଲେ ଜଣାପଡ଼େ ଯେ ସେକାଳ କଳିଙ୍ଗର ବସ୍ତ୍ର ଶିଳ୍ପ କିପରି ଚରମ ସୀମାକୁ ସ୍ପର୍ଶ କରିଥିଲା । ତା'ନହେଲେ ଦ୍ୱୀପଦ୍ୱୀପାନ୍ତରରେ ଏହା ଏତେ ଉଚ୍ଚପ୍ରଶଂସିତ ହୋଇନଥାନ୍ତା । ବର୍ତ୍ତମାନ ସୁଦ୍ଧା ସ୍ୱଦେଶୀ ବସ୍ତ୍ରଶିଳ୍ପଜାତ ଅସଂଖ୍ୟ ପଦାର୍ଥ ମଧ୍ୟରୁ ନିମ୍ନଲିଖିତ ବସ୍ତ୍ର ସମୂହ ସମ୍ପୂର୍ଣ୍ଣଭାବେ ଲୋପପାଇ ନାହିଁ । ସେଗୁଡ଼ିକ ହେଉଛି—କାଣ୍ଟିଆ, ଶାଢ଼ି, କବୁରି, ଓଢ଼ଣୀ, ଚାଦର, ଥାନ, ଲହରିଆ ଥାନ, ଝିନଥାନ, ଖସାଥାନ, କସିଦା ଥାନ, ନାନା ରଙ୍ଗର ମଠା, ବନାତ, ଆତଲସ, କୋତନି, ଝିଲିମିଲି ଚନ୍ଦ୍ର ବିଚନ୍ଦ୍ର ଛିଟ ପାଗ, ଜରିପାଗ, ପାଟସୂତା, ଫେଟା, ଗାମୁଛା, ପାଛୁଡ଼ା, ଖଦିଲୁଗା, ଚନ୍ଦ୍ରବାଣ, ନକ୍ଷତ୍ରଭୂଷଣ, ଚନ୍ଦ୍ରା, ମନାଙ୍ଗପଢ଼, ବାଳଗ୍ରାମପଢ଼, ପୁରସ୍ତମ ପଢ଼, ପିଲପଢ଼, କୁମ୍ଭପଢ଼, ବଉଳବାନ୍ଧ, ବସନ୍ତବାନ୍ଧ, କଳାବାନ୍ଧ, ବେଲ୍ଲିବାନ୍ଧ, ନାଗବନ୍ଧ, ହରଗଉରି, ଗଙ୍ଗା ଯମୁନା, ରାଜେନ୍ଦ୍ର ପଢ଼, ନକ୍ଷି, ଉନଗାର, ଦୋତାରି, ଚନ୍ଦନପାଟିଆ, ପାଟଚୁଡ଼ିଆ, ସାନ୍ତାପଢ଼, ଜରିଧଡ଼ିଆ, ସବୁମୋଟା ଖାପ, ଦାସାରି, ଫୁଲପଡ଼ା, କଳାକାଉ ମୁହିଁ, ମଦାର ଧୋତି, ରଙ୍ଗଖଦି, କାଣ୍ଡନାହାଲ, ତରିଆବାନ୍ଧ, ପଟାଚଉଁରି, ଚଉଁରି, ଶଙ୍ଖାମୁଠିଆ, ଆଖୁପତରିଆ ପ୍ରଭୃତି । ଏଗୁଡ଼ିକ ସ୍ତ୍ରୀ-ପୁରୁଷ ଉଭୟଙ୍କ ମନଲାଖି ଥିଲା । ଡେରା ଓ ତନ୍ତୀ କୁଳଦ୍ୱାରା ପ୍ରସ୍ତୁତ ଉକ୍ତ ବସ୍ତ୍ରସମୂହ ହାଟ ପସରାରେ ବିକି ହେଉଥିଲା ବୋଲି ଜନଶ୍ରୁତି କହେ । ଅବଶ୍ୟ ଯୁଦ୍ଧପୂର୍ବ କଳିଙ୍ଗରେ ଏ ସବୁର ଅସ୍ତିତ୍ୱ ଥିଲା କି ନାହିଁ କିମ୍ବା କେତେ ପରିମାଣରେ ଥିଲା କହି ନ ହେଲେ ସୁଦ୍ଧା ପରାଧୀନ ଅବସ୍ଥାରେ ଯଦି ଏତେ ପ୍ରକାର ପରିଧେୟର ପ୍ରଚଳନ ଦୃଷ୍ଟ ହୁଏ, ତେବେ ଭାଗ୍ୟଲକ୍ଷ୍ମୀ ପ୍ରସନ୍ନ କାଳରେ ତାହା କେଉଁ

ସୀମାକୁ ସ୍ପର୍ଶ କରିଥିବ ସହଜେ ଅନୁମେୟ । କିନ୍ତୁ ଏ ସମ୍ପର୍କରେ କୌଣସି ସଙ୍କେତ ପ୍ରାଚୀନ ରଚନାରୁ ମିଳେନାହିଁ—ବେଦ, ବ୍ରାହ୍ମଣ୍ୟ ଉପନିଷଦ୍, ସୂତ୍ର, ଆରଣ୍ୟକ, ପୁରାଣକାବ୍ୟ, ଜୈନଗ୍ରନ୍ଥ ବୌଦ୍ଧଗ୍ରନ୍ଥ ସମସ୍ତେ ନୀରବ । ପ୍ରସଙ୍ଗକ୍ରମେ ଯଦିଓ ସ୍ଥାନେ ସ୍ଥାନେ କଳିଙ୍ଗର ନାମୋଲ୍ଲେଖ ରହିଛି,ତଥାପି ତାହାର ଆଭ୍ୟନ୍ତରୀଣ ଚିତ୍ର ଆଦୌ ଦେଖିବାକୁ ମିଳେନାହିଁ । ଏହାର କାରଣ ବୋଧହୁଏ ଗ୍ରନ୍ଥଗୁଡ଼ିକ ଉତ୍ତରାପଥରେ ଲିଖିତ ହେବା ଯୋଗୁ ଅଗମ୍ୟ ବନବେଷ୍ଟିତ କଳିଙ୍ଗ ରାଜ୍ୟର ରୀତିନୀତି, ଲେଖକମାନଙ୍କ ଚକ୍ଷୁଗୋଚର ହୋଇପାରି ନଥିଲା, କିମ୍ବା ସେ ଏକ ଗର୍ହିତ ମ୍ଳେଛ୍ଛ ଦେଶ ଥିବାଯୋଗୁ ତଦୀୟ ଆଚାର-ବିଚାର ଅନୁଲ୍ଲେଖ୍ୟ ମନେକରାଯାଇଥିଲା । ପୁନଶ୍ଚ ଇତର ଧର୍ମ ପ୍ରତି ଉଦାସୀନତା କଳିଙ୍ଗବାସୀଙ୍କୁ ଅନ୍ୟଠାରୁ ବିଚ୍ଛିନ୍ନ କରି ରଖିବା ଫଳରେ କଳିଙ୍ଗର ସଭ୍ୟତା, ସଂସ୍କୃତି, ରୀତିନୀତି, ସାମାଜିକ ବିଧି ବିଧାନର ବର୍ଣ୍ଣନା କୁତ୍ରାପି ଲିଖିତ ହୋଇନାହିଁ । ତା'ବୋଲି ତାହା ନିତାନ୍ତ ଅବହେଳନୀୟ ଥିଲା କହିବା ସମୀଚୀନ ନୁହେଁ; କାରଣ ବର୍ତ୍ତମାନ ପ୍ରଚଳିତ ଲୋକାଚାର, କୁଳପ୍ରଥା, ପରଂପରା ରୂପ ସାମାଜିକ ଚଳଣିର ସୂତ୍ରଧରି ସୂକ୍ଷ୍ମାନୁଶୀଳନ କଲେ ପ୍ରାଗୈତିହାସିକ କଳିଙ୍ଗରେ ଯେ ଏକ ମହାନ୍ ସଭ୍ୟତା ଗଢ଼ିଉଠିଥିଲା ତାହାର ସ୍ପଷ୍ଟ ଚିତ୍ର ଜଣାପଡ଼େ ।

**ଫୁଲ**—ନାରୀ ସମାଜର ଆଚରଣ ସଭ୍ୟତାର ଅନ୍ତଃସ୍ୱର । ସେହି ପରିପ୍ରେକ୍ଷୀରେ ବିଚାର କଲେ କଳିଙ୍ଗ ରମଣୀର ସ୍ୱଭାବଗତ ଆଚରଣ ଅନନ୍ୟସାଧାରଣ । ବିଭ୍ରମ ଓ ବିଳାସ ତାର ଏକାନ୍ତ ସହଚର । ସେ ଯେପରି ଆଭରଣପ୍ରିୟା, ସେହିପରି ଫୁଲରସିକା । ଫୁଲ ନ ହେଲେ ତାର ସିଂଗାର ଅସଂପୂର୍ଣ୍ଣ । ମଣିମୁକ୍ତା ଖଚିତ ସ୍ୱର୍ଣ୍ଣାଭରଣ ଭୂଷିତା ପୁର ରମଣୀ ଯେପରି ମସ୍ତକରେ ଫୁଲମାଳ ପିନ୍ଧି ଆନନ୍ଦ ଅନୁଭବ କରେ, ସେହିପରି ସାଧାରଣ କୁଳଯୁବତୀମାନେ ପୁଷ୍ପମଣ୍ଡିତ କେଶଗୁଚ୍ଛଦ୍ୱାରା ଶରୀରର ଶୋଭା ବଢ଼ାଇଥାନ୍ତି । କହିବାକୁ ଗଲେ କଳିଙ୍ଗର ନାରୀ ସମାଜ ଅତିମାତ୍ରାରେ ପୁଷ୍ପପ୍ରିୟ । ସେଥି ସକାଶେ ଫୁଲ ଗୁନ୍ଥି ମାଳ ଯୋଗାଇବା ଏକ ନିର୍ଦ୍ଦିଷ୍ଟ କୁଳର ବୃତ୍ତି ଥିଲା । 'ମାଳୀ' ଓ 'ମାଳୁଣୀ'ମାନଙ୍କର ତାହା ଥିଲା ସ୍ୱତନ୍ତ୍ର ଜୀବିକା । କୁଳାଙ୍ଗନା ଓ ନବବଧୂମାନେ ପସନ୍ଦ ଅନୁଯାୟୀ କେଶ, କର୍ଣ୍ଣ, କଣ୍ଠ, ହସ୍ତ, ବାହୁ, କଟିରେ ପୁଷ୍ପ ମଣ୍ଡିତ ହୋଇ ଅଙ୍ଗଲାବଣ୍ୟକୁ ଲୋଭନୀୟ ରଖୁଥିଲେ । ଏବେ ବି କଳିଙ୍ଗର ପାର୍ବତ୍ୟ ଓ ଆରଣ୍ୟକ ଯୁବତୀ ସମେତ ପାଟକ ରମଣୀ ମଧ୍ୟରେ ସେହି ପ୍ରଥା ଉଣା ଅଧିକେ ବିଦ୍ୟମାନ । ଏବେସୁଦ୍ଧା କଳିଙ୍ଗରେ ପଚାଶରୁ ଊର୍ଦ୍ଧ୍ୱ କିସମର ସୁବାସିତ ଫୁଲ ବ୍ୟବହୃତ ହୋଇ ଆସୁଥିବା ଦେଖାଯାଏ । ସେ ମଧ୍ୟରୁ କେତୋଟି ଆଦରଣୀୟ ଫୁଲର ନାମ ଦିଆଗଲା—ଦମୟଣା, ଜାଇ, ଯୂଈ, ମଲ୍ଲୀ, ମାଳତୀ, ନିଅଳୀ ମାଧବୀ, ଅଶୋକ, ଚମ୍ପା, ନାଗେଶ୍ୱର, କୁରଅନା, ଇଟାଳି, ଦାସକେରଣ୍ଡା, ମରୁଆ, କୁନ୍ଦ, ବାର୍ହାଦାନ୍ତି, ପାଟଳି, ପାରିଜାତ, ଗଙ୍ଗଶିଉଳି, ରଜନୀଗନ୍ଧା, ଟଗର, ତଗରଟ, କଂଚଣ, ତୋରା, ବଧୂଲି, ମନ୍ଦାର, କର୍ଣ୍ଣି, କେତକୀ, କିଆ, ରଙ୍ଗଣୀ, ପୁନ୍ନାଗ, ବଉଳ, କନିଅର, ତ୍ରିପୁର, କଣ୍ଟା ସେବତୀ, ସେବତୀ, ବସନ୍ତ, ପଦ୍ମ, ତରଟ, ଖଗୁଡ଼ି ଇତ୍ୟାଦି ।

ଏସବୁ ଦେଖିଲେ ଫୁଲ ସଭ୍ୟତା କଳିଙ୍ଗର ଏକ ପ୍ରାଚୀନ ଐତିହ୍ୟ ବୋଲି ଜଳଜଳ ଦିଶେ ।

**ଉପକରଣ**—ଏହାଛଡ଼ା ସମାଜ ଚଳଣିର ଉପଯୋଗୀ ଉପକରଣମାନ ମଧ୍ୟ ସଭ୍ୟତାର ଅନ୍ୟତମ ପରିମାପକ । ଉପକରଣଗୁଡ଼ିକ ଖାଣ୍ଟି ସ୍ୱଦେଶୀ ଏବଂ ଦେଶ୍ୟ ଶବ୍ଦଦ୍ୱାରା ଚିହ୍ନିତ ଥିଲା । ପଦାର୍ଥ ଦେଶୋତ୍ପନ୍ନ ନହେଲେ ଦେଶ୍ୟ ନାମରେ ନାମିତ ହେବା ସମ୍ଭବ ନୁହେଁ । ସୁତରାଂ ନିମ୍ନୋକ୍ତ ବସ୍ତୁଗୁଡ଼ିକ ଆରମ୍ଭ କାଳରୁ ସମାଜରେ ବ୍ୟବହୃତ ହୋଇ ଆସୁଥିଲା ବୋଲି ନିଃସନ୍ଦେହରେ କୁହାଯାଇ ପାରେ—କୋଦାଳ, ବାଉସି, ନିହାଣ, ଘୂଆର, ପେଲା, ଫେଡ଼ଣି, ତାକୁଡ଼ି, ଟେଲା, ପାଞ୍ଚଣ, ମୁଣ୍ଡା, ବାକୁଲି, ସିଆର, ପେସି, ଅଗାଡ଼ି, ଖଳା, ବାଲୁଙ୍ଗା, ଗରଗଡ଼, ପାହୁରଣି, ଭଉଣ୍ଡି, ଓଳିଆ, ଡୋଲି, ମସିଣା, ଖୁଣ୍ଟା, କରେଇ, କାହାଳୀ, ହାଣ୍ଡି, ମାଠିଆ, ତେଲଉଣି, ଲୋଟା, ଡାଲ, କୁମ୍ପା, କୁଞ୍ଚା, ଚଟୁ, ତଙ୍କ, ଘୂଆ, ଡାଲ, ଡଅଣ, କଡ଼ି, ଟପକ, ପରବା, ପହ୍ଳା, ଦହୁଡ଼ି, ବାହୁଙ୍ଗି, ଶିକା, ଛେଣି, କୋଇ, ବଟାଳି, ବାଖର, ଫାଲି, ବୋଡ଼ା, ସୋଲ, ଗଉଣି, ପୁଟି, ଗଡ଼ଶା, ପିଣ୍ଡା, ଚଢ଼ୁଆ, କାଙ୍କ, ଡାମ୍ପଣ, ନଉଡ଼ି, ଟୋକେଇ, ଖେଗେଇ, ଛୁଞ୍ଚିକ, ଅଣକ, ଗୁଙ୍ଗୁଡ଼ି, ଡୁବେଇ, ତାଟିଆ, କୁଡ଼ୁଆ, ବଡ଼ା, ଗିନା, ଡୋରଣି, ବାଟୁଲି, ତାବଲା, ବାସିନ, ଦହୁଡ଼ି, ଲଲୁଆ, ବଟା, ଚ୍ଛ ଛପା, ପଟି, ତାଟି, ଗଜା, ଗୋଜା, କୁଣ୍ଡା, ହୁଡ଼ା, ପନିକ, ଡଙ୍ଗର, ଗୁର୍ଜି, ବଲା, ଖାଲ, ଖୋଲ, ଡାଙ୍ଗ, ଝାଟି, ଗୋଟି, କୋଡ଼ି, ଥୋବଣି, ଗଲ, ପାରୁସ, ଲଖ, ମରେଇ, ନକା, ଷଡ଼ଡ଼ା, ବାନା, ଛୁଟି, ପଗ, ମେଢ଼, ଫଡ଼ିଆ ପ୍ରଭୃତି । ଏହା ବ୍ୟତୀତ କଡ଼ି, କାଟୁ, ଗାଣ୍ଡୁ, ଟାପରା, ଟିକଲି, ପାଇଟି, ହାଲିଆ, ଭେଣ୍ଡା, ଦଣ୍ଡା, ପୋଡ୍ଡୁ, ପାଳ, ପଢ଼ ପ୍ରଭୃତି ଗୁଣବାଚକ ଓ କ୍ରିୟାବାଚକ ବହୁ ଶବ୍ଦ ରହିଛି, ଯାହା ନାମରେ ଉଲ୍ଲେଖ କରିବା ସହଜ ନୁହେଁ, ସେଥିପାଇଁ ସ୍ୱତନ୍ତ୍ର ଗବେଷଣା ଆବଶ୍ୟକ ।

ତା'ଛଡ଼ା ପୁରୀ ବଡ଼ଦେଉଳରେ ପ୍ରଚଳିତ ଶ୍ରୀଜଗନ୍ନାଥଙ୍କ ପୂଜା ସେବା ସମ୍ବନ୍ଧୀ ଶବ୍ଦ; ଯଥା—ମଇଲମ, ମେକାପ, ଗରା, ଖଟଣି, ଅହୁଣିଆ, ମଢ଼ିଆଲ, ଛେଳୀ, ଆକଟ, ଆଡ଼ପ, ଗୁମୁଟ, ସଖୁଡ଼ି, ଖଙ୍ଗଡ଼ା, ଟେରା, ଖଡ଼ିକା, ଠିଙ୍ଗଣ, ହଡ଼ପ, ମଣୋହି, ବେଣ୍ଟ, ବଇଡମ, ଝାଞ୍ଜ, ପହଣ୍ଡି, ବାହୁଡ଼ା, ସୁଆଁସ, ଓଳମ, ନାକୁଆସି, ଗୃପ ଘାଟ, କୋଠ, ଧାଣ୍ଡୁରା, ନଡ଼ପ, ହଡ଼ପ ପ୍ରଭୃତି ଅସଂଖ୍ୟ ଶବ୍ଦ ରହିଛି, ଯାହା କୋଷ ଗ୍ରନ୍ଥରେ ଥିଲେ ସୁଦ୍ଧା ଅଧିକାଂଶ ଲୋକମୁଖରେ ପ୍ରଚଳିତ ନୁହେଁ । ଅପର ପକ୍ଷରେ ଓଡ଼ିଶାର ଆନ୍ଧ୍ର ସୀମାର ତେଲଙ୍ଗି ଭାଷାଭାଷୀଙ୍କ ମୁହଁରେ ଏ ମଧ୍ୟରୁ ବହୁଶବ୍ଦ ବ୍ୟବହୃତ ଯାହା 'କାଲିଙ୍ଗୀ-ଉପଭାଷା' ବା 'କଳିଙ୍ଗା ଡାଇଲେକ୍ଟ' ନାମରେ ଆନ୍ଧ୍ର ଭାଷାରେ ସ୍ୱୀକୃତି ଲାଭ କରିଛି ।

**ଭାଷା**—ଭାଷାବିତ୍‌ମାନଙ୍କ ମତରେ ଓଡ଼ିଆରେ ଚାରିପ୍ରକାର ଶବ୍ଦ ରହିଛି—ତତ୍ସମ, ତଦ୍‌ଭବ, ବୈଦେଶିକ ଓ ଦେଶ୍ୟ । ଅପରିବର୍ତ୍ତିତ ସଂସ୍କୃତ ଶବ୍ଦ 'ତତ୍ସମ' ପରିବର୍ତ୍ତିତ ହେଲେ ତଦ୍‌ଭବ । ମସ୍ତକ, ହସ୍ତ, କର୍ଣ୍ଣ ଏବଂ ମଥା, ହାତ, କାନ ଯଥାକ୍ରମେ ଏହାର ଉଦାହରଣ । ଦଲିଲ୍, ସରକାର, ପେନ୍‌ସିଲ୍ ପ୍ରଭୃତି ଶବ୍ଦ ତୃତୀୟ ଶ୍ରେଣୀର । ଯା' ବ୍ୟତୀତ

ଆଦି ଯେତେସବୁ 'ଦେଶ୍ୟ' । ସେହି ନିୟମରେ ଦେଖିଲେ ପୂର୍ବୋକ୍ତ ଶବ୍ଦମାନ ପୁରାପୂରି ଦେଶ୍ୟ—ଅର୍ଥାତ୍ କଳିଙ୍ଗ ଦେଶର ନିଜସ୍ୱ ଶବ୍ଦ । 'ଓଡ୍ର' କଳିଙ୍ଗର ନାମାନ୍ତର ଥିବାଯୋଗୁ ନାଟ୍ୟଶାସ୍ତ୍ରରେ ତାହା 'ଓଡ୍ରଜା' ନାମରେ ଅଭିହିତ । ଏହା ବୋଧହୁଏ ଅଶୋକଙ୍କ ଦ୍ୱାରା ଖୋଦିତ ଖଣ୍ଡଗିରି ଓ ଜଉଗଡ଼ ଶିଳାଲେଖ୍ୟର ଭାଷା । ଭାଷାବିଜ୍ଞାନୀ ଓଲ୍‌ଡନ୍ ବର୍ଗ ଓ ମଲ୍ଲର ଉଭୟେ ଖଣ୍ଡଗିରିର ଶିଳାଲେଖୀ ଭାଷା ସହିତ ପାଲିଭାଷାର ତୁଳନାତ୍ମକ ବିଗ୍ରହ କରି କହିଛନ୍ତି—''ପାଲି' କଳିଙ୍ଗର ଭାଷା । ସେ ଦୁଇଭାଷା ମଧ୍ୟରେ ବ୍ୟବଧାନ ଏତେ ନଗଣ୍ୟ ଯେ 'ପାଲି'କୁ 'କାଳିଙ୍ଗୀ' ଛଡ଼ା ଅନ୍ୟ କିଛି କୁହାଯାଇନପାରେ । ତାହା ସିଂହଳକୁ ଯାଇ ବୌଦ୍ଧ 'ତ୍ରିପିଟକ'ର ଭାଷାରୂପେ ପ୍ରସିଦ୍ଧି ଲାଭ କରିଥିଲା । ପାଲି ସେ ଭାଷାର ଅର୍ବାଚୀନ ନାମକରଣ । ତେଣୁ 'ତ୍ରିପିଟକ'ର ଭାଷା ଏବଂ କଳିଙ୍ଗର ଦେଶ୍ୟ ଭାଷା ଦୁଇଟି ଅଭିନ୍ନ ବୋଲି କୁହାଯାଇ ପାରେ ।'' କିନ୍ତୁ ବର୍ତ୍ତମାନ ମିଳୁଥିବା 'ତ୍ରିପିଟକ' ମୂଳ ଗ୍ରନ୍ଥର ଅନ୍ୟତମ ସଂସ୍କରଣ ଥିବାହେତୁ ସେଥିରେ କେତେକ ପରିବର୍ତ୍ତନ ଦୃଷ୍ଟ ହୁଏ । ପ୍ରଫେସର୍ ସ୍ୱର୍ଗତ ପ୍ରହ୍ଲାଦ ପ୍ରଧାନ ପ୍ରଚଳିତ ଓଡ଼ିଆ ଓ ପାଲିଭାଷା ମଧ୍ୟରେ ଭାଷାତାତ୍ତ୍ୱିକ ପଦ୍ଧତି ଅନୁଯାୟୀ କିପରି ଘନିଷ୍ଠ ସାମଞ୍ଜସ୍ୟ ରହିଛି, ତାହା 'ପାଲି ଧମ୍ମପଦ' ଗ୍ରନ୍ଥରେ ସ୍ପଷ୍ଟ ଦର୍ଶାଇଛନ୍ତି । ତା'ଛଡ଼ା ନାଟ୍ୟଶାସ୍ତ୍ରୋକ୍ତ 'ଓଡ୍ରଜା' ଥିଲା କଳିଙ୍ଗର ଭାଷା ଏବଂ 'ତୋଷଳି' ଓ 'ସମାପ'ର ଶିଳାଲେଖଦ୍ୱୟ ସେହି ଭାଷାରେ ଖୋଦିତ ହୋଇଥିଲା ବୋଲି ମଦ୍ଲିଖିତ 'ଓଡ୍ରଜା ପ୍ରାକୃତ' ଗ୍ରନ୍ଥରେ ପ୍ରତିପାଦିତ ହୋଇଅଛି । ପରବର୍ତ୍ତୀ କାଳରେ 'ମାଗଧୀ' ପ୍ରଭାବିତ ହୋଇ ତାହା 'ଔଡ୍ରୀ' ନାମ ଧାରଣ କରିଥିଲା । ତେଣୁ ପ୍ରାକୃତସର୍ବସ୍ୱକାର 'ହିଂ ଯୁକ୍ତା କାଳିଙ୍ଗୀ' ଏବଂ 'ଇକାରେକାର ବହୁଳା ଔଡ୍ରୀ' ବୋଲି ଦୁଇଟିର ସ୍ୱତନ୍ତ୍ର ଉଲ୍ଲେଖ କରିଛନ୍ତି । କିନ୍ତୁ 'ଔଡ୍ରୀ' ଭାଷାର ଲକ୍ଷଣ ଦେବାକୁ ଯାଇ କହିଛନ୍ତି—'ଶାବର୍ଯାମେବୌଡ୍ରୀ ଯୋଗାଦ୍‌ଦେଶ୍ୟ ଶୌରସେନ୍ୟାଦେଃ', ଅର୍ଥାତ୍ ଦେଶ ପ୍ରଚଳିତ ଶବ୍ଦ ଓ ଶୌରସେନୀ ଆଦି ଶବ୍ଦଯୁକ୍ତ 'ଶାବରୀ' ଭାଷାର ନାମ 'ଔଡ୍ରୀ' । 'ଶାବରୀ' ଭାଷା ସମ୍ବନ୍ଧୀ ସୂଚନା ଆଗରୁ ଦିଆଯାଇଛି ଏବଂ କୁହାଯାଇଛି ତାହା ଏକ ଦୁର୍ବଳ ଭାଷା ଥିଲା । ସବଳର ଅନୁ ପ୍ରବେଶଦ୍ୱାରା ଦୁର୍ବଳ ନିସ୍ତେଜ ହେବା ସାଧାରଣ ନିୟମ । ତେଣୁ ଉପକୂଳବାସୀ 'ଓଡ୍ର' ସମାଜର ମଞ୍ଜୁଳ ଶବ୍ଦାବଳୀ ଏବଂ ସୌରସେନୀ ବା ଅର୍ଦ୍ଧ ମାଗଧୀ (ସୌରସେନ୍ୟା ଅଦୂରତ୍ୱାଦସ୍ୟା ମେବାର୍ଦ୍ଧ ମାଗଧୀ ବୋଲି କଥିତ) ଶୈଳୀ ଦ୍ୱାରା ସଂକୁଚିତ ଦୁର୍ବଳ ଶାବରୀ ଭାଷା ଆତ୍ମସତ୍ତା ହରାଇବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବର୍ତ୍ତମାନର ଓଡ଼ିଆ ଭାଷା ତାହାର ହିଁ ଘଟାନ୍ତର ବୋଲି ଭାଷାତାତ୍ତ୍ୱିକ ଅନୁଶୀଳନରୁ ପ୍ରମାଣିତ ହୁଏ । ସେହି ଦୃଷ୍ଟିରୁ ବୋଧହୁଏ 'ପ୍ରାକୃତ ସର୍ବସ୍ୱକାର' ଔଡ୍ରୀ ଓ କାଳିଙ୍ଗୀ ଉଭୟର ସ୍ୱରୂପଗତ ପାର୍ଥକ୍ୟ ଦର୍ଶାଇଛନ୍ତି ।

ପୂର୍ବୋକ୍ତ ଅଳଂକାର, ବେଶଭୂଷା ଓ ପଦାର୍ଥବାଚକ ଶବ୍ଦାବଳୀ ଏହି ପ୍ରଣାଳୀରେ ସମୀକ୍ଷା କଲେ କଳିଙ୍ଗର ଭାଷା କେତେଦୂର ଭାବ ପ୍ରକାଶନକ୍ଷମ ଥିଲା ସହଜେ ଅନୁମାନ

କରନ୍ତୁଏ । ପ୍ରୟୋଜନୀୟ ଶବ୍ଦ ଓ କ୍ରିୟାପଦର ଅର୍ଥବଶ ସଂଯୋଜନାରେ ଭାଷା ଗଠିତ ହୁଏ । ଯେଉଁ ଭାଷାରେ ଏ ଦୁଇଟିର ସଂଖ୍ୟା ଯେତେ ଅଧିକ ତାହା ସେତିକ ଉନ୍ନତ ବୋଲି ସ୍ୱୀକୃତ । ସେ ଦୃଷ୍ଟିରୁ ଦେଖିଲେ କଳିଙ୍ଗରେ କେତେ ଯେ ଶବ୍ଦ ଓ କ୍ରିୟାପଦ ପ୍ରଚଳିତ ଥିଲା କଳନା କରନ୍ତୁଏ ନାହିଁ । ଶବ୍ଦ ସମ୍ବନ୍ଧୀ କଥିତ ସୂଚନା ଆଗରୁ ଦିଆଯାଇଛି । ବର୍ତ୍ତମାନ କେତୋଟି ପ୍ରସିଦ୍ଧ କ୍ରିୟାପଦର ନମୁନା ତଳେ ଦିଆଗଲା । ଅନେଇବା, ଆଉଜିବା, ଉଚ୍ଛୁଳେଇବା, ଗୋଡ଼େଇବା, ଚକଟିବା, ଡେଇଁବା, ଖଡେଇବା, ଝିଙ୍କିବା, ପେଲିବା, ଠେଲିବା, କୋଡ଼ିବା, ପହଁରିବା, ପୋଛିବା, ସଢ଼ିବା, ଥୁମ୍ପିବା, ଠୁଙ୍କିବା, ଧସେଇବା, ଜଗିବା, ଖଟିବା, ଭୁକିବା, ଘାଣ୍ଟିବା, ଫେଣ୍ଟିବା, ବାହୁଡ଼ିବା, ବୁଲିବା, ଡାଳିବା, ଝାଳିବା, ଟେକିବା, ବୁଡ଼ିବା, ବାଛିବା, ଲୋଡ଼ିବା, ଚମୁଟିବା, କାମୋଡ଼ିବା, ମଳିବା, ପୋଡ଼ିବା, ଖୋଷିବା, ଗୁଞ୍ଚିବା, ପୁଞ୍ଜିବା, ହେଜିବା, ବୁଜିବା, ମେଲିବା, ଛୋଲିବା, କାଢ଼ିବା, ହଗିବା, ଗୁମ୍ପିବା, ପରସିବା, ହଲେଇବା, ପିଟିବା, ଗୁଣିବା, ଫେଣ୍ଟିବା, ଡାକିବା, ଝାଟେଇବା, ଡେଇଁବା, ନାଚେଇବା, ତୋଳିବା, ଚଢ଼ିବା, ଝୁଣ୍ଟିବା, ବାଣ୍ଟିବା, ଖେଣ୍ଟିବା, ଚୁଣ୍ଟିବା, ଖୁଣ୍ଟିବା, ଲୁଇବା, ଗପିବା, ଝୁଣିବା, ମାଠିବା, ଝଡ଼ିବା, ଗୁହିବା, ଛେଚିବା, ବାଡ଼େଇବା, ପାଲଟିବା ଇତ୍ୟାଦି ସହିତ ଠେଲାପେଲା, ପାଇଟି-ଭୁଆଡ଼, ଲୋଡ଼ା-ଆଡ଼ା, ଖଗଖାଣ୍ଡି, ଆଲାଖଲା, ଡାକ-ହାକ, ବଲବାଡ଼ି ପ୍ରଭୃତି ଯୁଗ୍ମ ଶବ୍ଦମାନଙ୍କର ପ୍ରୟୋଗ କମ୍ ନଥିଲା । ସେତିକ ନୁହେଁ, ଅନୁନାସିକ ଯୋଗେ ଶବ୍ଦାର୍ଥ ଭେଦ—ଯାହାକ ଅନ୍ୟଭାଷାରେ ପ୍ରାୟ ଦେଖାଯାଏ ନାହିଁ ତାହାର ଦୃଷ୍ଟାନ୍ତ ମଧ୍ୟ ବିରଳ ନଥିଲା । ଯଥା—

ପହରିବା—ଝାଡ଼ୁଦେବା, ପହଁରିବା—ପାଣିରେ ଭାସିବା, ଛାଡ଼ିବା—ଭାଗ ହେବା, ଛାଣ୍ଡିବା—ଚମୁଟିବା, କୁଣ୍ଡେଇବା—କେଶ ସଜାଡ଼ିବା, କୁଣ୍ଡେଇବା—ସଲସଲ ଲାଗିବା କାଢ଼ିବା—ବାହାର କରିବା, କାଣ୍ଡିବା—ଧାନରୁ ଚୋପା ଛଡ଼େଇବା, ଲୁଡ଼ିବା—ଖୋଜିବା, ଲୁଣ୍ଡିବା—ଗୋଟେଇବା, କୁଢ଼େଇବା—ଗଦାକରିବା, କୁଣ୍ଢେଇବା—କୋଳେଇ ଧରିବା ଇତ୍ୟାଦି ।

ଉଲ୍ଲିଖିତ ପଦ ସମୂହ ତତ୍ସମ, ତଦ୍ଭବ କିମ୍ବା ବୈଦେଶିକରୁ ଭିନ୍ନ ଖାଣ୍ଟି ଦେଶଜ ଶବ୍ଦ । ଅତଏବ ଭାଷା ଦିଗରୁ ଦେଖିଲେ ସୁଦ୍ଧା କଳିଙ୍ଗର ସଭ୍ୟତା ଅତ୍ୟନ୍ତ ଉଚ୍ଚକୋଟିର ଥିଲା ବୋଲି ଅଧ୍ୟାହାର କରନ୍ତୁଏ ।

କିନ୍ତୁ ଦୁଃଖର ବିଷୟ, ବହୁ ଶବ୍ଦାନୁସନ୍ଧିତ୍ସୁ ଉକ୍ତ ଶବ୍ଦମାନଙ୍କର ଉତ୍ପତ୍ତି ମୂଳ ପ୍ରତି ଯଥାର୍ଥ ନଜର ନରଖି ଅଧିକାଂଶ ଅପଭ୍ରଷ୍ଟ ଶ୍ରେଣୀର ବୋଲି ଦର୍ଶାଇବା ଉଦ୍ଦେଶ୍ୟରେ ତାହାର ସଂସ୍କୃତାଶ୍ରିତ ରୂପଟିଏ କଳ୍ପନାକରି ଦାୟିତ୍ୱ ଶେଷ କରିଦିଅନ୍ତି ଏବଂ କହନ୍ତି ତାହା ଏକ ତଦ୍ଭବ ଶବ୍ଦ । କେବଳ ଭାଷା କ୍ଷେତ୍ରରେ ନୁହେଁ, ଦୁର୍ଭାଗ୍ୟ ଯେ, ଅଶୋକଙ୍କ ଆକ୍ରମଣ ପୂର୍ବରୁ ଅମିତ ପରାକ୍ରମଶାଳୀ କଳିଙ୍ଗର ସଭ୍ୟତା ବା ସଂସ୍କୃତି ସମ୍ବନ୍ଧରେ କୌଣସି ତଥ୍ୟ ପରିବେଷିତ ହେବା ଦୂରେ ଥାଉ ଏଯାବତ୍ ତଦ୍ବିଷୟକ

ଆଲୋଚନାର ସୂତ୍ରପାତ ସୁଦ୍ଧା ହୋଇ ନାହିଁ । ଅବଶ୍ୟ ବିଗତ ଦଶନ୍ଧି ମଧ୍ୟରେ କେତେଜଣ ଓଡ଼ିଆ ଐତିହାସିକ କଳିଙ୍ଗର ରାଜନୈତିକ ଏବଂ ଧାର୍ମିକ ଇତିହାସକୁ ଲୋକଲୋଚନକୁ ଆଣିବାରେ ସଫଳତା ଅର୍ଜନ କରିଛନ୍ତି । କିନ୍ତୁ ତାହା ଉତ୍ତର କଳିଙ୍ଗ ମଧ୍ୟରେ ହିଁ ସୀମାବଦ୍ଧ । ମଧ୍ୟକଳିଙ୍ଗର ସେ ମୁହୂର୍ତ୍ତ କେବେ ଆସିବ କେଜାଣି, ଯେଉଁଦିନ ଏହାର ବାସ୍ତବ ଚିତ୍ର ଦେଶବାସୀଙ୍କ ଚକ୍ଷୁ ଗୋଚର ହେବ ।

**ସଂସ୍କୃତି**—ସଭ୍ୟତା ସୂଚକ ଉପାଦାନ ବ୍ୟତୀତ ପ୍ରତ୍ନତାତ୍ତ୍ୱିକ ଆବିଷ୍କାର ଓ ପୁରୁଷାନୁକ୍ରମେ ପ୍ରଚଳିତ ରୀତିନୀତିରୁ ସାଂସ୍କୃତିକ କ୍ଷେତ୍ରରେ ମଧ୍ୟ କଳିଙ୍ଗ କିପରି ଉନ୍ନତିର ଶିଖର ଦେଶରେ ପହଞ୍ଚି ପାରିଥିଲା ତାହା ଅଧ୍ୟାହାର କରିହୁଏ । କିନ୍ତୁ ସଂସ୍କୃତି ଏପରି କୌଣସି ବସ୍ତୁ ନୁହେଁ ଯାହାକୁ ହାତରେ ଧରି ଦେଖେଇହେବ । ମଣିଷର ଜୀବାତ୍ମା ସଦୃଶ ତାହା ଅଦୃଶ୍ୟ ଓ ଅନୁଭବବୋଧ୍ୟ । ଅନ୍ତଃ ସ୍ଫୁଳନାଦ୍ୱାରା ଆତ୍ମାର ଅବସ୍ଥିତି ଅନୁଭୂତ ହେଲାପରି ସମାଜରେ ବିକାଶୋନ୍ମୁଖୀ କର୍ମଧାରା ମଧ୍ୟରେ ତାହା ପ୍ରକଟିତ ହୁଏ । ଏହା ଜାତିର ମେରୁଦଣ୍ଡ, କେହି ଏହାକୁ ଜୀବନ ଧାରଣ ପ୍ରଣାଳୀ, କେହି ବା ଦୈନନ୍ଦିନ ଜୀବନଯାତ୍ରା ଅନ୍ୟ କେହି ଗତାନୁଗତିକ ପରମ୍ପରା ଆଖ୍ୟା ଦେଇଥାନ୍ତି । ନୃତତ୍ତ୍ୱବିତ୍‌ମାନଙ୍କ ମତରେ ତାହା ଏପରି ଏକ ଅତ୍ୟାବଶ୍ୟକ ଉପକରଣ ଯାହାଦ୍ୱାରା ମଣିଷ ଆଭ୍ୟନ୍ତରିକ ହେଉ ବା ପାରିବେଶିକ ହେଉ ପ୍ରତିକୂଳ ପରିସ୍ଥିତିର ସମାଧାନ କରିବାକୁ ସମର୍ଥ ହୁଏ । ତେଣୁ ସଂସ୍କୃତି ଏକ ବ୍ୟାପକ ଶବ୍ଦ । ଯାହାର ସଂସ୍କୃତି ଯେତିକି ସମୃଦ୍ଧ ସେ ଜାତି ସେତିକି ଉନ୍ନତ ବୋଲି କୁହାଯାଏ । ସମାଜର ସାଧାରଣ କ୍ରିୟାକଳାପ ମଧ୍ୟରେ ତାହା ଆତ୍ମପ୍ରକାଶ କରିଥାଏ । ଆଚାର, ଆହାର, କ୍ରୀଡ଼ା, କୌତୁକ, ଆମୋଦ-ପ୍ରମୋଦ, ଚିତ୍ରକଳା, ସ୍ଥାପତ୍ୟ, ଧର୍ମବିଶ୍ୱାସ ପ୍ରଭୃତି ତାହାର ବହୁରଙ୍ଗୀ ରୂପ ଅଟେ । ତାହା ଆଚାରରେ ଅଭିବ୍ୟଞ୍ଜିତ ହୁଏ, ଆହାରରେ ପ୍ରତିଫଳିତ ହୁଏ, କ୍ରୀଡ଼ା କୌତୁକରେ ଅନୁସୂଚିତ ହୁଏ, ସଙ୍ଗୀତରେ ପ୍ରତିଧ୍ୱନିତ ହୁଏ, ନୃତ୍ୟରେ ଛନ୍ଦାୟିତ ହୁଏ, ଚିତ୍ରାଙ୍କନରେ ଲୀଳାୟିତ ହୁଏ, ସ୍ଥାପତ୍ୟରେ ମୂର୍ତ୍ତିମନ୍ତ ହୁଏ ଏବଂ ଧର୍ମବିଶ୍ୱାସ ତାହାକୁ ପ୍ରାଣବନ୍ତ କରିଥାଏ । ଏ ପରିପ୍ରେକ୍ଷୀରେ ନଷ୍ଟାବଶିଷ୍ଟ ଓଡ଼ିଆକୁଳପରଂପରାରୁ ପ୍ରାଗୈତିହାସିକ କଳିଙ୍ଗ ସମାଜର ସଂସ୍କୃତି କଳନା କରାଯାଇପାରେ ।

**ଲୋକାଚାର**—ସମାଜ ବ୍ୟକ୍ତିର ସମଷ୍ଟି । ବ୍ୟକ୍ତି ବିନା ସମାଜର ସ୍ଥିତି ଅସମ୍ଭବ । ତେଣୁ ବ୍ୟକ୍ତିର ଆଚରଣ ବା ଲୋକଚରିତ୍ର ସମାଜ ସଂସ୍କୃତିର ପ୍ରଧାନ ପରିପ୍ରକାଶ । ବ୍ୟକ୍ତିବିଶେଷଙ୍କ ଦୋଷଗୁଣ ଓ ସଦସତ୍ ବ୍ୟବହାର ଏକାନ୍ତ ବ୍ୟକ୍ତିନିଷ୍ଠହେଲେ ସୁଦ୍ଧା ଅଧିକାଂଶ ସ୍ଥଳେ ତାହା ଜାତୀୟ ସଂସ୍କୃତିର ପରିଚୟ ଦେଇଥାଏ । ତା ବୋଲି କୌଣସି ବ୍ୟକ୍ତିର ଅସଂଯତ ଆଚରଣ ବା ଅଶିଷ୍ଟ କାର୍ଯ୍ୟକଳାପରୁ ଜାତିକୁ ଏକାବେଳେ ଅସଂଯତ ବା ଅଶିଷ୍ଟ କହିବା ସମୀଚୀନ ନୁହେଁ । କାରଣ ଶସ୍ୟକ୍ଷେତ୍ରରେ ବାଲୁଙ୍ଗାପରି ସମାଜରେ ସେମାନଙ୍କ ଅବସ୍ଥିତି ଅବଶ୍ୟମ୍ଭାବୀ ଥାଏ । ତେଣୁ ଜାତିର ସାମୂହିକ ଆଚରଣ ବିଧିକୁ ଜାତୀୟ ସଂସ୍କୃତି

ବୋଲି ବୁଝାଯାଇଥାଏ । ସେ ଦୃଷ୍ଟିରୁ ଦେଖିଲେ କଳିଙ୍ଗବାସୀଙ୍କ ଆଚରବ୍ୟବହାର ଅତି ଉଚ୍ଚକୋଟିର ଥିଲା । ସ୍ପଷ୍ଟବାଦିତା ଓ ଅତିଥିପରାୟଣତା ଥିଲା ସେମାନଙ୍କ ଜାତୀୟ ଗୁଣ । ଅତିମାତ୍ରାରେ ସରଳବିଶ୍ୱାସୀ ସେମାନେ । ଥରେ ବିଶ୍ୱାସ କରିଗଲେ ଆଉ ତୁଟିବାର ନୁହେଁ । ସେ ସଂସ୍କୃତି ଓ ପରମ୍ପରା ଏ ଯାଏଁ ଅପରିବର୍ତ୍ତିତ ରହିଛି । ବିଶ୍ୱାସ ଭଙ୍ଗ ତା' ଦୃଷ୍ଟିରେ ମହାପାପ । ବିଶ୍ୱାସଘାତକତାର ପ୍ରତିଶୋଧ ନେବାକୁ ଆବଶ୍ୟକପଡ଼ିଲେ ସେ ପ୍ରାଣପାତ କରିଥାଏ । ଏବେ ସୁଦ୍ଧା ଓଡ଼ିଆସମାଜରେ ବିଶ୍ୱାସଭଙ୍ଗର ପ୍ରତିଶୋଧ ନେଇ ପ୍ରତିପକ୍ଷର କଟାମୁଣ୍ଡ ହାତରେ ଆତ୍ମସମର୍ପଣ କରିବା ଦୃଷ୍ଟାନ୍ତ ବିରଳ ନୁହେଁ । ସତ୍ୟବାଦୀ ସେ । କୁଟିଳତାର ପ୍ରଲେପ ଦେଇ ଭାଷାକୁ ଶ୍ରୁତିରୋଚକ କରିବା କୌଶଳ ତାକୁ ଜଣାନାହିଁ । ଯାହା ମନରେ ଭାବେ ତାହାହିଁ ବାକ୍ୟରେ ପ୍ରକାଶ କରେ, ଯାହା ବାକ୍ୟରେ ପ୍ରକାଶକରେ ତାକୁ କାର୍ଯ୍ୟରେ ପରିଣତ କରେ । ମଣିଷ ମାତ୍ରେ ତାର ବନ୍ଧୁ । ତେଣୁ ରାତି ହେଉ ବା ଦିନ ହେଉ ଅସମୟରେ କେହି ଆସି ପହଞ୍ଚିଲେ କଳିଙ୍ଗବାସୀ ଘରୁ ଅନାହାରରେ ଫେରିବାର ଶୁଣାନାହିଁ । ଓଡ଼ିଆ-ଗୃହସ୍ଥ ଅତିଥିକୁ ସନ୍ତୁଷ୍ଟ କରିବାଦ୍ୱାରା ଯେତିକି ଆନନ୍ଦ ପାଏ ତତୋଽଧିକ ଗୌରବ ଅନୁଭବ କରେ । ଅପ୍ରତ୍ୟାଶିତଭାବେ ବନ୍ଧୁଘରେ ଅତିଥି ହେବା ପଦ୍ଧତି ଏବେ ବି ଓଡ଼ିଆସମାଜରେ ସଜୀବିତ । ଏହାକୁ ଅନାବିଳ ବନ୍ଧୁସ୍ନେହଛଡ଼ା ଅନ୍ୟ କିଛି ବୁଝାଯାଇ ନପାରେ । କିନ୍ତୁ ଏ କ୍ଷେତ୍ରରେ ନାରୀ ସମାଜର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ନିରଳସଭାବେ ଉତ୍ତମ ଖାଦ୍ୟପଦାର୍ଥ ପ୍ରସ୍ତୁତ କରି ଅଭ୍ୟାଗତକୁ ସନ୍ତୃପ୍ତ କରିବା ଦାୟିତ୍ୱ ଥିଲା କୁଳାଙ୍ଗନାର । ତେଣୁ କୁଳମର୍ଯ୍ୟାଦା ଓ ପରଂପରାର ରକ୍ଷାକର୍ତ୍ତ୍ରୀଭାବେ ନାରୀ ବିଶେଷ ସମ୍ମାନିତ ହେଉଥିଲା । ବାସ୍ତବିକ୍ ଦେଖିଲେ ସେ ନ ଥିଲେ ସମାଜରେ ସଂସ୍କୃତି ବା ପରଂପରା ବୋଲି କିଛି ରହନ୍ତା କି ନାହିଁ କହିହୁଏ ନାହିଁ । ତେଣୁ କୁଳରମଣୀ ପ୍ରତି ଯେପରି ପୁରୁଷର ଅଖଣ୍ଡ ବିଶ୍ୱାସ ଥିଲା, ସେହିପରି ପ୍ରତି ବଦଳରେ କୁଟୁମ୍ବର ଶାନ୍ତି ବିଧାନ ଲାଗି ସ୍ତ୍ରୀ ମଧ୍ୟ ସର୍ବସ୍ୱ ତ୍ୟାଗ କରିବାକୁ କୁଣ୍ଠିତ ନଥିଲା । ନରନାରୀ ଉଭୟଙ୍କର ତାହା ଥିଲା ସ୍ୱଭାବଜ ଗୁଣ, ଯାହା କଳିଙ୍ଗ ସଂସ୍କୃତିର ମହନୀୟତା ପ୍ରତିପାଦନକରେ ।

**ଭୋଜ୍ୟ ସାମଗ୍ରୀ**—ଆଚରଭଳି ଆହାର ମଧ୍ୟ ସଂସ୍କୃତିର ଅନ୍ୟତମ ପରିଚାୟକ । ସୁସ୍ଥ ସମାଜ ଗଠନ କରିବାରେ ସୁସ୍ଥ ବ୍ୟକ୍ତିର ଯେପରି ପ୍ରୟୋଜନୀୟତା ଉତ୍ତମ ସ୍ୱାସ୍ଥ୍ୟରକ୍ଷା ନିମିତ୍ତ ସେହିପରି ଉତ୍କୃଷ୍ଟ ଆହାର ଆବଶ୍ୟକ । ଏହାଦ୍ୱାରା ସାମାଜିକ ରୁଚିବୋଧ ନିରୂପିତ ହୋଇଥାଏ । ଆହାର ଦିଗରେ କଳିଙ୍ଗବାସୀ ଅତ୍ୟନ୍ତ ସଚେତନ ଥିବା ଜଣାପଡ଼େ । ସରଳ ପ୍ରଣାଳୀରେ ସହଜଲଭ୍ୟ ପଦାର୍ଥକୁ ରୁଚିକର ଖାଦ୍ୟରେ ପରିଣତ କରିବାରେ ସେମାନେ ଥିଲେ ଅତ୍ୟନ୍ତ ବିଚକ୍ଷଣ । ଘନ ଜଙ୍ଗଲ ଘେରା ଜନପଦବାସୀ ଜଙ୍ଗଲ ଜାତ ପଦାର୍ଥ ଉପରେ ନିର୍ଭର ନକରି ଚଳନ୍ତେ ବା କିପରି ? ତେଣୁ ପ୍ରକୃତିଦତ୍ତ ଶାକ, ଫଳ, ମୂଳ, କନ୍ଦ ସହିତ ଶିକାର ଲବ୍ଧ ପଶୁମାଂସକୁ ଦୈନନ୍ଦିନ ଖାଦ୍ୟ ସାମଗ୍ରୀରୂପେ ଉପଯୋଗ କରି ଆବଶ୍ୟକତା ମେଣ୍ଟାଉ ଥିଲେ । ଏବର ଲୁପ୍ତାବଶେଷ ଓଡ଼ିଆସମ୍ପ୍ରଦାୟରେ ସେ ପ୍ରଥା

ଉଣାଅଧିକେ ଚଳିଆସୁଥିବା ଦେଖାଯାଏ । ବଣଜାତ ଫଳମୂଳ ସାଙ୍ଗକୁ ନାନାବିଧ ପଚ୍ଚପରିବା ଉତ୍ପାଦନ କରି ଆହାର ପଦାର୍ଥରୂପେ ବ୍ୟବହାର କରୁଥିଲେ । ସେ ମଧ୍ୟରୁ କେତୋଟି ହେଉଛି—ସାରୁ, ବାଇଗଣ, ଓଲୁଅ, ଘି'ତୋରଡ଼ା, ପେଣ୍ଡୁର, ଆଷାଢୁଆ, ଖମ୍ବାଲୁ, କଦଳୀ, କଖାରୁ, ବୋଇତକଖାରୁ, ଲାଉ, କାକୁଡ଼ି, ଚଳିଣା, ତରଭୁଜ, କଣ୍ଡିଆଳ, କୁଆମଇଡା, ମହୁରଳା, ସାପୁଆ, କାଙ୍କଡ଼, କଲରା, ଜହ୍ନି, ଫୁଟାଗୁଆଁର, ତୋରଡ଼ା, ମକା, ମୁନଗା, କନ୍ଦମୂଳ, କରଡା, ଭେଣ୍ଡି, ମୂଳା, ମସିଆ, ପିଠୋଳ, ଚେରଙ୍ଗା, ଭୁଇଁ କଖାରୁ, ଝୁଆଡ, କଇଁଆ, କସି ପଣସ ଇତ୍ୟାଦି । ଏ ସବୁକୁ ବିଭିନ୍ନ ପ୍ରଣାଳୀରେ ରନ୍ଧି ସୁସ୍ୱାଦୁ କରିବାରେ ସେମାନେ ଥିଲେ ଅଦ୍ୱିତୀୟ ସୂପକାର । ଅନୁସନ୍ଧାନରୁ ଜଣାପଡ଼େ, ସେକାଳ କଳିଙ୍ଗରେ 'ଛପନ' ପ୍ରକାର ଖାଦ୍ୟଦ୍ରବ୍ୟ ପ୍ରସ୍ତୁତ କରାଯାଉଥିଲା । ଭୋଜଭାତ ହେଲେ ସେଗୁଡ଼ିକ ନିମନ୍ତ୍ରିତ ବ୍ୟକ୍ତିଙ୍କୁ ପରିଷା ହେଉଥିଲେ ସୁଦ୍ଧା ସେ ମଧ୍ୟରୁ ନିର୍ଦ୍ଦିଷ୍ଟ କେତୋଟି ପରିବା ସାତ୍ତ୍ୱିକ ପଦାର୍ଥରୂପେ ଦେବତାଙ୍କୁ ଅର୍ପଣ କରାଯାଉଥିଲା । ଛପନ ପ୍ରକାର ରନ୍ଧଣା ମଧ୍ୟରେ ଅନ୍ନ ବ୍ୟଞ୍ଜନ ସଂଖ୍ୟା ଅଠାଇଶି ଏବଂ ପିଷ୍ଟକାଦି ମିଷ୍ଟଦ୍ରବ୍ୟ ଅଠାଇଶି ପ୍ରକାର ଥିଲା । ଅନ୍ନବ୍ୟଞ୍ଜନ ଯଥା—ପଖାଳ, ଖେଚେଡ଼ି (ମିଠା), ଖେଚେଡ଼ି (ସାଦା), କ୍ଷୀରାନ୍ନ, ଦଧ୍ୟନ୍ନ, ମହୁର, ସାକରା, ଭଜା, ବଡ଼ିଆମ୍ବୁଲ, ଆମ୍ବିଳ, ବେସର, ପାପଡ଼, ସନ୍ତୁଳା, ବଟାପୁଆ, କାଞ୍ଜି, ଆମ୍ବଡ଼ା, ଅଡ଼ଙ୍ଗା, ପାଣିଆମ୍ବ, ମେଥି-ବାଇଗଣ, ରାଇ, ପୁଡ଼ୁଗା, ପଇଡ, ସାଗମୁଗ, ଡାଲମା, ଚଡ଼ଚଡ଼ି, ଶାଗ ଖରଡ଼ା, ଭୂଳଆ, ପାଚିଲା ।

**ପିଷ୍ଟକ**—ପୁଲି, କାକରା, ନନାବନ, ଝିଲି, ଡାଡ଼ି, ଲଡ଼ୁ, ଖଜା, ଖୁରୁସା, ବୁନ୍ଦିଆ; ତପୁରି, ମନୋହର, ଆରସା, ପଣାକାନ୍ତ, ଖଇ, କୋରା, ଚୂଡ଼ାଘସା, ମଣ୍ଡା, ଚନ୍ଦ୍ରକାନ୍ତି, ଗଜା, ମାଲପୁଆ, ମୋଦକ, ଏଣ୍ଡୁରି, ଚଖୁଳି, ଚକୁଲି, ଆରିଷା, ଗଇଁଠା, ପାଲୁଅ, ପୋଡ଼ ।

ଉଲ୍ଲିଖିତ ପରମ୍ପରାଗତ ଜାତୀୟ ଭୋଜ୍ୟ ସାମଗ୍ରୀ ମଧ୍ୟରେ ପ୍ରଥମ ଅଠାଇଶଟି ସଙ୍କୁଡ଼ି ଏବଂ ଦ୍ୱିତୀୟ ଅଠାଇଶ ଅସଙ୍କୁଡ଼ି ଦ୍ରବ୍ୟରୂପେ ଗୃହୀତ ଥିଲା । ଏବେ ସୁଦ୍ଧା ଓଡ଼ିଆସମାଜରେ ଏହାର ଅସ୍ତିତ୍ୱ ବିଦ୍ୟମାନ । କାଳ ଚକ୍ରର ଆବର୍ତ୍ତନ ମଧ୍ୟରେ କିଛିଟା ପରିବର୍ତ୍ତନ ଘଟିଥିଲେ ସୁଦ୍ଧା କଳିଙ୍ଗର ଉପାସ୍ୟ ଦାରୁଦେବତା ଜଗନ୍ନାଥଙ୍କ ଭୋଗ ସେବାରେ 'ଛପନ' ସଂଖ୍ୟାଟି ଅକ୍ଷୁଣ୍ଣ ରହିଛି । ସୁତରାଂ ରୁଚିକର ଖାଦ୍ୟ ପ୍ରସ୍ତୁତ ଓ ତାହାର ଯଥାଯଥ ବିନିଯୋଗ ଉତ୍ତମ ଶିଳ୍ପୀସ୍ୱରର ନିଖୁଣ ଅଭିବ୍ୟକ୍ତି—ଏଥିରେ ସନ୍ଦେହ କରିବାର କିଛି ନାହିଁ ।

**କ୍ରୀଡ଼ାକୌତୁକ**—ଆହାର ଛଡ଼ା କ୍ରୀଡ଼ା-କୌତୁକରୁ ମଧ୍ୟ ଜାତିର ସଂସ୍କୃତି ପରିସ୍ଫୁଟ ହୁଏ । ଜଞ୍ଜାଳଶୂନ୍ୟ ନହେଲେ ବସ୍ତୁରକ୍ତ ବ୍ୟକ୍ତି ଖେଳପ୍ରତି ଆକୃଷ୍ଟ ହୁଏ ନାହିଁ । ଯଦିଚ ସେଥିରେ ଶାରୀରିକ ଓ ମାନସିକ ଶକ୍ତି ବୃଦ୍ଧି ଘଟିବାର ଉପାଦାନ

ବିଦ୍ୟମାନ । ସ୍ଥାନ ଭେଦରେ ଖେଳ ସ୍ଥୂଳତଃ ଦୁଇପ୍ରକାର—ଆଭ୍ୟନ୍ତର ଓ ବାହ୍ୟ । ପ୍ରଥମଟିରେ ସୂକ୍ଷ୍ମ ବୁଦ୍ଧିବୃତ୍ତି ଓ ଦ୍ୱିତୀୟଟିରେ ଶାରୀରିକ ବଳର ପ୍ରୟୋଜନ ରହେ । ପୁରୁଷାନୁକ୍ରମେ କଳିଙ୍ଗରେ ଚଳିଆସୁଥିବା ଆଭ୍ୟନ୍ତର ଖେଳ ମଧ୍ୟରେ ଡୁଗି, ଗଞ୍ଜପା, ନକସ, ସକଟା, ବାଘ-ଛେଳି ପ୍ରମୁଖ ପ୍ରଧାନ । ଏ ସବୁ କଳିଙ୍ଗର ନିଜସ୍ୱ । ଏହା ଅନ୍ୟତ୍ର ଦୃଷ୍ଟ ହୁଏ ନାହିଁ । ଖେଳ ମଧ୍ୟରେ 'ଡୁଗି' ସର୍ବୋତ୍କୃଷ୍ଟ ଓ କଷ୍ଟସାଧ୍ୟ ଖେଳବୋଲି କୁହାଯାଏ । ତା ତଳକୁ ଗଞ୍ଜପା । କିନ୍ତୁ ଦୁଇଟିଯାକ ତାସ୍‌ଖେଳ । ଆଠ ରଙ୍ଗର ଗୋଲାକାର ଦେଶୀତାସ୍‌ରେ ଏହି ଖେଳ ହୁଏ । ଗୋଲାକାର କଟା ଲନା ଦହରେ ଦ'ପାଖି ଆପୁଚ (ଭେଲୁକମଞ୍ଜି) ଅଠାବୋଳି ଶୁଖାଇ ଟାଣ କଲାପରେ ଧଳା କଳା, ବସନ୍ତି, ମାଟିଆ, ନାଲି, ହଳଦିଆ, ନୀଳ ଓ ସବୁଜ ବର୍ଣ୍ଣର ରଙ୍ଗ ଦିଆଯାଇ ଏହା ପ୍ରସ୍ତୁତ ହୁଏ (ଚିତ୍ରସଂଖ୍ୟା-୧) । ଖେଳବେଳେ ରଙ୍ଗାୟିତ ତାସ୍‌ଗୁଡ଼ିକ ଯଥାକ୍ରମେ ଗୁଲ୍‌ଥାଲ୍, ଚନ୍ଦ୍ର, ଫୁଲ, ଶଙ୍ଖ, ବରାଡ, କୁମାଚ, ସୂର୍ଯ୍ୟ ଓ ଚେଙ୍ଗ ନାମରେ ନାମିତ ହୁଅନ୍ତି । ପ୍ରତି ରଙ୍ଗର ବାରଟି ଲେଖାଏଁ ତାସ୍ । ଏକରୁ ଦଶଯାଏ ସଂଖ୍ୟା ଦର୍ଶାଇ ଦଶଟି ଏବଂ 'ରଜା' ଓ 'ମନ୍ତ୍ରୀ' ଚିହ୍ନ ଥିବା ଦୁଇଟି । ଆଠ ରଙ୍ଗର ବାରଟି ଲେଖାଏଁ ତାସ୍ ମିଶି ମୋଟ ଛୟାନବେ (୯୬) । ବିଭିନ୍ନ ରଙ୍ଗର ତାସ୍‌ରେ ସଂଖ୍ୟା ପ୍ରଦର୍ଶକ ଚିହ୍ନଗୁଡ଼ିକ ବିଭିନ୍ନ ରୂପେ ଅଙ୍କିତ ଥାଏ । ରଜା ଓ ମନ୍ତ୍ରୀ ତାସ୍‌ର ମୂଲ୍ୟ ଯଥାକ୍ରମେ ୧୨ ଏବଂ ୧୧ । ସବୁ ରଙ୍ଗରେ ଏହା ସମାନ । କିନ୍ତୁ ଗୁଲ୍‌ଥାଲ୍, ଚନ୍ଦ୍ର, ଫୁଲ ଓ ଶଙ୍ଖ ତାସ୍‌ର ମନ୍ତ୍ରୀ ତଳକୁ ୧, ତା ତଳକୁ ୨, ତା ତଳକୁ ୩ ନିୟମରେ ୧୦ ଯାଏଁ କ୍ରମାନ୍ୱୟେ ଶ୍ରେଷ୍ଠ ହୋଇ ପଡ଼ନ୍ତି । ଅର୍ଥାତ୍ ୧୦ ସଂଖ୍ୟାଟି ସବୁଠାରୁ ଶ୍ରେଷ୍ଠ । ଅପେକ୍ଷାକୃତ ଅଧିକ ମୂଲ୍ୟର ତାସ୍‌କୁ ହୁକୁମ୍ କୁହାଯାଏ । ଯା'ହାତରେ ହୁକୁମ୍‌ତାସ୍ ଯେତିକ ବେଶି, ତା' ହାତମୁଠା ସେତିକ ଟାଣ ।

ଡୁଗି—ଚତୁରତା, ଅଭ୍ୟାସ ଓ ପ୍ରଖର ସ୍ମୃତିଶକ୍ତି ବିନା ଏ ଖେଳ ସମ୍ଭବ ନୁହେଁ । ଏହାର ସାଧାରଣ ନିୟମ—

ବ୍ରିଜ୍ ଖେଳ ଭଳି ଦୁଇ ପକ୍ଷରେ ଚାରିଜଣ ଦୁଇ ଦୁଇ ହୋଇ ବସନ୍ତି । ଛୟାନବେଟିଯାକ ତାସ୍ ସେମାନଙ୍କୁ ବଣ୍ଟାଯାଏ । ପ୍ରତ୍ୟେକେ ଚବିଶଟି ଲେଖାଏଁ ପାଆନ୍ତି । 'ହୁକୁମ୍' ସଂଖ୍ୟା ଦେଖି ଯେ ଖେଳ ନେବାକୁ ଚାହେଁ ଛୟାନବେଟିଯାକ ତାକୁ ଆଣିବାକୁ ପଡ଼େ । ଖେଳ ନେବା ବ୍ୟକ୍ତି ବିପକ୍ଷ ଦଳକୁ ଏକ 'ବିନା' ମାଗେ । 'ବିନା' ଏକ ଶ୍ରେଷ୍ଠ ତାସ୍, ଯେକୌଣସି ରଙ୍ଗର ହୋଇପାରେ । ପ୍ରତିବଦଳରେ ବିପକ୍ଷଦଳ ନିଜର ଏକ ଅନାବଶ୍ୟକ ତାସ୍ ତାକୁ ଦିଏ । ତା'ର ନାଁ 'ଖେର' । ତାକୁ ଧରିବା ପାଇଁ ଚେଷ୍ଟା କରାଯାଏ । ତା' ପରେ ଖେଳ ନେବା ବ୍ୟକ୍ତି ଅନ୍ୟ ଏକ ଅନାବଶ୍ୟକ ତାସ୍ ବଦଳରେ ଯେ କୌଣସି ରଙ୍ଗର 'ରଜା'ଟିଏ ମାଗିନିଏ ଏବଂ ଗୋଟିଏ ତାସ୍ ଟିପେ ଅର୍ଥାତ୍ ଆଉ ଏକ ଶ୍ରେଷ୍ଠ ତାସ୍ ପକାଏ, ଯାହା ଯେତେ ଶ୍ରେଷ୍ଠ ହୋଇଥିଲେ ବି 'ହୁକୁମ୍' ରୂପେ ଗଣିତ ହୁଏ । ଖେଳ ନେବାବ୍ୟକ୍ତିଠାରୁ ଖେଳ ଆରମ୍ଭ ହୁଏ । ଯେଉଁ ରଙ୍ଗକୁ ସେହି ରଙ୍ଗର ତାସ୍ ଦେବାକୁ

ପଡ଼େ । ରଙ୍ଗ ନଥିଲେ ମଧ୍ୟ ରଙ୍ଗର 'ହୁକୁମ୍' (ସବୁଠାରୁ ବଡ଼) ତାସ୍‌ଟି ଦେବାକୁ ପଡ଼େ । ରଙ୍ଗ କମ୍ବା ହୁକୁମ୍ ତାସ୍ ନଥିଲେ ଯେକୌଣସି ରଙ୍ଗର ବଡ଼ ତାସ୍ ଦେବାକୁ ହୁଏ । ବ୍ୟତିକ୍ରମ ହେଲେ ଖେଳ 'ହରି'ଗଲାବୋଲି ଧରାଯାଏ ।

**ଖଞ୍ଜାପା**—ଏହା ବି ଏକ ତାସ୍ ଖେଳ । ଦେଶୀ ଗୋଲ୍ ତାସ୍‌ରେ ଖେଳାଯାଏ । 'ତୁରି' ନିୟମରେ ହିଁ 'ହୁକୁମ୍' ଗଣାହୁଏ । 'ତୁରି' ପରି ଚାରିଜଣ ବସି ଖେଳନ୍ତି । ତାସ୍ ବଣ୍ଟା ହେଲାପରେ ଯାହା ପାଖରେ ସୂର୍ଯ୍ୟରଙ୍ଗ ରଜା ଥାଏ ସେ ଖେଳ ଆରମ୍ଭ କରନ୍ତି । ପ୍ରଥମେ ସେ 'ସୂର୍ଯ୍ୟ' ରଜା ସହିତ ଖଣ୍ଡିଏ ତାସ୍ ପକାଇ ଦୁଇଗଣ୍ଡା ତାସ୍ ନେବେ । ଯଦି ଅନ୍ୟ ରଙ୍ଗର ଦୁଇ ବା ଅଧିକ ହୁକୁମ୍ ତାସ୍ ଥାଏ ତେବେ ସେ କେବଳ ଗୋଟିଏ 'ହୁକୁମ୍' ରଖି ଅନ୍ୟଗୁଡ଼ିକ ପକାଇଦେବ । ତା' ହେଲେ ତାଙ୍କ ପାଖରେ ଗୋଟିଏ ମାତ୍ର ବଡ଼ ତାସ୍ ରହିବ । 'ରଜା' ଥିବା ବ୍ୟକ୍ତି ହାତରେ ଯଦି ଆଉ କୌଣସି 'ହୁକୁମ୍' ତାସ୍ ନଥାଏ ତେବେ ସେ 'ଗଣ୍ଡାଏ' ତାସ୍ ନେଇ ହାତରେ ଥିବା ତାସ୍ ମିଶାଇ ଘାଣ୍ଟିଦେବେ । ବାଁପଟ ଖେଳାଳି ତଳୁ ବା ଉପରୁ ଗୋଟିଏ ତାସ୍ ଉଠାଇବେ ଏବଂ ଯେଉଁ ରଙ୍ଗର ଉଠିବ ସେହି ରଙ୍ଗର 'ହୁକୁମ୍' ଯାହା ପାଖରେ ଥାଏ ସେ ତାକୁ ନେଇ ଖେଳ ଧରିବେ । ହାତରେ ଥିବା ତାସ୍‌ଗୁଡ଼ିକୁ ଯେତେ କୌଶଳରେ 'ହୁକୁମ୍' କରାଯାଇପାରେ ସେତିକ ଗଣ୍ଡା ତାସ୍ ସେ ନିଅନ୍ତି । ତାସ୍‌ଗଣ୍ଡାର ସଂଖ୍ୟାନୁଯାୟୀ ଖେଳରେ ହାରି-ଜିଣା ସ୍ଥିର ହୁଏ ।

**ନକସ**—ଏହା ଏକପ୍ରକାର ଜୁଆଖେଳ । ତିନରୁ ପାଞ୍ଚଜଣ ଯାଏ ବସି ଖେଳନ୍ତି । ଏହା ମଧ୍ୟ ଦେଶୀ ଖେଳ । ତାସ୍ ଯୋଗେ ଖେଳିବାକୁ ହୁଏ । ସବୁ ରଙ୍ଗରେ 'ଗୋଟି' ସଂଖ୍ୟା ଅନୁଯାୟୀ ମୂଲ୍ୟ ନିର୍ଦ୍ଧାରିତ ଅର୍ଥାତ୍ ରଜା ୧୨, ମନ୍ତ୍ରୀ ୧୧, ତା' ତଳକୁ ୧୦, ୯, ୮ କ୍ରମରେ ସବୁ । ଜଣେ ମୁଠାଧରି ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ବାଣ୍ଟନ୍ତି । ତା'ପରେ ଡାହାଣ ପଟ ବ୍ୟକ୍ତିଙ୍କୁ ଆଉ ଗୋଟିଏ ଦିଆଯାଏ । ସେ ଚାହିଁଲେ ଅଧିକା ବି ନେଇ ପାରନ୍ତି । ମାଗି ନେବା ତାସ୍‌ର ଗୋଟି ସଂଖ୍ୟା ମୂଲ୍ୟ ୧୭ (ସତର)କୁ ବଳିଗଲେ ତାହା 'ପୋଡ଼ା' ବୋଲି ଧରାଯାଏ । ଯଦି ୧୭ ହୁଏ ତାହାକୁ 'ନକ୍ସ' କୁହାଯାଏ । 'ନକ୍ସ' ଅର୍ଥ ସର୍ବାଧିକ । ନକ୍ସ ହେଲେ ହାତକୁ ମୁଠା ଚାଲିଆସେ । ସତରରୁ କମ୍ ରଖିଲେ ପାସ୍ ଦିଆଯାଏ । ଉକ୍ତ ନିୟମରେ ଦ୍ୱିତୀୟ, ତୃତୀୟ, ଚତୁର୍ଥଙ୍କୁ ବି ତାସ୍ ବଣ୍ଟା ହୁଏ । ସେ ମଧ୍ୟରୁ ଯାହାର ଗୋଟି ସଂଖ୍ୟା ଅଧିକ ଥାଏ, ସେ ମୁଠା ହାତକୁ ନିଅନ୍ତି । 'ନକ୍ସ' ନ ହୋଇ ଅନ୍ୟମାନେ ତାସ୍ ଧରି ରଖିଥିଲେ ବାଣ୍ଟିବା ବ୍ୟକ୍ତି ନିଜପାଇଁ ତାସ୍ ବାହାର କରନ୍ତି । ଯଦି 'ନକ୍ସ' ହୁଏ ସେ ଜିଣନ୍ତି । ସଂଖ୍ୟା ସମାନ ହେଲେ ପ୍ରଥମ ବ୍ୟକ୍ତି ମୁଠା ପାଆନ୍ତି । ଦେଖିବାକୁ ଗଲେ ଏହା 'ଜୁଆ' ଛଡ଼ା ଅନ୍ୟ କିଛି ନୁହେଁ । ତାସ୍‌ରେ ଗୋଟି ଚାରି ଥିବାରୁ ଏହାର ମୂଲ୍ୟ ଚାରି । ଏହି ନିୟମରେ ଅନ୍ୟ ସବୁ ।

**ସକଟା**—ପଶା ରକମର ଖେଳ ଏହା । ଛୟାନବେ ଘର ବିଶିଷ୍ଟ କୋଠି କାଟି କମ୍ବା କନାରେ 'ପାଲି'ଟିଏ ପ୍ରସ୍ତୁତ କରି ଏହା ଖେଳାଯାଏ । (ନମୁନା ଚିତ୍ର ଦ୍ରଷ୍ଟବ୍ୟ) । ଚାରିଜଣ

ବସି ଖେଳନ୍ତି । ପ୍ରତ୍ୟେକର ନାଲି, କଳା, ସବୁଜ ଓ ହଳଦିଆ ରଙ୍ଗର ଚାରିଟି ଲେଖାଏଁ ଗୋଟି ବା ପିକ ନିର୍ଦ୍ଦିଷ୍ଟ ସ୍ଥାନରେ ଥୁଆହୁଏ । ଦକ୍ଷିଣାବର୍ତ୍ତି ଭାବେ ପିକଗୁଡ଼ାକ ଗତି କରନ୍ତି । ସେଥିପାଇଁ ହାଡ଼ଦାନ୍ତ କିମ୍ବା ଅନୁରୂପ ଉପାଦାନରେ ତିଆରି ଦୁଇଟି ଅଡ଼େଇ ଇଞ୍ଚିଆ କାଠି ଦିହରେ ଏକ, ତିନି, ଚାରି, ଛ ସଂଖ୍ୟା ସୂଚକ ଚିହ୍ନମାନ ଅଙ୍କିତ ଥାଏ । କାଠି ଦୁଇଟି ଗଡ଼େଇଲା ପରେ ଉପର ପଟକୁ ଯେଉଁ ସଂଖ୍ୟା ରହେ ତାହାକୁ 'ଦାନ' ବୁଝାଯାଏ । ଗୋଟିଏ କାଠିର ଉପରକୁ ସଂଖ୍ୟା ଛ (୬) ଏବଂ ଅନ୍ୟଟିର (୧) ଏକ ହେଲେ 'ଦାନ' ହେଲା ସାତ (୭) । ସେଥିକୁ 'ଛକ ପାଗଡ଼ା' କହନ୍ତି । ସେହିପରି ଉଭୟର ସଂଖ୍ୟା ତିନି ତିନି ରହି 'ଦାନ' ଛ ହେଲେ ତା ନାଁ 'ଭିତ୍ତି' । ତିନି ଓ ଏକ ହେଲେ 'ତିନି କଣ୍ଠ' ବୁଝାଯାଏ ଏବଂ ଦାନଚାରି (୪) ଏକ + ଏକ, ଛ + ଛ କିମ୍ବା ଚାରି + ଚାରି ରହିଲେ ଯଥାକ୍ରମେ ଦୁଗା, ତିନିପୁଞ୍ଜା ଓ ଦସୁଞ୍ଜା ଅର୍ଥାତ୍ ଦୁଇ, ବାର ଓ ଆଠ ହୁଏ । ଦାନ ଅନୁସାରେ ପିକ ଗତିକରେ । ଦୁଇଟି ପିକ ମିଶାଇ ଯୋଡ଼ି ମଧ୍ୟ ବନ୍ଧାଯାଏ । କିନ୍ତୁ ତାହା ସମସଂଖ୍ୟକ ଦାନ ଅର୍ଥାତ୍ 'ଚାରି', 'ଛଅ', 'ଆଠ', 'ବାର' କିମ୍ବା 'ଦୁଗା' ନ ହେଲେ ଗତି କରେ ନାହିଁ । ଯାହାର ପିକ ନିର୍ଦ୍ଦିଷ୍ଟ ମାର୍ଗରେ ଗତି କରି ନିର୍ଦ୍ଦିଷ୍ଟ ସ୍ଥାନରେ ଆସି ଆଗେ ପହଞ୍ଚେ ତାହାର 'ଜିତା' ବୋଲି ଧରାହୁଏ । 'ସକଟା ପାଲି' ଓ 'ସକଟା କାଠି'ର ଚିତ୍ର ଦେଖନ୍ତୁ । (ନମୁନା ଚିତ୍ର ଦ୍ରଷ୍ଟବ୍ୟ) ଏହା ଅଭିଜାତ ଶ୍ରେଣୀ ଖେଳ ମଧ୍ୟରେ ଗଣ୍ୟ ।

ଉପରୋକ୍ତ ଚାରୋଟି ଖେଳ ମଧ୍ୟରୁ 'ନକସ'ଛଡ଼ା ଅନ୍ୟ ତିନୋଟି ପ୍ରାୟ ଲୁପ୍ତ କହିଲେ ଚଳେ । ଅବଶ୍ୟ ପୂର୍ବ ଗଡ଼ଜାତ, ପାରଳାଖେମୁଣ୍ଡି, ଚିକିଟି, ପୋଡ଼ାମାରି ପ୍ରଭୃତି କେତୋଟି ଜମିଦାର ଅଞ୍ଚଳର ଗଳିକନ୍ଦି ଭିତରେ ଏହାର ଶେଷ ଶିଖା ମିଞ୍ଜି ମିଞ୍ଜି ହୋଇ ଜଳୁଥିବା ଦେଖାଯାଏ । କିନ୍ତୁ ତାହା ବି ନିର୍ବାପିତ ହୋଇଯିବା ସମ୍ଭାବନା ରହିଛି । ସ୍ମରଣ ରଖିବା ଉଚିତ ପ୍ରାଚୀନ କଳିଙ୍ଗର ଏଗୁଡ଼ିକ ଥିଲା ଜାତୀୟ ବିକାଶର ପ୍ରକାଶକ । ଏଥିରୁ ପ୍ରାକ୍ତନ ସମାଜର ବୌଦ୍ଧିକତା ମାଧ୍ୟମରେ ଆମୋଦ ପ୍ରମୋଦ ଭାବନା ସମ୍ୟକ୍ ପ୍ରକଟିତ । ସୂକ୍ଷ୍ମବୁଦ୍ଧିସାଧ୍ୟ ଗୁଟି, ଗଞ୍ଜପା, ସକଟାଦି ପରି ବାଳକଙ୍କ ସରଳମତି ଉପଯୋଗୀ ବାଘଛେଳି, ସମପଟାଦି ସହଜ ଖେଳମାନ ଦେଖି ସୁଦ୍ଧା ଆମେ ଯଦି ମନରେ ଅତୀତ ସମାଜର ଅସ୍ପଷ୍ଟ ଚିତ୍ର ଆଙ୍କି ନପାରୁ ତେବେ ତାହା ଦୁର୍ଭାଗ୍ୟଛଡ଼ା ଆଉ କଣ ହୋଇପାରେ ? ସରଳ ଖେଳ ମଧ୍ୟରେ 'ବାଘ ଛେଳି' ଖେଳ ଅନ୍ୟତମ । ଏହା ଦୁଇ ପ୍ରତିଦ୍ୱନ୍ଦ୍ୱୀ ମଧ୍ୟରେ ଖେଳ ହୁଏ । ପ୍ରଥମେ ଗୋଟିଏ କୋଠି କଟାଯାଏ । କୋଠିର ଉପର ବିନ୍ଦୁ 'ପାହାଡ଼' ଏବଂ ତଳଭାଗ 'ପଡ଼ିଆ' । ପଡ଼ିଆରେ ଷୋହଳଟି 'ଛେଳି' । 'ଛେଳି'ନାରେ ବାରଟି ପିକ । ଏବଂ ବାଘ ନାଁରେ ଅଲଗା ପିକଟିଏ । ଜଣେ ବାଘ ଓ ଆରଜଣକ ଛେଳିଧରି ଚଳାନ୍ତି । ବାଘ ପାହାଡ଼ ଉପରେ ବସିଥାଏ । ପଡ଼ିଆରେ 'ଛେଳି' ଦେଖିଲାମାତ୍ରେ ଢେଉଁ ଆସେ ତଳକୁ । ଛେଳି ଧରିବା ବ୍ୟକ୍ତି କୋଠିରେ ଗୋଟିଏ କରି ପିକ ବସାଏ । ତା'ର

ଲକ୍ଷ୍ୟରେ ବାଘ ଡେଇଁଆସେ । ପାଖ ଛକରେ ଯଦି 'ଛେଳି' ଥାଏ ଏବଂ ଆରପାଖ ଶୂନ୍ୟ ବାଘ ଚଟ୍‌କରି ତାକୁ ଧରି ଆରପଟକୁ ଡେଇଁପଡ଼େ—ଶୂନ୍ୟ ନଥିଲେ ଡେଇଁପାରେ ନାହିଁ । ବାଘ ହାବୁଡ଼େ ନପଡ଼ି ସବୁ ଛେଳି ବସିଗଲା ପରେ ଛକରୁ ଛକକୁ ପିକ ଚଲାଯାଏ । କୌଶଳ କରି ବାଘ ଘୁରପଟେ ଯୋଡ଼ି ଯୋଡ଼ି କରି ପିକ ରଖିପାରିଲେ ବାଘ ବନ୍ଦୀ ହେଲାବୋଲି ଧରାଯାଏ—ବାଘପଟ ହାରେ । ଯଦି ବାଘ ଗୋଟି ଗୋଟି କରି ଛେଳି ଖାଇଯାଏ ଛେଳି ପକ୍ଷ ହାରେ । (ନମୁନା ଚିତ୍ର ଦ୍ରଷ୍ଟବ୍ୟ) ଏବେବି ପିଲାଙ୍କ ମଧ୍ୟରେ ଏହା ଖେଳା ହୋଇ ଆସୁଥିବା ଦେଖାଯାଏ ।

ଅଭ୍ୟନ୍ତର ଖେଳଛଡ଼ା କେ କେ ବାହ୍ୟକ୍ରୀଡ଼ା ସେତେବେଳେ ପ୍ରଚଳିତ ଥିଲା ଓ ସେ ମଧ୍ୟରୁ କେଉଁଗୁଡ଼ିକର ସତ୍ତା ଅଦ୍ୟାପି ବିଦ୍ୟମାନ ଦେଖିବାର କଥା । ବାହ୍ୟ କ୍ରୀଡ଼ା ଥିଲା ଶାରୀରିକ ଶକ୍ତିସାପେକ୍ଷ । ତେଣୁ ସମର୍ଥ ତରୁଣ ସମାଜରେ ତାହା ଆବଦ୍ଧ ଥିଲା । ଉନ୍ମୁକ୍ତ ପ୍ରାନ୍ତର ନ ହେଲେ ବାହ୍ୟ କ୍ରୀଡ଼ା ସମ୍ଭବ ନୁହେଁ । ତେଣୁ ଗ୍ରାମୋପାନ୍ତ ତୃଣଶୂନ୍ୟ ପଡ଼ିଆ ଭୂମିରେ ତାହା ଅନୁଷ୍ଠିତ ହୋଇ ଆସୁଥିଲା । ସେ ମଧ୍ୟରେ ବାରିଦାଣ୍ଡି, ବୋହୂ ଚୋରି, କୁପାକୁଟି, ଡାହି ପିଲ, ଉଠାବସା, ଚକାଗିରି, ଖୋ-ଖୋ, ଡାଳମାଙ୍କୁଡ଼ି ପ୍ରମୁଖ ପ୍ରଧାନ । ଖେଳଗୁଡ଼ିକର ନାଆଁ, ନୀତି ନିୟମ ଓ ହରିକଣା ସର୍ତ୍ତ ଦେଖିଲେ ଆବିଷ୍କର୍ତ୍ତାଙ୍କ ମନସ୍ତାତ୍ତ୍ୱିକ ବୁଦ୍ଧି କୌଶଳର ପ୍ରଶଂସା ନକରି ରହି ହୁଏ ନାହିଁ । ଦୃଷ୍ଟାନ୍ତ ସ୍ୱରୂପ ଦେଖନ୍ତୁ—

**ବାରିଦାଣ୍ଡି**—ଆଡ଼-ସଳଖେ ଗାରକାଟି ଏହା ଖେଳାଯାଏ । ଦୁଇପଟେ ସାତ ସାତ ଜଣ ଖେଳାଳି, ଉପରି ମୁଣ୍ଡେ 'ଲୁଣ ଘାଲି' । ଗୋଟିଏ ପକ୍ଷ 'ଲୁଣଘାଲି' ଜଗନ୍ତି, ଆରପକ୍ଷ ଲୁଣ ମାରିବାକୁ ଯାଆନ୍ତି । ଛ'ଗାରକୁ ଛ' ଜଣ ଏବଂ ମଝିଗାରରେ ଜଣେ ଜଗି ରହନ୍ତି । ପ୍ରତିପକ୍ଷ ଜୁଆମାନେ ଛୁଆଁ ନଦେଇ ପ୍ରତିଗାର ଡେଇଁ ଯିବାକୁ ପଡ଼େ । ଗାର ଡେଇଁ ଗଲା ପରେ ଗାର ଜଗୁଆଳ ଛୁଇଁବା ନିରର୍ଥକ । ଏ ନିୟମରେ ସବୁ ଗାର ଡେଇଁ ଯିବାକୁ ପଡ଼େ । କିନ୍ତୁ ମଝିଗାର ଜଗୁଆଳଠାରୁ ସବୁବେଳେ ସତର୍କ ରହିବା ଆବଶ୍ୟକ । ଯେହେତୁ ଯେକୌଣସି କୋଠିରେ ସେ ଛୁଇଁଦେଲେ ଖେଳରୁ ବାହାର । ଏହିପରି ସବେ 'ଲୁଂଘାଲି' କୋଠିରେ ପଶିବାକୁ ହୁଏ । ଜୁଆ ପକ୍ଷରୁ ସେଠାରେ ଜଣେ ଖେଳୁଆଳ ଆଗରୁ ରହିଥାଆନ୍ତି । ଜଣେ କେହି ସେ ଭିତରକୁ ଡେଇଁ ଗଲେ ଦୁହେଁ ଏକା ସାଙ୍ଗରେ ଲୁଣଧରି ଫେରନ୍ତି । ଫଳରେ ଜଣେ ଜଗୁଆଳ ପକ୍ଷେ ଦୁହିଁଙ୍କୁ ଅଟକାଇବା କଷ୍ଟକର ହୁଏ । ଯିବା ନିୟମରେ ହିଁ ଧରା ନ ପଡ଼ି ଫେରିବାକୁ ହୁଏ । ଲୁଣଧରି ଛ'ଟି ଯାକ ଗାର ପାରି ହୋଇ ଆସିଲେ ଖେଳ ଜଣାହୁଏ । ମଝିରେ ଧରାପଡ଼ିଲେ ଫେଳ ଗଲା । ତାପରେ ଅନ୍ୟ ପକ୍ଷର ପାଳି । କୋଠିର ମଝିଗାର ଲମ୍ବା ଚବିଶ(୨୪) ହାତ, ଆଡ଼ ଗାର (୧୨) ବାର ହାତ, ଦୁଇ ଆଡ଼ ଗାର ମଧ୍ୟରେ ଅନ୍ତର (୪) ଚାରି ହାତ । ଅର୍ଥାତ୍ ଭିତର





ଗଞ୍ଜିଆ ତାସ୍
[ ଖେଳର ନାମ ଗଂଜପା -ଉଭୟମଣ୍ଡଳ ।
ଗଂଜପା ମୁଦ୍ରିତ ହୋଇଛି ।]



( ଧାଡି ଧୋକଡି )




( ବାହୁଦାଣ୍ଡି )




( ବାଘ ଛେଳି )



କାଷିଯୋ






( ବାର – ଆଠ )



( ଆଠ-ପାଞ୍ଚ )

କୋଠିମାନ ୭ × ୭ ଆକାରର ବିଶିଷ୍ଟ । ସବା ଉପରେ ଅର୍ଦ୍ଧବୃତ୍ତାକାର କୋଠି 'ଲୁଣଘାଇ' । (ପ୍ରଦତ୍ତ ଚିତ୍ର ଦେଖନ୍ତୁ)

**ବୋହୂଚୋର**—ଦୁଇପକ୍ଷରେ ପାଞ୍ଚରୁ ଦଶ ଖେଳାଳି ରହି ଏହା ଖେଳନ୍ତି । ଗୋଟିଏ ପକ୍ଷରୁ ନିର୍ଦ୍ଦିଷ୍ଟ ଜାଗାରେ ଜଣେ ବସେ । ତା' ନାଁ 'ବୋହୂ' । ଆରପଟ ଖେଳାଳି ତାକୁ ଜଗିରହନ୍ତି । 'ବୋହୂପକ୍ଷ' 'ବୋହୂ'କୁ ଉଠାଇନେବା ଚେଷ୍ଟାରେ ରହନ୍ତି । ଜଗୁଆଳଙ୍କୁ ଛୁଆଁ ନଦେଇ ବୋହୂକୁ ଘେନିଆସିଲେ କିମ୍ବା ବୋହୂ ଛୁଆଁ ନ ଦେଇ ଉଠିଆସିଲେ ବୋହୂପକ୍ଷ ଜିତନ୍ତି । ଜଗୁଆଳି ପକ୍ଷରୁ ଜଣେ ରାହାଧର ଛୁଇଁବାକୁ ଗୋଡ଼ାନ୍ତି । ରାହାଧର ଯାହାକୁ ଛୁଏଁ ସେ ଖେଳରୁ ବାହାର । ରାହା ଛାଡ଼ିଲା ପରେ ପ୍ରତିପକ୍ଷର କେହି ଛୁଇଁ ଦେଲେ ସେ ବି ବାହାର । ଓଡ଼ିଶାର ବହୁପ୍ରାନ୍ତରେ ଏବେ ସୁଦ୍ଧା ଏ ଖେଳର ଅସ୍ତିତ୍ୱ ଦେଖାଯାଏ ।

**କୁମ୍ଭୀରର**—ଏହା ବି 'ବୋହୂଚୋର' ନିୟମରେ ଖେଳ ହୁଏ । କିନ୍ତୁ ଏଥିରେ ବୋହୂ ବଦଳରେ ଶ୍ରେଷ୍ଠ ବାଲିଗଦାଟିଏ ଥୁଆହୁଏ । ଜଗୁଆଳି ପକ୍ଷର ଅଜାଣତରେ ତାକୁ ଛୁଇଁପାରିଲେ ହେଲା ।

**ଡାହୁପିଲ**— ଏହା ଏକ ପିଲଖେଳ । ଦୁଇ ଜଣ ମଧ୍ୟରେ କିମ୍ବା ଦୁଇରୁ ପାଞ୍ଚଜଣ ଲେଖାଏଁ ଦଳ ଗଠନ କରି ଖେଳନ୍ତି । ହାତେ ଲମ୍ବା ବାଡ଼ି ଓ ଛ' ଇଞ୍ଚ ଲମ୍ବା ପିଲ (କାଠି) ଏ ଖେଳର ଉପାଦାନ । ଖେଳ ଆରମ୍ଭରେ ସର୍ବାଧିକ 'ଲାଲ୍' ସଂଖ୍ୟା ନିର୍ଦ୍ଦିଷ୍ଟ ହୁଏ । ଯେଉଁପକ୍ଷ ପ୍ରଥମେ ସେତିକ ସଂଗ୍ରହ କରେ ସେ ଜିଣେ । 'ଲାଲ୍' ଅର୍ଥ ଦଶବାଡ଼ି ପରିମାଣ ଦୂରତ୍ୱ । ସୁବିଧା ସ୍ଥାନ ବାଛି ଛ' ଇଞ୍ଚ ଲମ୍ବା ଓ ଇଞ୍ଚେ ଗଭୀର ଗାତଟିଏ ଖୋଳା ହୁଏ । ତା' ଉପରେ ଆଡ଼ ସଳଖ ପିଲଥୋଇ ବାଡ଼ିଦ୍ୱାରା ଆଗକୁ ଖେଞ୍ଚାଯାଏ, ଅପରପକ୍ଷ ସମ୍ମୁଖ ଭାଗରେ 'ପିଲ' ଧରିବା ପାଇଁ ଜଗି ରହନ୍ତି, ଧରିନେଲେ ଖେଞ୍ଚିବାପକ୍ଷ ଜଗିବାକୁ ଆସନ୍ତି । ପିଲଟି ଧରି ନପାରିଲେ ଗାତକୁ ଲକ୍ଷ୍ୟ କରି ତାହା ଫିଙ୍ଗାଯାଏ । ଖେଞ୍ଚିବାପକ୍ଷ ତାକୁ ବାଡ଼ିଦ୍ୱାରା ଆଗୋଳି ନପାରିଲେ ଏବଂ ସେଇଟି ଗାତ ପାଖରୁ ହାତେ ଜାଗା ମଧ୍ୟରେ ରହିଗଲେ ଖେଞ୍ଚିବା ଲୋକ ବାଡ଼ି ହସ୍ତାନ୍ତର କରିଦିଏ । ଯଦି ପିଲ ଦୂରରେ ପଡ଼େ ବାଡ଼ି ମାରି ତାକୁ ଉଠାଇ ଆହୁରି ଦୂରକୁ ପଠାଇବା ଚେଷ୍ଟା କରାଯାଏ । କିନ୍ତୁ ପିଲ ଉଠାଇଲାବେଳେ ମାଟି ଛୁଇଁବା ନିଷିଦ୍ଧ । ସେହିପରି ତିନିଥର କଲାପରେ 'ପିଲ' ଯେଉଁଠି ପଡ଼େ ସେହିଠାରୁ ଗାତର ଦୂରତା ନିର୍ଣ୍ଣୟ କରି 'ଲାଲ୍' ଡାକିବାକୁ ହୁଏ । ଅପରପକ୍ଷ ସ୍ୱୀକୃତ ଦେଲେ ପିଲକୁ ସେଠାରୁ ଉଠାଇ ଅଣାଯାଏ । ଅନ୍ୟଥା ପିଲ ପଡ଼ିବା ସ୍ଥାନଠାରୁ ଗାତ ପର୍ଯ୍ୟନ୍ତ 'ବାଡ଼ି' ଧରି ମପାଯାଏ । ଡାକ ଅପେକ୍ଷା ମାପିବା 'ଲାଲ' ସଂଖ୍ୟା ଏକ ହେଉ ବା ଏକାଧିକ ହେଉ, କମ୍ କିମ୍ବା ବେଶୀ ହେଲେ ବାଡ଼ି ଛାଡ଼ି ଦେବାକୁ ହୁଏ । ଅର୍ଥାତ୍ 'ତିନି ଲାଲ୍' ଡାକିଲାବେଳେ ମାପକଲେ ଯଦି ଅଠାଇଶ (୨୮) ବାଡ଼ି ହୁଏ ତେବେ ତାହା ମାତ୍ର ଦୁଇ ଲାଲ୍ ଏବଂ ବଳକି ବାଡ଼ି ହେଲେ ଗୁରିଲାଲ୍ । ସେପରି ସ୍ଥଳେ ବାଡ଼ି

ସ୍ବସ୍ଥାନ୍ତରିତ ହୁଏ । ଏ ନିୟମରେ ଯେ ପ୍ରଥମେ ନିର୍ଦ୍ଦିଷ୍ଟ ସଂଖ୍ୟକ ଲାଲ୍ ସଂଗ୍ରହ କରେ ସେ ଜିଣେ । ଏହା ପ୍ରାଚୀନ ଯୁଗରୁ ଚାଲିଆସୁଥିବା ଖେଳ ମଧ୍ୟରେ ଅନ୍ୟତମ ।

ଏହା ବ୍ୟତୀତ ଖୋ-ଖୋ, ଚକାଗିରି, ବସାଉଠା, ଡାଳମାଙ୍କୁଡ଼, ସାସ୍ଥା (ଲୁଚକାଳି) ପ୍ରଭୃତି ଖେଳ ପଲ୍ଲୀ ଅଞ୍ଚଳ ପିଲାଙ୍କ ମଧ୍ୟରେ ଏବେ ବି ପ୍ରଚଳିତ । ସେ ସବୁର ମୂଳ କେଉଁଠି କିଏ କହିବ ? କିନ୍ତୁ ସେ ସବୁ ଯେ କଳିଙ୍ଗର ନିଜସ୍ୱ ଖେଳ କହିବା ବାହୁଲ୍ୟ ମାତ୍ର ।

ପୁରୁଷ ଛଡ଼ା ନାରୀସମାଜରେ ଚିତ୍ତବିନୋଦନ ପାଇଁ ଯେଉଁ ଆଭ୍ୟନ୍ତରୀଣ ଖେଳମାନ ରହିଆସିଥିଲି, ତାହା ମନସ୍ତାତ୍ତ୍ୱିକ ଚିନ୍ତାଧାରାର ବାସ୍ତବ ପ୍ରତିଫଳନ କହିଲେ ଅତ୍ୟୁକ୍ତି ହେବ ନାହିଁ । ନାରୀ-ପୁରୁଷ ଉଭୟଙ୍କୁ ଧରି ସମାଜ—ଏକଥା କଳିଙ୍ଗବାସୀ ମର୍ମେ ମର୍ମେ ଉପଲବ୍ଧି କରିଥିଲି । ପୁରୁଷଯୋଗ୍ୟ କ୍ରୀଡ଼ା କୌତୁକ ସଙ୍ଗେ ସଙ୍ଗେ ନାରୀଜନୋଚିତ ସରଳ ଖେଳମାନ ଆବିଷ୍କାର କରି ସମାଜସଚେତନତାର ଦୃଷ୍ଟାନ୍ତ ଦର୍ଶାଇଥିଲି । ସେଗୁଡ଼ିକ ଯେପରି ଶାନ୍ତିଦାୟକ ସେହିପରି କ୍ଳାନ୍ତି ଅପନୋଦନ କରିବାରେ ସହାୟକ ଥିଲି । ନବବିବାହିତା କୁଳବଧୂ ଘରର ଯାବତୀୟ କର୍ମ ସାରି ଅଭିଆଡ଼ୀ ଝିଅମାନଙ୍କ ସହିତ ଏକାନ୍ତରେ ବସି ଯେଉଁ ଖେଳ ଖେଳୁଥିଲେ ସେ ମଧ୍ୟରେ ଧାଡ଼ି-ଧୋକଡ଼, କାସିନ୍ଦି, ବାର-ଆଠ, ଆଠ-ପାଞ୍ଚ ପ୍ରଭୃତି ପ୍ରଧାନ ଥିଲି ।

**ଧାଡ଼ିଧୋକଡ଼**—ଏହା ଦୁଇଜଣଙ୍କ ମଧ୍ୟରେ କୋଠି କଟାହୋଇ ଖେଳାଯାଏ । ଦୁଇପକ୍ଷ ନ' ନ' ଟି ପିକଧରି କୋଠି ଭିତର ଛକରେ ଗୋଟି ଗୋଟି କରି ଜଣକ ପରେ ଜଣେ ବସାନ୍ତି । ଲମ୍ବା ଚଉଡ଼ା ପାଞ୍ଚୋଟି ଗାରରେ କୋଠି ଲେଖାହୁଏ । ଜଣେ ଯଦି ସିଧାସଳଖେ ତିନୋଟି ପିକ ବସାଇଦିଏ ସେ ହେଲା 'ଧାଡ଼ି' ଏବଂ ଅପର ପକ୍ଷରୁ ବସିଥିବା ପିକ ମଧ୍ୟରୁ ସ୍ୱଇଚ୍ଛାରେ ଗୋଟିଏ ବାହାର କରନ୍ତିଏ । ପିକ ବସିଗଲି ପରେ ଛକରୁ ଛକକୁ ତାହା ଜଣକ ପରେ ଜଣେ ଘୁଞ୍ଚାନ୍ତି । ଉଭୟେ 'ଧାଡ଼ି' ଲକ୍ଷ୍ୟରଖି ପିକ ଚଳାନ୍ତି । କାରଣ 'ଧାଡ଼ି' ହେଲେ ଅନ୍ୟ ପକ୍ଷରୁ ପିକଟିଏ କମିଯାଏ । ଏହାର ନାଁ 'ଧୋକଡ଼' । ଯାହାର ପିକ ସଂଖ୍ୟା କମିଯାଏ ସେ ହାରେ । (ପ୍ରଦତ୍ତଚିତ୍ର ଦେଖନ୍ତୁ) ।

**କାସିନ୍ଦି**—ଏହାକୁ 'କାଞ୍ଜିଗାତ' ମଧ୍ୟ କୁହାଯାଏ । ଦୁଇ, ତିନି ଇଞ୍ଚ ବହଳ କାଠ ପଟା ଦିହରେ ଦୁଇଧାଡ଼ି ଛ' ଛ' ଟି ଏବଂ ଧାଡ଼ି ଶେଷ ମୁଣ୍ଡରେ ଦୁଇପାଖେ ଦୁଇଟି ମିଶି ଚଉଦଟି ଘର ଥାଏ । ଏହାକୁ କାସିନ୍ଦି ପଟା କହନ୍ତି । ପ୍ରତି ଘରେ ଚାରିଗଣ୍ଡା (ଗଣ୍ଡାକ ଚାରୋଟି) ଲେଖାଏଁ ଆପୋଚ (ତେନ୍ତୁଳି ମଞ୍ଜି) ରଖାଯାଏ । ଦୁଇଜଣରେ ଏ ଖେଳହୁଏ । ଧାଡ଼ିର ଡ଼ାହାଣପଟ ମୁଣ୍ଡିଘର ସହିତ ସାତୋଟି ଘର ଜଣକ ପାଇଁ ନିର୍ଦ୍ଦିଷ୍ଟ । ପ୍ରଥମେ କୌଣସି ଘରରୁ ପିକତକ ଉଠାଇ ଦକ୍ଷିଣାବର୍ତ୍ତି କ୍ରମେ ଚଉଦଟିଯାକ ଗୋଟି ଗୋଟି ପକାଯାଏ । ଯେଉଁଠି ତାହା ସରିଯାଏ ପାଖଘରରୁ ପୁଣି ପୋହଳଟି ଉଠାଇ ସେହି କ୍ରମରେ ପକାଇବାକୁ ହୁଏ । ସେ ମଧ୍ୟରେ ଖାଲି ଘରରେ ଗଣ୍ଡାଏ ପିକ ଜମାହେଲେ

ଚାହା ବାହାର କରି ନିଆଯାଏ । ଭୁଲବଶତଃ ପ୍ରତିପକ୍ଷ ଧାଡ଼ିର ଖାଲି ଘରରେ ପିକ ପଡ଼ିଗଲେ ହାତ ମୁଠାରେ ଧରିଥିବା ପିକତକ ଆରପକ୍ଷକୁ ଦେଇ ଦେବାକୁ ପଡ଼େ । ତା' ପରେ ଆର ପକ୍ଷର ପାଳି । ସେ କିନ୍ତୁ ବାମାବର୍ତ୍ତି କ୍ରମେ ଚାହା ପକାଇବା ଆରମ୍ଭ କରେ । ଏହି ନିୟମରେ ଯେ ଅଧିକ ପିକ ସଂଗ୍ରହ କରେ ସେ ଜିଣେ । (କାସିନ୍ଧ ପଟାର ଚିତ୍ର ଦ୍ରଷ୍ଟବ୍ୟ)

ଏଠାରେ ଉଲ୍ଲେଖନୀୟ ଯେ ଝିଅ ଶାଶୁଘର ଗଲାବେଳେ ଯୌତୁକ ପଦାର୍ଥ ସହିତ 'କାସିନ୍ଧ ପଟା'ଟିଏ ସାଙ୍ଗରେ ଧରି ଯାଇଥାଏ । ଅଦ୍ୟାପି ବହୁ ପୁରପଲ୍ଲୀରେ ଏ ବିଧି ପ୍ରଚଳିତ ।

**ବାରଆଠ**—ଏହା ଏକ କଉଡ଼ି ଖେଳ । ଆଡ଼-ସଳଖେ ସାତଟି ଲେଖାଏଁ ଘରଥିବା କୋଠିଟିଏ କଟାଯାଏ । ଦୁଇ ବା ଚାରିଜଣ ଦୁଇପକ୍ଷ ହୋଇନଥିବା ସ୍ୱତନ୍ତ୍ର ଭାବେ ବସି ଖେଳନ୍ତି । ପ୍ରତ୍ୟେକ ପିକ ସଂଖ୍ୟା ଆଠ । ଯୋଡ଼ି ପିକ ଦୁଇଟି ଏବଂ ଗୋଟିପିକ ଚାରୋଟି । ସାତୋଟି କଉଡ଼ି ଧରି ଦାନ ପକାଯାଏ । ଯେତୋଟି କଉଡ଼ି ଚିତହୋଇ ପଡ଼େ ଦାନ ସଂଖ୍ୟା ସେତିକ ବୋଲି ଧରାଯାଏ । ସାତଟିଯାକ ଏକାଭଳି ପଡ଼ିଲେ ଚିତ୍ ହେଉ ବା ଉବୁଡ଼ି ହେଉ—ଦାନ ସଂଖ୍ୟା 'ବାର' । କୋଠି ପ୍ରଥମ ଧାଡ଼ିର ମଝି ଘରରେ ସବୁ ପିକ ଥୁଆହୁଏ । ଜଣକ ପରେ ଜଣେ କଉଡ଼ିରେ ଦାନ ପକାନ୍ତି । ଯେତିକ ଦାନ ପଡ଼େ ସେତିକ ସଂଖ୍ୟକ ଘରକୁ ପିକ ବାହାରିଯାଏ । ସମାଙ୍କ ଦାନରେ ଯୋଡ଼ିପିକ ଘୁଞ୍ଚାଯାଏ—ଦାନ ସଂଖ୍ୟାର ଅଧାଘରକୁ ଅର୍ଥାତ୍ 'ଚାରି' ଦାନକୁ 'ଦୁଇଘର' ଏବଂ ବାର ପଡ଼ିଲେ ଛ' ଘର । କିନ୍ତୁ ସମ-ବିଷମ ସବୁ ସଂଖ୍ୟାର ଦାନରେ ଗୋଟିପିକ ଘୁଞ୍ଚିବାରେ ବାଧାନାହିଁ, ଠିକ୍ ସେତିକ ଘରକୁ । ସବୁ ପିକ ଦକ୍ଷିଣାବର୍ତ୍ତି କ୍ରମରେ ଗତି କରନ୍ତି । ପ୍ରଥମ ଧାଡ଼ି ବୁଲି ଆସିଲାପରେ ଦ୍ୱିତୀୟ ଧାଡ଼ିକୁ ଉଠିବାକୁ ପଡ଼େ । ତାକୁ ବୁଲିସାରି ତୃତୀୟ ଧାଡ଼ିକୁ ଉଠିବାକୁ ହୁଏ । ପୁଣି ଚାରିପଟ ବୁଲିଗଲା ପରେ ଶେଷରେ କୋଠିର ମଝି ଘରରେ ବସେ । ତା'ର ନାଁ ପାଚିଲା । ଗତିକଲାବେଳେ ଯଦି ଅପରପକ୍ଷର ଗୋଟିପିକ କିମ୍ବା ଯୋଡ଼ିପିକ ପଛରୁ ମାଡ଼ି ଆସି ଆର ପିକ ଉପରେ ଠିକ୍ ଦାନ ଲଗାଇ ପାରନ୍ତି ତେବେ ତାକୁ 'ମଲା' କୁହାଯାଏ, ଅର୍ଥାତ୍ ଚାହା ବାହାରକରାହୁଏ । 'ଗୋଟି' ଦ୍ୱାରା 'ଗୋଟି' ଏବଂ 'ଯୋଡ଼ି' ଦ୍ୱାରା 'ଯୋଡ଼ି' 'ମଲା'ହୁଏ । ପିକ ଛକରେ ଥିଲେ ମଲା ହୁଏ ନାହିଁ । ଧାଡ଼ି ମଝିଘର ସହିତ କୋଣ ଘରକୁ 'ଛକ' କୁହାଯାଏ । 'ମଲା' ପିକ କୋଠିକୁ ଫେରାଇ ଆଣିବାକୁ ହେଲେ 'ଗୋଟି' ପାଇଁ 'ଛ' ଏବଂ 'ଯୋଡ଼ି'ପାଇଁ 'ବାର'ଦାନ ପ୍ରଥମେ ଛାଡ଼ିବାକୁ ପଡ଼େ । ଆଗେ ଯାହାର ସବୁ ପିକ ପାଚିଲା ସେ ଜିତେ । (କୋଠି ଚିତ୍ର ଦ୍ରଷ୍ଟବ୍ୟ) ଘର ଭାଉଆସୁଣୀମାନେ ଏବେ ବି ଏହା ଖେଳୁଥିବା ଦୃଷ୍ଟିଗୋଚରହୁଏ ।

**ଆଠପାଞ୍ଚ**—ଏହା 'ବାର ଆଠ' ଖେଳର ଅନୁରୂପ ଏବଂ ସବୁ ନିୟମ ଅନୁସୃତ ହୁଏ । ପାର୍ଥକ୍ୟ ଭିତରେ ସେଥିରେ ସାତଟି କଉଡ଼ି ଓ ସର୍ବାଧିକ ଦାନ ସଂଖ୍ୟା "ବାର",ଏଥିରେ

ପାଞ୍ଚୋଟି କଉଡ଼ି ଏବଂ ସର୍ବାଧିକ ଦାନ ସଂଖ୍ୟା ଆଠ; ସେଥିରେ ଦୁଇଟି ଯୋଡ଼ି ଗୋଟି ପିକ ଝୁରି, ଏଥିରେ ଗୋଟିଏ ଯୋଡ଼ି ଓ ଗୋଟିପିକ ଦୁଇ । ସେଥିରେ ସବୁ କଉଡ଼ି ଏକାପରି ପଡ଼ିଲେ ଦାନସଂଖ୍ୟା ବାର; କିନ୍ତୁ ଏଥିରେ ଦାନସଂଖ୍ୟା ଆଠ । ଆଉ ବାଗେ ସାତଟି ଲେଖାଏଁ କୋଠି ସେଥିରେ ଥିଲାବେଳେ ଏଥିରେ ପାଞ୍ଚୋଟି । ଏତିକି ଛଡ଼ା ଆଉ ସବୁ ସମାନ । (ଚିତ୍ର ଦେଖନ୍ତୁ)

ଏହା ବ୍ୟତୀତ ଆହୁରି କେତେ ଯେ ଖେଳ ପ୍ରଚଳିତ ଥିଲା ଏବଂ କେତେ କେଉଁଠି ଅଜ୍ଞାତ ରହିଛି ତାହା ଅଧିକ ସନ୍ଧାନ ସାପେକ୍ଷ । ଯାହାହେଉ ଏତେବେଳକୁ କାଁ ଭାଁ ଯେତିକି ଦୃଷ୍ଟିଗୋଚର ହୁଏ, ସେ ସବୁ ଯେ ପାରଂପରିକ ଭାବରେ ଓଡ଼ିଆ ସମାଜରେ ଚାଲି ଆସୁଛି ଏଥିରେ ଦ୍ୱିମତ ରହି ନପାରେ । କେବଳ ଖେଳକୌତୁକ ନୁହେଁ, ବର୍ତ୍ତମାନ ପରିଦୃଷ୍ଟ ନୃତ୍ୟ ଗୀତ ସଙ୍ଗୀତାଦିର ସ୍ୱରୂପ ଅନୁଶୀଳନ କଲେ ମଧ୍ୟ ସେଗୁଡ଼ିକ କ୍ରମ ବିକଶିତ ଏକ ସାଂସ୍କୃତିକ ପରଂପରାର ପରିଣାମ ବୋଲି ହୃଦୟଙ୍ଗମ ହୁଏ । ସ୍ମରଣାତୀତ କାଳରୁ ପୁରୁଷାନୁକ୍ରମେ ଚାଲି ଆସି ନଥିଲେ ତାହା ଏଯାବତ୍ ଜାତିର ମଜ୍ଜାଗତ ହୋଇ ରହି ନଥାନ୍ତା ।

**ନୃତ୍ୟ**—ବର୍ତ୍ତମାନ ଦେଖିବା ନୃତ୍ୟ କଥା । କଳିଙ୍ଗବାସୀ ଶବର ଅତୀବ ନୃତ୍ୟପ୍ରିୟ । ଏହାର ନୃତ୍ୟ ତୌର୍ଯ୍ୟତ୍ରିକ ପ୍ରଧାନ । ଗୀତ ସହିତ ବାଦ୍ୟ ଓ ବାଦ୍ୟର ତାଳେ ତାଳେ ନୃତ୍ୟକରି ସେ ଅପାରଆନନ୍ଦ ଅନୁଭବ କରେ । ସେ ଆହାରବିନା କିଛିଦିନ ସ୍ୱଚ୍ଛନ୍ଦରେ ଅତି-ବାହିତ କରିପାରେ;କିନ୍ତୁ ନୃତ୍ୟ ନହେଲେ ସେ ବଞ୍ଚି ପାରେନାହିଁ । ଡେକୋବର୍ଦ୍ଧଙ୍କ'ମହୁଲି' ପାନକରି ଗୀତ ଗାଇ ନାଚବାରେ ତାର ଉଲ୍ଲାସ କହିଲେ ନସରେ । ଏ ଦୃଷ୍ଟିରୁ ଜୀବନକୁ ଉପଭୋଗ କରିବାରେ ଶବରଗୋଷ୍ଠୀର ସ୍ଥାନ ସର୍ବୋଚ୍ଚ କହିଲେ ଚଳେ । ଝୁଙ୍ଗୁ, ତାମୁଡ଼ି, କୁରଂରଙ୍ଗନ୍, ଢୋଲ, ଢାଂପ, ଦଗାଦନ୍, ଘୁମୁରା ପ୍ରଭୃତି ବାଦ୍ୟଯନ୍ତ୍ର ହାତରେ ଧରିଆଉ କରି ସ୍ୱର ଲହରୀ ସୃଷ୍ଟି କରିବା ତାର ଜନ୍ମଗତ ଗୁଣ । ସ୍ୱର ସଙ୍ଗେ ତାଳ ରଖି ଯୁବକ ଯୁବତୀ ପରସ୍ପର ହାତ ଛନ୍ଦି ଚକ୍ରାକାରରେ ନୃତ୍ୟ କରିବା ପ୍ରଥା ପୁରୁଷାନୁକ୍ରମେ ବଜାୟ ରହିଆସିଛି । ଗିରି ଶିଖରବାସୀ ଶବର ଓ ଓଡ଼ିଆ ସମାଜ ମଧ୍ୟରେ ଅଚ୍ଛେଦ୍ୟ ସଂପର୍କ ରହିଥିବାଯୋଗୁ ଏବେ ସୁଦ୍ଧା ମିତ, ସଙ୍ଗାତ, ବଉଳ, ସତ୍ୟଆମ୍ବ ବସିବା ପରମ୍ପରାର ଲୋପ ଘଟିନାହିଁ ଏବଂ ଶୁଭକାର୍ଯ୍ୟ ପର୍ବପର୍ବାଣି, ଯାତ୍ରା ମହୋତ୍ସବାଦିରେ ଉଭୟପକ୍ଷ ଯଥାଶକ୍ତି ଉପହାର ଧରି ନୃତ୍ୟଗୀତରେ ଯୋଗଦେବା ପ୍ରଥା ଅବ୍ୟାହତ ରହିଛି । ଏଣୁ ସ୍ଥଳବାସୀ ପାଇକ ସମାଜରେ ଶାବରୀ ନୃତ୍ୟ ପରମ୍ପରା କ୍ରମେ କ୍ରମେ ବିକଶିତ ହୋଇ 'ଓଡ଼ିଶୀ' ନାମରେ ଏକ ଅଭିନବ ରୂପ ଧାରଣ କରିଛି ।

ଅଧୁନାତନ ଭାରତବର୍ଷରେ ଯେଉଁ ଜାତୀୟ ନୃତ୍ୟମାନ ସ୍ୱୀକୃତିଲାଭ କରିଛି ସେ ମଧ୍ୟରେ 'ଓଡ଼ିଶୀ' ଅନ୍ୟତମ । ଭାରତନାଟ୍ୟ, କଥକ, ମଣିପୁରୀ, କଥାକଲି ଓ କୁଚିପୁଡ଼ି

ଭଳି ଶାସ୍ତ୍ରୀୟରୂପେ ସମାନ ମାନ୍ୟତା ପ୍ରାପ୍ତ ହେଲେ ସୁଦ୍ଧା ଉତ୍ପତ୍ତି ଦୃଷ୍ଟିରୁ ବିଚାରକଲେ ଏହା ସର୍ବାପେକ୍ଷା ପ୍ରାଚୀନ ବୋଲି ମନେହୁଏ । 'ଓଡ଼ିଶୀ' ନୃତ୍ୟ ତୌର୍ଯ୍ୟତ୍ରିକ ପ୍ରଧାନ ଅର୍ଥାତ୍ ଗୀତ-ବାଦ୍ୟ-ନୃତ୍ୟର ବିଚିତ୍ର ସମାହାରରେ ସୃଷ୍ଟ । ଏହାର ଅଭିନୟ ଓ ଅଙ୍ଗଭଙ୍ଗୀ ଅନନ୍ୟସାଧାରଣ । କଟିମୁଦ୍ରା, ବକ୍ଷମୁଦ୍ରା, ମସ୍ତକ ଚାଳନା ଓ ତ୍ରିଭଙ୍ଗୀ ଛନ୍ଦରେ ପଦଚାଳନା ସ୍ୱତନ୍ତ୍ର ଧରଣର । ତାହା ଯେପରି ମାଧୁର୍ଯ୍ୟ ଗୁଣଯୁକ୍ତ ସେହିପରି ଚିତ୍ତାକର୍ଷକ । ସୁତରାଂ ଏହା ଏକାଧାରରେ ପ୍ରାଚ୍ୟ-ପାଶ୍ଚାତ୍ୟ ଉଭୟ ନୃତ୍ୟ ପ୍ରେମୀଙ୍କୁ ମୁଗ୍ଧ କରିଆସିଛି । କିନ୍ତୁ ଏହାର ଉତ୍ପତ୍ତି ଓ କ୍ରମପରିଣତି କଥା ଚିନ୍ତା କଲେ ତାହା ଯେତିକି ରହସ୍ୟମୟ ସେତିକି କୌତୂହଳପ୍ରଦ । ଏହା ଥିଲା ପ୍ରାଗୈତିହାସିକ କଳିଙ୍ଗର ଜନପ୍ର ନୃତ୍ୟ—'ମାହାରି' ନୃତ୍ୟ ।

'ମାହାରି' ଶବ୍ଦର ମୂଳତତ୍ତ୍ୱ ଖୋଜିବାକୁ ଯାଇ କିଏ ତାକୁ 'ମହରୀନାରୀ', କିଏ 'ମନୋହାରୀ' କିଏ ବା 'ମାଧୁରୀ' ପ୍ରଭୃତି କାଳ୍ପନିକ ଶବ୍ଦର ଅପଭ୍ରଷ୍ଟ ରୂପ ବୋଲି କହନ୍ତି, ଯାହା ଆଦୌ ଯୁକ୍ତିସଙ୍ଗତ ନୁହେଁ । କାରଣ ପ୍ରାଚୀନ କଳିଙ୍ଗ୍ କାହିଁକି ଏବେ ବି ଦକ୍ଷିଣ ଓଡ଼ିଶାରେ 'ମାହାରି' ନାମକ ଏକ 'ଗୋଷ୍ଠୀ' ରହିଥିବା ଦେଖାଯାଏ । 'ମାହାରି' ଅର୍ଥ ପଶୁ ଜଗୁଆଳ । ଏହା ଗଉଡ଼ ସଂପ୍ରଦାୟର ଶାଖାବିଶେଷ । ଗୋପପୁରିଆ, ପୋଲଦଣ୍ଡିଆ ଏବଂ ଆପଟ ଗଉଡ଼ ଶାଖା ମଧ୍ୟରୁ 'ମାହାରି'କୁ ଗୋପପୁରିଆ ସଂପ୍ରଦାୟ ବୋଲି କୁହାଯାଏ । ପଶୁଚରାଇବା ଏହାଙ୍କ କୁଳବୃତ୍ତି । ଗାଈ, ଗୋରୁ, ଛେଳି, ମେଣ୍ଢା, ଘୁଷୁରି, ମଇଁଷି ପ୍ରଭୃତି ଗୃହପାଳିତ ପଶୁଙ୍କୁ ବଣ ଜଙ୍ଗଲ ବା ପଡ଼ିଆ ଜମିକୁ ଅଡ଼ାଇ ଅଡ଼ାଇ ନେଇ ଡାଳ, ପତ୍ର, ଘାସ ଖୋଜି ଖାଇଲାବେଳେ ସେମାନଙ୍କୁ ଜଗି ରହନ୍ତି । ସଞ୍ଜ ହେଲେ ଏକାଠି କରି ଗାଁକୁ ଆଣନ୍ତି । ପଶୁ ନାମ ଅନୁସାରେ ସେମାନଙ୍କୁ ଗୋରୁ ମାହାରି, ଛେଳି ମାହାରି, ମଇଁଷି ମାହାରି ଇତ୍ୟାଦି କୁହାଯାଉଥିଲା । ସାଧାରଣତଃ ଅଳ୍ପ ବୟସର ପୁଅ ଝିଅ 'ମାହାରି' କର୍ମରେ ନିଯୁକ୍ତ ରହୁଥିଲେ । କୃଷିପ୍ରଧାନ ସମାଜରେ ବ୍ୟକ୍ତି ଓ ପରିବାର କୃଷି ଉପରେ ନିର୍ଭର କରି ଚଳୁଥିବା ଯୋଗୁ ସନ୍ତାନସନ୍ତତିଙ୍କୁ ଆବାଲ୍ୟରୁ ସେଥିପ୍ରତି ଆକୃଷ୍ଟ କରିବା ସେମାନଙ୍କ ଲକ୍ଷ୍ୟ ଥିଲା । ସୁତରାଂ କୃଷିକାର୍ଯ୍ୟର ପ୍ରଧାନ ସାଧନ ଗୋରୁ ଗାଈଙ୍କ ଦାୟିତ୍ୱ ସେମାନଙ୍କୁ ଅର୍ପଣ କରାଯାଉଥିଲା । ପ୍ରତି ପରିବାରରୁ ଜଣେ ଲେଖାଏଁ ପୁଅ ବା ଝିଅ ସକାଳ ପହରୁ ତୋରାଣିଭାତ ଖାଇ 'ମାହାରି' ହୋଇ ବାହାରି ପଡ଼ନ୍ତି ଯେ ଯାହାର ଗୋଠ ଧରି—ଫେରନ୍ତି ସଞ୍ଜବେଳକୁ । ଗାଈ ଗୋରୁଙ୍କୁ ସ୍ୱଚ୍ଛନ୍ଦ ଚରଣ ପାଇଁ ତୃଣବହୁଳ ସ୍ଥାନରେ ଛାଡ଼ିଦେଇ ବିଭିନ୍ନ ଆମୋଦପ୍ରମୋଦରେ ମଜ୍ଜିଯାଆନ୍ତି । କିଏ ଖେଳ କୌତୁକରେ ମାତିଲାଣି ତ କିଏ ନୃତ୍ୟ ଗୀତରେ । ପୁଅପିଲାଏ ଡାଳମାଙ୍କୁଡ଼ି, ବୋହୂଚୋରି, ବାଉଦାଣ୍ଡି ଆଦି ଖେଳରେ ମାତିଲାବେଳେ ଝିଅମାନେ ଗୀତବୋଲି ନାନା ଭଙ୍ଗୀରେ ନୃତ୍ୟ କରି ସମୟ ଅତିବାହିତ କରନ୍ତି । ଇତର କୁଳର ହେଲେ ସୁଦ୍ଧା ପଶୁଚାରଣ ବେଳେ ପୁଅମାନଙ୍କୁ 'ମାହାରି' ଟୋକା ଓ ଝିଅଙ୍କୁ 'ମାହାରୀ' ଟୋକୀ କୁହାଯାଉଥିଲା । ପୁଅଙ୍କଠାରୁ ଅଲଗା ରହି ଝିଅମାନେ ସାଙ୍ଗସାଥୀ ମେଳରେ ଫୁଲ ତୋଳିବା,

ମାଳଗୁନ୍ଥିବା, ନୃତ୍ୟ କରିବା, ଗୀତ ବୋଲିବା ପ୍ରଭୃତିଦ୍ୱାରା ଆନନ୍ଦରେ କାଳକ୍ଷେପଣ କରୁଥିଲେ । ଦୈନନ୍ଦିନ ଅଭ୍ୟାସରୁ କୋମଳ କଣ୍ଠସ୍ୱର ଓ ଛନ୍ଦାସ୍ଥିତ ପଦସଞ୍ଚାଳନାର ସମନ୍ୱୟରେ ଯେଉଁ ଅନବଦ୍ୟ ମାଦକତା କାଳକ୍ରମେ ସୃଷ୍ଟି ହୋଇପଡ଼ିଲା ତାହା ବୋଧହୁଏ ନୃତ୍ୟପ୍ରିୟ ଗ୍ରାମୀଣ ସମାଜକୁ ଆକୃଷ୍ଟ ନକରି ରହିପାରି ନଥିଲା । ଫଳରେ କନ୍ୟାଙ୍କ ମଧ୍ୟରେ ଆବଦ୍ଧ ନୃତ୍ୟଗୀତ ବାଳ-ବୃଦ୍ଧ-ବନିତା ସମସ୍ତଙ୍କର ଚକ୍ଷୁରୋଚକ ହୋଇ ଉଠିଥିଲା । ସେତିକି ନୁହେଁ, ତାହା ସର୍ବୋତ୍କୃଷ୍ଟ ବସ୍ତୁଭାବେ ଦେବତାଙ୍କ କାର୍ଯ୍ୟରେ ଉତ୍ସର୍ଗୀକୃତ ହେଲା । କାରଣ ସର୍ବାପେକ୍ଷା ସୁନ୍ଦର, ସୁବାସିତ ବା ସୁସ୍ୱାଦୁ ପଦାର୍ଥ ପ୍ରଥମେ ଦେବତାଙ୍କୁ ସମର୍ପଣ ନକଲେ ଓଡ଼ିଆମାନଙ୍କ ମନରେ ତୃପ୍ତି ଆସେ ନାହିଁ । ତାଙ୍କ ଦୃଷ୍ଟିରେ ଉତ୍ତମ ପଦାର୍ଥ ମାତ୍ରେ ପ୍ରଥମେ ଭୋଗ ପାଇବାର ଅଧିକାର ଦେବତାଙ୍କର । ସେହି ପ୍ରଥା କଳିଙ୍ଗ ଜନସାଧାରଣ ମନରୁ ଏବେ ବି ଦୂର ହୋଇନାହିଁ । ସେହି କାରଣରୁ ବୋଧହୁଏ ଅବୋଧ 'ମାହାରୀ' କନ୍ୟାଙ୍କ ଦ୍ୱାରା ଗୋ-ଗୋଷ୍ଠରେ ଅନୁଷ୍ଠିତ ଅବସରବିନୋଦନ ନୃତ୍ୟ ଉତ୍ତର କାଳରେ ସମାଜର ସ୍ୱୀକୃତି ଲାଭକରି ଦେବତା ଉପାସନାର ଅଙ୍ଗରୂପେ ତାଙ୍କୁ ପ୍ରସନ୍ନ କରିବା କାର୍ଯ୍ୟରେ ବ୍ୟବହୃତ ହେଲା । ମୂଳତଃ ମାହାରୀ କନ୍ୟାଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଯୋଗୁ ତାହା 'ମାହାରି ନୃତ୍ୟ' ନାମରେ ପ୍ରସିଦ୍ଧି ଲାଭକଲା । ଅବଶ୍ୟ କାଳର କ୍ରମ ବିବର୍ତ୍ତନ ମଧ୍ୟରେ ବାହ୍ୟାକୃତିରେ ପରିବର୍ତ୍ତନ ଦୃଷ୍ଟ ହେଲେ ସୁଦ୍ଧା ଅନ୍ତରଙ୍ଗ ଅବିକୃତ ରହିଛି । ମାହାରି 'ମାହାରୀ' ହୋଇ ରହିଛି । କିନ୍ତୁ ପ୍ରଶ୍ନ ଉଠେ, ଯେଉଁ କନ୍ୟାମାନେ ଏହାର ଆଦି ପ୍ରବର୍ତ୍ତିକ ତାଙ୍କୁ ପ୍ରେରଣା ଦେଲା କିଏ ? କେଉଁଠୁ ଶିଖିଲେ ସେମାନେ ? ବାଳକ ମନ— ନଦେଖିଲେ ବା ନଶୁଣିଲେ ଗାଇବା ନାଚିବା ସହଜ ନୁହେଁ । ଏଣୁ ଅନୁମାନ ହୁଏ, ପର୍ବପର୍ବାଣି ଦିନରେ ଗାଁଭିତରେ ମା-ମାଉସୀ ମିଶି ତାଳ ଲୟ ମିଶ୍ରିତ ଯେଉଁ ଲୋକ ନୃତ୍ୟ ପ୍ରଦର୍ଶନ କରିଆସୁଥିଲେ ତା'ରି ଅନୁକରଣରେ ସେମାନେ ବୃକ୍ଷମୂଳ ଦେବଦେବୀଙ୍କ ଆଗରେ ତଦ୍ରୂପ ଆଚରଣ କରିଆସିଥିଲେ । ଏଥିରେ କେହି ବାଧା ଦେବାର ନଥିଲା— ବାଧା ଦେବାର କାରଣ ବି ନଥିଲା—ଯେହେତୁ ତାହା ଥିଲା ଅନାବିଳ, ପବିତ୍ର ଏବଂ ମନୋରଞ୍ଜକ ଏବଂ ଦେବତା ସେଥିରେ ସଂଶ୍ଳିଷ୍ଟ । ଉନ୍ନତ ବାଦ୍ୟଯନ୍ତ୍ର ସହଯୋଗରେ ତାହାହିଁ ବିଚିତ୍ର ରୂପ ଧାରଣ କରି ଆସ୍ତେ ଆସ୍ତେ ଲୋକ ପ୍ରସିଦ୍ଧ ହୋଇଉଠିଲା ଏବଂ ନାଟ୍ୟଶାସ୍ତ୍ର ଲେଖାହେଲା ବେଳକୁ ସ୍ୱତନ୍ତ୍ର ନୃତ୍ୟ ରୂପେ ଗୃହୀତ ହୋଇ 'ଉଡ୍ର ମାଗଧୀ' ଶୈଳୀ ନାମରେ ନାମିତ ହେଲା । ତାକୁହିଁ ଆମେ 'ଓଡ଼ିଶୀ' କହୁ ।

ଆଗରୁ ସୂଚନା ଦିଆଯାଇଛି, 'ଉଡ୍ର' କଳିଙ୍ଗର ପର୍ଯ୍ୟାୟବାଚୀ ଶବ୍ଦ । ଏହା ବହୁକାଳ ପର୍ଯ୍ୟନ୍ତ ମଗଧାଧୀନ ରହି ମାଗଧୀ ସଭ୍ୟତା ଦ୍ୱାରା ପ୍ରଭାବିତ ଥିବା ହେତୁ ବୋଧହୁଏ ଓଡ଼ିଶୀକୁ 'ଉଡ୍ର-ମାଗଧୀ' ଆଖ୍ୟା ଦିଆଯାଇଥିଲା । ପ୍ରକୃତପକ୍ଷେ କିନ୍ତୁ ତାହା ଏକ ସ୍ୱତନ୍ତ୍ର ନୃତ୍ୟ ଶୈଳୀ । ଭାବ ଓ ବିଭାବ ଦୃଷ୍ଟିରେ ଏକାବେଳକେ ଭିନ୍ନ । ଇତର ଶୈଳୀଠାରୁ

ଏହାର ସ୍ୱାତନ୍ତ୍ର୍ୟ ହେଉଛି—ଅନ୍ୟ ସବୁ ତାଳାନୁଗ ଓ ବାଦ୍ୟାନୁଗ ଥିଲାବେଳେ ଏ ମୁଖ୍ୟତଃ ଗୀତାନୁଗ । ଅବଶ୍ୟ ତାଳଯୁକ୍ତ ନୃତ୍ୟ ମନୋରଞ୍ଜକ ନୁହେଁ, କିନ୍ତୁ ଓଡ଼ିଶୀ ନୃତ୍ୟର ବିଶେଷତ୍ୱ ହେଲା ତାଳଲୟାନ୍ୱିତ ଗୀତ ସହିତ ଥିବା 'ଅଭିନୟ' । ଏଥିରେ ଗୀତର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଆଦିବାସୀ ସମ୍ପ୍ରଦାୟର ନୃତ୍ୟଶୈଳୀ ଏଥିରେ ଅକ୍ଷୁଣ୍ଣଥିବା ଅନୁଭୂତ ହୁଏ । ଉଡ୍ରମାଗଧୀ ଛଡ଼ା ନାଟ୍ୟଶାସ୍ତ୍ରରେ ଦାକ୍ଷିଣାତ୍ୟା, ଅବନ୍ତୀ ଓ ପାଞ୍ଚାଳୀ ନାମରେ ଆଉ ତିନୋଟି ଶୈଳୀର ଉଲ୍ଲେଖ ରହିଛି । ନାଟ୍ୟଶାସ୍ତ୍ର ପ୍ରଣେତା ଭରତ ମୁନିଙ୍କ ଆବିର୍ଭାବ କାଳକୁ, ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀବୋଲି ଧରନେଲେ, ଉଡ୍ର ମାଗଧୀ ଶୈଳୀର ନୃତ୍ୟ କଳିଙ୍ଗରେ ପ୍ରସାର ଲାଭ କରିଥିଲାବୋଲି ଅନାୟାସରେ କୁହାଯାଇପାରେ । ପୁନଶ୍ଚ ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର ଉଦୟଗିରି ରାଣୀଗୁମ୍ଫା ଦେହରେ ନୃତ୍ୟରତା ଯୁବତୀ ଚିତ୍ର ସମ୍ବଳିତ ପ୍ରସ୍ତରାସ୍ତରଣକୁ ସେକାଳର 'ରଙ୍ଗମଞ୍ଚ'ବୋଲି ସ୍ଥିରକରାଯାଇଛି । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀ ସରିକି ଯଦି ରଙ୍ଗମଞ୍ଚ ସୃଷ୍ଟିହୋଇ ନୃତ୍ୟ ପରିଚାଳନା କରାଯାଇପାରୁଥିଲା , ତେବେ ସେତେବେଳକୁ କଳିଙ୍ଗର ମୂଳ 'ମାହାରୀ'ନୃତ୍ୟ କ୍ରମବିକାଶ ଲାଭକରି ବୋଧହୁଏ ଜନମନାକର୍ଷକ ଏକ ବିଧିବଦ୍ଧ ନୃତ୍ୟରେ ପରିଣତ ହୋଇସାରିଥିଲା ଯାହାକୁ କି 'ଓଡ଼ିଶୀ' ବିନା ଅନ୍ୟ କିଛି କୁହାଯାଇ ନପାରେ । ଅବଶ୍ୟ ଉତ୍ତରକାଳରେ ତାହାକୁ କିଏ 'ଦେବଦାସୀ' ନୃତ୍ୟ କିଏ ବା 'ଗୋଟିପୁଅ ନାଚ' ଆଉ କିଏ ବା 'ସଖୀନାଚ'ର ରୂପାନ୍ତରବୋଲି କହିଲେ ସୁଦ୍ଧା ତାହାର ଆତ୍ମସତ୍ତା ଲୁପ୍ତ ହୋଇନାହିଁ କିମ୍ବା ମୂଳ 'ମାହାରୀ' ନାମରେ ପରିବର୍ତ୍ତନ ଘଟିନାହିଁ । ବରଂ ସେଥିରେ 'ଦାକ୍ଷିଣାତ୍ୟା' ଅଙ୍ଗୀଭୂତ ହେବାଯୋଗୁ ଲାସ୍ୟ ଓ ଅଭିନୟ ମିଶି 'ମାଦଳ' ସହଯୋଗରେ ଏକ ବିଲକ୍ଷଣ ରୂପ ଧାରଣ କରିଛି । ତା'ବ୍ୟତୀତ କନ୍ଧ, ଶବର, ପରଜା ପ୍ରଭୃତି ବନବାସୀ ଯୁବତୀଙ୍କ ନୃତ୍ୟକାଳୀନ ବେଶଭୂଷା ସହିତ ଓଡ଼ିଶୀ ନୃତ୍ୟର ସାଜସଜ୍ଜା ତୁଳନା କଲେ ମଧ୍ୟ ଏ ଧାରଣା ଆହୁରି ଦୃଢ଼ୀଭୂତ ହୁଏ । ନୃତ୍ୟରତା ଶବର ଯୁବତୀଙ୍କ ମସ୍ତକ, ବାହୁ, ଗଳା ଓ କର୍ଣ୍ଣରେ ଫୁଲମାଳ ଓ କଟିରେ ଧଳାପଟି ସହିତ ଓଡ଼ିଶୀ-ନର୍ତ୍ତକୀର ବେଶଭୂଷାର ନିବିଡ଼ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଓଡ଼ିଶୀ ନୃତ୍ୟର କଟିମୁଦ୍ରା ଓ ପାଦପତନ ଭଙ୍ଗୀ ମଧ୍ୟ ଶବର ଯୁବତୀଙ୍କ ଅନୁରୂପ ମନେହୁଏ । ନୃତ୍ୟକଲାବେଳେ ଶବରୀଙ୍କ ପୃଷ୍ଠପଟେ ବାଳକମାନେ ଠିଆହୋଇ ବୋଲୁଥିବା ଗୀତ ସଦୃଶ ପାର୍ଶ୍ୱଗାୟକଙ୍କ ଗୀତଦ୍ୱାରା ଓଡ଼ିଶୀ ନୃତ୍ୟ ସରସ ଓ ସାବଲୀଳହେବା ସଙ୍ଗେ ସଙ୍ଗେ 'ତୌର୍ଯ୍ୟତ୍ରିକ' ଆଖ୍ୟା ଧାରଣ କରିଥାଏ । ତୌର୍ଯ୍ୟତ୍ରିକ କହିଲେ ଗୀତ-ବାଦ୍ୟ-ନୃତ୍ୟର ସମାହାର । ଏହାକୁ ଶବର ଭାଷାରେ 'ତଙ୍ଗ୍ସଙ୍ଗ୍', 'ତଙ୍ଗ୍-ସଙ୍ଗଙ୍ଗ୍' ଓ 'ତଙ୍ଗଙ୍ଗ୍-ସଙ୍ଗଙ୍ଗ୍' କୁହାଯାଏ ।

ଉପର ବର୍ଣ୍ଣିତ 'ମାହାରୀ' ନୃତ୍ୟ ଭଳି ପୁରୁଷ ସମାଜରେ ଶାରୀରିକ ଶକ୍ତିପ୍ରଧାନ କେତେକ ନୃତ୍ୟ ରହିଥିବା ଅନୁମିତ ହୁଏ । ବର୍ତ୍ତମାନ ଦକ୍ଷିଣ କଳିଙ୍ଗର ଗାଁଗହଳରେ

ରଣପା, ଚକ୍ରଦଣ୍ଡା, ଖଣ୍ଡାବୁଲାଣ, ବାଘନାଚ, କଲକଲା ପ୍ରଭୃତି ଯେଉଁ ନୃତ୍ୟ ଯୁଗଯୁଗ ଧରି ଚଳିଆସୁଛି ତାହା ପ୍ରାଚୀନ ଯୁଗର ଲୁପ୍ତାବଶେଷ କହିବାରେ ଅସଙ୍ଗତ ନାହିଁ । ପ୍ରଥମେ ସମର କୌଶଳାଭ୍ୟାସର ଅଙ୍ଗ ବିଶେଷରୂପେ ସେଗୁଡ଼ିକୁ ଉଦ୍‌ଭାବନ କରାଯାଇଥିଲା । ତାହାରି ମାଧ୍ୟମରେ ଯୁଦ୍ଧ ବିଶାରଦ କାଳିଙ୍ଗୀ ବୀରଙ୍କ ଶାରୀରିକ ଦକ୍ଷତା ପରୀକ୍ଷିତ ହେଉଥିଲା । ସୁସ୍ଥ ସବଳ ଯୁବକମାନେ ସେଥିରେ ଅଂଶଗ୍ରହଣ କରୁଥିଲେ । ସାମାଜିକ ଉତ୍ସବ ଅବସରରେ ତାହା ଯେପରି ମନୋରଞ୍ଜକ ସେହିପରି ପୌରୁଷର ପରିଚାୟକ ଥିଲା । ଦୁଇହାତ ଉଚ୍ଚ ଶକ୍ତ କାଠଖଣ୍ଡ ଉପରେ ପାଦରଖି ସହଜ ଉପାୟରେ କିପରି ଶତ୍ରୁ ସଂହାର କରିବାକୁ ହୁଏ 'ରଣପା' ନୃତ୍ୟଭଙ୍ଗୀରେ ପ୍ରଦର୍ଶିତ ହୁଏ । କାଠ ବା ବାଉଁଶ ତିଆରି ଅରଯୁକ୍ତ ଗୋଲାକାର ଚକ୍ରକୁ ତଡ଼ିତ୍ ବେଗରେ ଘୂରାଇ ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବା କୌଶଳ 'ଚକ୍ରଦଣ୍ଡା' କ୍ରୀଡ଼ାରେ ଶିକ୍ଷା ଦିଆଯାଉଥିଲା । ସେହିପରି 'ଖଣ୍ଡାସାଧନ' ମଧ୍ୟ । ଦୁଇ ବା ଚାରୋଟି ଦୀର୍ଘଖଣ୍ଡା ଦୁଇହାତରେ ତଳ ଉପର କରି ଛନ୍ଦି ସମରକ୍ଷେତ୍ରରେ ଏକାକୀ କିପରି ପ୍ରତିପକ୍ଷ ସେନା ଦଳର ସମ୍ମୁଖୀନ ହେବାକୁ ହୁଏ, ତା'ର ନମୁନା ସେଥିରେ ଦେଖିବାକୁ ମିଳେ । ତା'ଛଡ଼ା 'ବାଘନାଚ' ନାମରେ ଆଉ ଏକ ବିଚିତ୍ର ଧରଣର ନାଚ ଥିଲା । ପାହୁଲ ପକାଇ ଆକ୍ରମଣଭଙ୍ଗୀ ଶିକ୍ଷା କରିବା ତାହାର ଲକ୍ଷ୍ୟ । ସର୍ବାଙ୍ଗ ହଳଦିବୋଳି ମଝିରେ ବାଉଁଶ ପତ୍ରର ଆକୃତିର କଳାଗାରମାନ କାଟି ନର୍ତ୍ତକର ମୁହଁକୁ ବାଘ ମୁହଁପରି ଚିତ୍ରିତ କରାଯାଏ । ତା' ଚାରିପଟେ ଯୁଦ୍ଧବାଦ୍ୟ ଅନୁରୂପ ତାଳେ ତାଳେ ଚାଙ୍ଗୁ ବା ଢୋଲ ବଜାଯାଏ । ବାଦ୍ୟଧ୍ୱନି ଅନୁସରଣରେ ନର୍ତ୍ତକ ଝେପାମାନମାରି ନାଚିବା ଆରମ୍ଭ କରେ । ସ୍ୱଚ୍ଛନ୍ଦ ଗତିରେ ଉଚ୍ଚାବଚ ସ୍ଥାନକୁ ଉଠି ବ୍ୟାଘ୍ରଭଙ୍ଗୀ ପ୍ରଦର୍ଶନ କରୁଥାଏ । ଉତ୍ତମ ଶାରୀରିକ ସ୍ୱାସ୍ଥ୍ୟବାନ୍ ପକ୍ଷରେ ହିଁ ତାହା ସମ୍ଭବ ହୋଇଥାଏ । 'କଲକଳା' ଏକ ରଣଚଣ୍ଡୀ ନୃତ୍ୟ । ନର୍ତ୍ତକକୁ ନାରୀ ଶୈଳୀରେ କଛଟା ପିନ୍ଧାଇ ସର୍ବାଙ୍ଗ କଳା ବୋଳିଯାଏ । ବିକଟାକାର ମୁଖଟିଏ ଲେଖାଥିବା ତ୍ରିକୋଣ ବା ଚତୁଷ୍କୋଣ ବିଶିଷ୍ଟ ବାଉଁଶପଟିରେ କଦାକାର ଚକ୍ଷୁକର୍ଣ୍ଣ ନାସିକାଦି ଚିତ୍ରକରି ଦୁଇପଟୁ ଦଉଡ଼ିଟାଣି ମୁହଁରେ ବନ୍ଧାଯାଏ । ପରେ ପରେ ସେ କଲକଲାନାଦ କରି ପ୍ରଚଣ୍ଡ ଭାବେ ନୃତ୍ୟ କରେ । ହାତରେ କଟୁରି ଓ ମଶିପମୁଣ୍ଡ । ପାଦରେ ଘାଗୁଡ଼ି ରଣଝଣ ହେଉଥାଏ । ଉନ୍ମତ୍ତ ଛନ୍ଦରେ ବାଜାବାଜି ଖଣ୍ଡମଣ୍ଡଳ କମ୍ପିଉଠେ । ଯାତ୍ରା ପର୍ବରେ ବିଶେଷକରି ଦେବତାଙ୍କ ପାଇଁ ବଳି ଦେଲାବେଳେ ଏହା ଅନୁଷ୍ଠିତ ହେଉଥିଲା । ଯା' ବ୍ୟତୀତ ସମୟେ ସମୟେ ପତରସଉରା, ଦାସକାଠିଆ, ଦଣ୍ଡଚଢ଼ିଆ ପ୍ରଭୃତି ମନୋରଞ୍ଜକ ନୃତ୍ୟ ମଧ୍ୟ ଚଳିଆସୁଥିବା ଜଣାପଡ଼େ । ସରସ ଉକ୍ତି-ପ୍ରତ୍ୟୁକ୍ତି ମାଧ୍ୟମରେ ଶବର ଶବରୀ ରସପୂର୍ଣ୍ଣ କଥାବସ୍ତୁକୁ ନୃତ୍ୟଗୀତ ଦ୍ୱାରା ପରିବେଷଣ କରିବାର ନାମ 'ପତରସଉରା ନାଚ' । ଦୁଇଟି କାଠି ସାହାଯ୍ୟରେ ମଧୁର ରାଗିଣୀରେ ତାଳ ଧ୍ୱନି ସୃଷ୍ଟିକରି ଦୁଇଜଣ 'ଗାୟକ' ଓ 'ପାଳିଆ'ରୂପେ ଗୀତ ବୋଲି ଯେଉଁ ନୃତ୍ୟ କରନ୍ତି, ତାକୁ ଦାସକାଠିଆ କୁହାଯାଏ । 'ଦଣ୍ଡଚଢ଼ିଆ' ନୃତ୍ୟରେ ଏକ କାଳ୍ପନିକ ବିଷୟବସ୍ତୁକୁ ବାସ୍ତବ ରୂପଦେଇ ଗଦ୍ୟ ପଦ୍ୟ ମିଶ୍ରିତ ଶୈଳୀରେ ଆବୃତ୍ତି

କରାଯାଏ । ଉକ୍ତ ତିନୋଟିଯାକ ନୃତ୍ୟରେ ତାଳ ବାଦ୍ୟର ସଂଗତି ଅପରିହାର୍ଯ୍ୟ । ଅଦ୍ୟାପି କଳିଙ୍ଗରେ ଏଗୁଡ଼ିକର ସତ୍ତା ସଂପୂର୍ଣ୍ଣ ଲୋପପାଇନାହିଁ ।

**ସଂଗୀତ**—ଏ ପରିପ୍ରେକ୍ଷୀରେ ବିଚାରକଲେ କଳିଙ୍ଗ ନୃତ୍ୟକଳା କ୍ଷେତ୍ରରେ ପରିପୂର୍ଣ୍ଣତା ଲାଭ କରିନଥିଲେ ସୁଦ୍ଧା ସମକାଳୀନ ଇତର ରାଜ୍ୟ ଅପେକ୍ଷା କୌଣସିଗୁଣେ ନ୍ୟୂନ ନଥିଲା । ଏହା କେବଳ ନୃତ୍ୟକଳାରେ ଯେ ଉତ୍କର୍ଷଲାଭ କରିଥିଲା ତାହାନୁହେଁ, ସଙ୍ଗୀତ ବିଦ୍ୟାରେ ମଧ୍ୟ ଉଲ୍ଲେଖଯୋଗ୍ୟ ସଫଳତା ଅର୍ଜନ କରିଥିଲା । କଳିଙ୍ଗବାସୀ ସଂଗୀତକୁ ଦୈନନ୍ଦିନ ଜୀବନ ଚର୍ଯ୍ୟାର ଏକ ଅବିଚ୍ଛେଦ୍ୟ ଅଙ୍ଗରୂପେ ବିବେଚନା କରୁଥିଲେ । ବର୍ତ୍ତମାନ ଓଡ଼ିଶାବାସୀ ଶବର-କନ୍ଧ-ଓଡ଼ ସଂପ୍ରଦାୟର ସାଂସ୍କୃତିକ ପରଂପରା ସମୀକ୍ଷାକଲେ ଏହାର ସତ୍ୟତା ସ୍ପଷ୍ଟ ପ୍ରତୀୟମାନ ହୁଏ ।

ଅଦ୍ୟତନ ଭାରତବର୍ଷରେ ଦାକ୍ଷିଣାତ୍ୟ (କର୍ଣ୍ଣାଟକୀ) ଏବଂ ଉତ୍ତରୀ (ହିନ୍ଦୁସ୍ଥାନୀ)ଭାବେ ଦୁଇଟି ସଙ୍ଗୀତ ପଦ୍ଧତି ଅନୁସୃତ । ଦୁଇଟିଯାକ ଶାସ୍ତ୍ରୀୟ ଓ ଏକା ଶାସ୍ତ୍ର ନିୟମରେ ପରିଚାଳିତ । କିନ୍ତୁ ସ୍ୱ ସ୍ୱ କ୍ଷେତ୍ରରେ ଉଭୟେ ସ୍ୱତନ୍ତ୍ର ଜଣାପଡ଼ନ୍ତି । ଉଭୟ ପଦ୍ଧତିରେ କେତେ ରାଗ ନାମତଃ ସମାନ ହେଲେ ସୁଦ୍ଧା ପଲ୍ଲବୀ, ଆଳାପ, ସ୍ୱର ଓ ମାର୍ଗବେଲକୁ ଅସମାନତା ଦୃଷ୍ଟ ହୁଏ । ସେହି ଅସମାନତା ଯୋଗୁ ଦୁଇଟିଯାକ ସ୍ୱତନ୍ତ୍ର ରୂପେ ଗଣା ହୁଅନ୍ତି । ଏହି ସୂତ୍ର ଧରି ବିଚାରକଲେ ପ୍ରାଗୈତିହାସିକ କଳିଙ୍ଗର ରାଗମାର୍ଗ ଏକଦିଗରେ ଉକ୍ତ ଦୁଇଟିଯାକ ପଦ୍ଧତିରୁ ପୃଥକ୍ ଜଣାପଡ଼େ ତ ଅନ୍ୟ ଦିଗରୁ ଦୁହିଁଙ୍କ ସମାହାର ବୋଲି ଅନୁଭୂତ ହୁଏ । ଭରତଙ୍କ ନାଟ୍ୟଶାସ୍ତ୍ରରେ ଉଲ୍ଲିଖିତ 'ଉଡ୍ରମାଗଧୀ' ପଦ୍ଧତିର ଆଳାପ ଓ ସ୍ୱର ଲହରୀ କିଣ ଥିଲା, କିପରି ଭାବେ ତାହା ଉଚ୍ଚାରିତ ହେଉଥିଲା ସେ ସମ୍ବନ୍ଧରେ ନିର୍ଦ୍ଦିଷ୍ଟ ରୂପରେଖ ଜାଣି ନ ହେଲେ ସୁଦ୍ଧା କଳିଙ୍ଗର ଆଦିମ ଅଧିବାସୀ ପାର୍ବତ୍ୟ, ଆରଣ୍ୟକ ଓ ଓଡ଼ପାଟକଙ୍କ ମଧ୍ୟରେ ପ୍ରଚଳିତ ସଙ୍ଗୀତର ସ୍ୱର ମାର୍ଗରୁ ତାହାର କଳନା କରାଯାଇପାରେ । ପୁନଶ୍ଚ ସଙ୍ଗୀତ ଓ ନୃତ୍ୟର ଅବିନାଭାବ ସମ୍ବନ୍ଧ ହେତୁ କାଳର ପରିବର୍ତ୍ତନ ଅନୁଯାୟୀ କ୍ରମବିକଶିତ 'ମାହାରୀ ନୃତ୍ୟ' 'ଓଡ଼ିଶୀ ନୃତ୍ୟ'ଭାବେ ପ୍ରତିଷ୍ଠିତ ହେଲାପରି ଶାବରୀ ସ୍ୱର ଲହରୀ 'ଓଡ଼ିଶୀ ସଙ୍ଗୀତ'ରେ ପରିଣତ ହୋଇଥିବା ଅସ୍ୱାଭାବିକ ନୁହେଁ । ଓଡ଼ିଶୀ ସଂଗୀତର ମୂଳତତ୍ତ୍ୱ ଅନୁଶୀଳନକଲେ ଏହାର ସତ୍ୟତା ଜଣାପଡ଼େ ।

ଓଡ଼ିଶୀ ସଙ୍ଗୀତ ବୋଇଲେ ସାଧାରଣତଃ ଚମ୍ପୂ, ଚଉପଦୀ, ବିଶେଷକରି ଜୟଦେବ-କୃତ ଗୀତଗୋବିନ୍ଦ ପଦାବଳୀର ଗାନମାର୍ଗକୁ ବୁଝାଏ । ସେଥିପାଇଁ କେତେକ ନିର୍ଦ୍ଦିଷ୍ଟ ରାଗରାଗିଣୀ ରହିଛି । ପଟମଂଜରୀ, ବରାଡ଼ି, କାମୋଦୀ, ଭୈରବୀ, ଗୁର୍ଜ୍ଜରୀ, ଦେଶାକ୍ଷ, ରାମକେରୀ, ଶାବରୀ, ଦେବକେରୀ, ଧନାଶ୍ରୀ ଓଡ଼ିଶୀ ରାଗଭାବେ ପରିଚିତ । ଚମ୍ପୂ, ଚଉପଦୀ ଓ ଗୀତଗୋବିନ୍ଦରେ ଉକ୍ତ ରାଗମାନଙ୍କର ଉଲ୍ଲେଖ ଦେଖାଯାଏ । ଅଥଚ ସେ ମଧ୍ୟରୁ ଏକାଧିକ ରାଗ ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ଉଭୟ ପଦ୍ଧତିରେ ତତ୍ତ୍‌ତ ମାର୍ଗାନୁଯାୟୀ ଉଚ୍ଚାରିତ ହୋଇଥାନ୍ତି । କିନ୍ତୁ ଓଡ଼ିଶୀ ଗାୟକଙ୍କ କଣ୍ଠରେ ତାହା ବୋଲିହେଲା ବେଳେ

ଉଭୟ ପଦ୍ଧତିରୁ ଭିନ୍ନ ଏକ ବିଲକ୍ଷଣ ସ୍ୱର ଲହରୀ ସ୍ୱତନ୍ତ୍ର ଢଙ୍ଗରେ ଉଚାରିତ ହୋଇଥାଏ । ସେତିକ ନୁହେଁ, ଝୁଲ, ନିପୁଣ୍ଡା, ସରମାନ ଆଦି ତାଳ ସମେତ ଓଡ଼ିଶୀ ନୃତ୍ୟର ଆଳାପ ଏବଂ ବୋଲ ଦେବା ବେଳର ତାଳ ଫାଙ୍କରେ ଥିବା ବ୍ୟଞ୍ଜନାଶୈଳୀ ତତୋଽଧିକ ଚମତ୍କାର । ସେ ଶୈଳୀର ବିଶେଷତ୍ୱ ଏକ ଛନ୍ଦିଷ୍ଟସ୍ୱର ଉଚାରଣ ପୂର୍ବରୁ କେତେକ ପାଖାପାଖି ସ୍ୱର ସହଯୋଗେ ମୂଳ ସ୍ୱର ଭଙ୍ଗୀରେ ଲାଳିତ୍ୟ ସୃଷ୍ଟି କରିବା । ସେହି ଢଙ୍ଗରେ ଉଚାରିତ ସ୍ୱରାବଳୀ ହିଁ ଓଡ଼ିଶୀ ସଙ୍ଗୀତର ଏକକ ସ୍ୱାତନ୍ତ୍ର୍ୟ ଏବଂ ତାହା ମୂଳ ଶାବରୀ ସ୍ୱର ଲହରୀର ରୂପାନ୍ତର ବୋଲି ଅନୁମିତ ହୁଏ ।

ଏହାବ୍ୟତୀତ ପରବର୍ତ୍ତୀ କାଳର ସଙ୍ଗୀତ ଶାସ୍ତ୍ରୋକ୍ତ ରାଗ ସମୂହ ମଧ୍ୟରେ 'ଶାବରୀ' ରାଗିଣୀର ଉଲ୍ଲେଖ ବିଶେଷ ପ୍ରଣିଧାନଯୋଗ୍ୟ । 'ଶାବରୀ' ରାଗ ଶବର ସମାଜରେ ପ୍ରଚଳିତ ରାଗଶୈଳୀଛଡ଼ା ଅନ୍ୟ କିଛି ବୋଲି ମନେ ହୁଏ ନାହିଁ । କୌଣସି ଉଲ୍ଲେଖନୀୟ ଗୁଣ ନଥିଲେ ଅବହେଳିତ ବନବାସୀ ଶବର ନାମରେ ଗୋଟିଏ 'ରାଗ' ଶାସ୍ତ୍ରସମ୍ମତ ହୋଇ ରହନ୍ତା ନାହିଁ । ବୋଧହୁଏ ସେ ରାଗର ଏପରି କିଛି ମୌଳିକତା ଓ ଚମତ୍କାରିତା ଥିଲା ଯାହା ସଙ୍ଗୀତପ୍ରଣେତାଙ୍କ ଦୃଷ୍ଟି ଆକର୍ଷଣ ନକରି ରହି ପାରିନଥିଲା । ତାହାହିଁ ଓଡ଼ିଶୀରାଗ-ରାଗିଣୀର ମୂଳ ଉତ୍ସ ହୋଇଥାଇପାରେ । ଜଣାପଡ଼େ, ତ୍ରୟୋଦଶ ଖ୍ରୀଷ୍ଟ-ଶତାବ୍ଦୀରେ ଶାରଙ୍ଗଦେବଙ୍କ 'ସଙ୍ଗୀତ ରତ୍ନାକର' ଲେଖାହେଲା ବେଳକୁ 'ଶାବରୀ ଶାସ୍ତ୍ରୀୟ ରାଗ ମଧ୍ୟରେ ପରିଗଣିତ ହୋଇ ସାରିଥିଲା । ଅରଣ୍ୟ ମଧ୍ୟରେ ଉପେକ୍ଷିତ ଏକ ଆର୍ଯ୍ୟେତର ଗୀତ ମାର୍ଗ ଆର୍ଯ୍ୟଗ୍ରନ୍ଥମାନଙ୍କରେ ସ୍ୱୀକୃତି ପ୍ରାପ୍ତହେବା ସହଜବ୍ୟାପାର ନୁହେଁ । ତଥାପି ଅସମ୍ଭବ ସମ୍ଭବ ହୋଇଛି । 'ଶାବରୀ' ରାଗ ଶାସ୍ତ୍ରୀୟ ସମ୍ମାନ ଲାଭ କରିଛି ଏବଂ କ୍ରମଶଃ ବିକାଶ ଓ ବିସ୍ତାର ଲାଭକରି 'ଓଡ଼ିଶୀ' ଆଖ୍ୟା ଧାରଣ କରିଛି । ସେଇତିକ ଦର୍ଶାଇ ପାରିନଥିବା ଯୋଗୁ 'ଓଡ଼ିଶୀନୃତ୍ୟ' ଶାସ୍ତ୍ରୀୟ ନୃତ୍ୟଭାବେ ସମ୍ମାନିତ ହେଲେ ସୁଦ୍ଧା 'ଓଡ଼ିଶୀ ସଙ୍ଗୀତ' ସେ ସମ୍ମାନ ଲାଭ କରିନାହିଁ । କାରଣ ଆମେ ଏହାର ଅସଲ ସୂତ୍ରଟି ଧରିଇ ପାରିନାହୁଁ । ଅର୍ଥାତ୍ ଓଡ଼ିଶାର ଆତ୍ମାକୁ ଚିହ୍ନାଇ ପାରିନାହୁଁ । ଆଗରୁ କୁହା-ଯାଇଛି ବାଁ-ଡାହାଣ କାନ୍ଧ ମଝିରେ ଗ୍ରୀବା ଭାଗ ପରି କଳିଙ୍ଗସଭ୍ୟତା ଦାକ୍ଷିଣାତ୍ୟ ଓ ଉତ୍ତରାପଥ ମଧ୍ୟରେ ବିସ୍ତାରିତ ଥିଲା । ଯେତେବେଳ ଯାଏଁ ଉଭୟପକ୍ଷ ପ୍ରଭାବମୁକ୍ତ ଥିଲା ସେତେଦିନଯାଏଁ ତାହା ଥିଲା ଅବିକୃତ-ସୁରକ୍ଷିତ । ଭଲ ହେଉ ବା ମନ୍ଦ ହେଉ ସବୁଥିଲା ତାର ନିଜସ୍ୱ । ନୃତ୍ୟ, ସଙ୍ଗୀତ, ଗୀତ, ଚିତ୍ର, ସ୍ଥାପତ୍ୟ, ଭାଷା ଯାହାକିଛି । କିନ୍ତୁ ପରବର୍ତ୍ତୀ କାଳରେ ପ୍ରତିବେଶୀ ସଭ୍ୟତା ସାଯୁଜ୍ୟ ମିଶ୍ରଣ ଯୋଗୁଁ ଅନ୍ତର୍ଭାଗ ଅନାହତ ଥିଲେ ସୁଦ୍ଧା ବହିର୍ଭାଗ ପରିବର୍ତ୍ତିତ ହୋଇପଡ଼ିଲା । 'ନୃତ୍ୟ' କ୍ଷେତ୍ରରେ ଏହାର କ୍ଷୀଣ ସଙ୍କେତ ଦିଆ-ଯାଇଛି । ସଙ୍ଗୀତ ବିଷୟରେ ମଧ୍ୟ ସେଇ କଥା । ଅର୍ଥାତ୍ ଦାକ୍ଷିଣାତ୍ୟ ଓ ହିନ୍ଦୁସ୍ଥାନୀ ପ୍ରଭାବିତ ଶାବରୀମାର୍ଗ ଉତ୍ତର କାଳରେ 'ଓଡ଼ିଶୀ ସଙ୍ଗୀତ' ରୂପେ ଖ୍ୟାତି ଲାଭ କରିଛି । ତେଣୁ ଓଡ଼ିଶୀ ରାଗରାଗିଣୀ ଭିତରେ କେଉଁ ଅଂଶତକ କର୍ଣ୍ଣାଟକୀ ଓ ଆଉ କେଉଁତକ

ହିନ୍ଦୁସ୍ଥାନୀ ଦୃଷ୍ଟାନ୍ତ ଦେଖାଇ ତା'ଭିତରେ ଥିବା ସ୍ୱାତନ୍ତ୍ର୍ୟଟିକକ ପ୍ରମାଣିତ କରିଥିଲେ । 'ଓଡ଼ିଶୀ ସଙ୍ଗୀତ'ର ବାସ୍ତବସ୍ୱରୂପ ପ୍ରକଟିତ ହୋଇପଡ଼ନ୍ତା ଓ 'ପାନକରସ ନ୍ୟାୟ'ରେ ଏହାର ସ୍ୱତନ୍ତ୍ର ସ୍ଥିତିକୁ କେହି ଅସ୍ୱୀକାର କରିପାରନ୍ତା ନାହିଁ । ଅର୍ଥାତ୍ କଦଳୀ, ଶର୍କରା ଓ ନାରିକେଳର ସ୍ୱତନ୍ତ୍ର ସ୍ୱାଦୁ ରହିଥିଲେ ସୁଦ୍ଧା ଜଳମଧ୍ୟରେ ଏକତ୍ର ମିଶି ଯେପରି 'ପାନକ' ରୂପେ ସ୍ୱତନ୍ତ୍ର ସ୍ୱାଦୁର ସୃଷ୍ଟି ହୁଏ, ସେହିପରି ଦାକ୍ଷିଣାତ୍ୟ, ହିନ୍ଦୁସ୍ଥାନୀ ଓ ଶାବରୀ ମାର୍ଗର ଏକତ୍ର ସମାବେଶରେ, 'ଓଡ଼ିଶୀ ସଙ୍ଗୀତ'ର ଅନିର୍ବଚନୀୟ ଚମତ୍କାରିତା ପ୍ରକଟିତ ହୋଇ ପଡ଼ନ୍ତା ଏବଂ ତାହା ଶାସ୍ତ୍ରସମ୍ମତ ହେବାରେ ଅନ୍ତରାୟ ରହନ୍ତା ନାହିଁ ।

ଶାବରୀ ସଙ୍ଗୀତ ଏକ ବିଲକ୍ଷଣ ସ୍ୱରମାଧୁର୍ଯ୍ୟଯୁକ୍ତ । ଏହା ବିଭିନ୍ନ ରାଗ-ରାଗିଣୀରେ ଶବର ସମାଜରେ ବୋଲାହୋଇଥାଏ । ସ୍ୱର ଉଚାରଣବେଳେ ତାର ଭଳି ଦୁଇଟି ସରୁ ଲଇବନ୍ଧା ବାଉଁଶ ବେହେଲା ଏବଂ କ୍ଷୁଦ୍ର କ୍ଷୁଦ୍ର ରନ୍ଧ୍ରଥିବା ବଇଁଶୀ ବାଦ୍ୟରୁ ମଧୁର ଧ୍ୱନି ସୃଷ୍ଟି କରାଯାଇଥାଏ । ତା' ସାଙ୍ଗକୁ ମାଦଳ, ଢୋଲ, ଡାଂପ, ମୃଦଙ୍ଗ, ଘୁଙ୍ଗୁ ପ୍ରଭୃତି ବାଦ୍ୟଯନ୍ତ୍ରର ସଂଗତି । ନୃତ୍ୟ-ଗୀତ ଆଦିମ ଜନଜୀବନର ଅପରିହାର୍ଯ୍ୟ ଅଙ୍ଗ ଥିବା ହେତୁ ପୂଜାପାର୍ବଣାଦି ଶୁଭକର୍ମରେ ଯେପରି ତାହା ଅନୁଷ୍ଠିତ ହେଉଥିଲା ତାକୁ ଗୁଣି ମୃତବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ଅଶୁଭ କାର୍ଯ୍ୟ ମଧ୍ୟ ସଂଗଠିତ ହେଉନଥିଲା । ଶୁଭକର୍ମ ବେଳର ଗୀତ, ନୃତ୍ୟ କିନ୍ତୁ ଅଶୁଭ କର୍ମରେ ବିନିଯୋଗ ହେଉନଥିଲା । ଫସଲକଟା, ଦିଅଁପୂଜା, ବିବାହ ଉତ୍ସବାଦିବେଳେ ବ୍ୟବହୃତ ବାଦ୍ୟଯନ୍ତ୍ର ଶବଯାତ୍ରା ପ୍ରଭୃତିରେ ବ୍ୟବହାର କରାଯାଉନଥିଲା । ଦେବତାଙ୍କୁ ବଳିଦେବା ସମୟରେ ବି ସେଇଆ । ଏ ସବୁରୁ କଳିଙ୍ଗର ପ୍ରାଚୀନ ଅଧିବାସୀ ମାନଙ୍କାଧିକଭାବେ ସଙ୍ଗୀତ ଓ ନୃତ୍ୟପ୍ରିୟ ଥିବା ଅନୁମିତ ହୁଏ । କର୍ମକ୍ଳାନ୍ତ ଜୀବନକୁ ନୃତ୍ୟ ସଙ୍ଗୀତ ମାଧ୍ୟମରେ ସରସ କରି ଗଢ଼ି ତୋଳିବା ଥିଲା ସେ ଜାତିର ଜୀବନଚର୍ଯ୍ୟା । ସେହି କାରଣରୁ କଳିଙ୍ଗାଧିପତି ଖାରବେଳ ଦିଗ୍‌ବିଜୟ ପରେ ନଗରକୁ ଫେରିଆସି ନୃତ୍ୟ, ଗୀତ, ବାଦନ ଦ୍ୱାରା ଯୁଦ୍ଧକ୍ଳାନ୍ତ କଳିଙ୍ଗବାସୀଙ୍କ ମନରେ ଆନନ୍ଦ ସଞ୍ଚାର କରାଇଥିଲେ ବୋଲି ଶିଳାଲେଖ କହେ । ଏଣୁ ପ୍ରାଗୈତିହାସିକ ଯୁଗରେ ସମସାମୟିକ ଇତର ରାଜ୍ୟ ତୁଳନାରେ କଳିଙ୍ଗ ନୃତ୍ୟ ଓ ସଙ୍ଗୀତ କଳାରେ ଉଲ୍ଲେଖନୀୟ ଅଗ୍ରଗତି କରିଥିଲା ବୋଲି ଅନାୟାସରେ ବୁଝାଯାଇପାରେ ।

**ଗୀତ**—ସଙ୍ଗୀତ ପ୍ରସଙ୍ଗରେ 'ଗୀତ' ବିସ୍ତୃତ ପରିସରକୁ ନଆସି ରହିପାରେ ନାହିଁ । କାରଣ ତାଳବାଦ୍ୟଯୁକ୍ତ ଗୀତର ନାମ ହିଁ ସଙ୍ଗୀତ । ଗୀତ ହୃଦୟାବେଗର ଶବ୍ଦ ବ୍ରହ୍ମରୂପ । ଅନ୍ୟ ନାମ ସାହିତ୍ୟ , ଯହିଁରେ ଜୀବନର ପ୍ରତିକ୍ଷଣ ଚିତ୍ର ଅଙ୍କିତ ଥାଏ । ମନର ଆବେଗ ଅପ୍ରତ୍ୟାଶିତ ଭାବେ ଯେତେବେଳେ କୂଳ ପ୍ଲାବନ କରି ଉଚ୍ଛୁଳି ଉଠେ, ସେତେ-ବେଳେ ତାହା ଆପେ ଆପେ ଗୀତ ହୋଇପଡ଼େ । ସମାଜର ଆରମ୍ଭ କାଳରୁ ସେ ନିୟମ ରହିଆସିଛି । କଳିଙ୍ଗର ଆଦି ମଣିଷ ସମାଜରେ ବି ଏହାର ବ୍ୟତିକ୍ରମ ନଥିଲା । ପ୍ରକୃତି କୋଳରେ ରହି କେତେବେଳେ ତା'ର ଲୀଳାମୟ ରୂପରେ ଆତ୍ମହରା ହେଉଥିଲା ତ

କେତେବେଳେ ପୁଣି ଦୈନନ୍ଦିନ ଜୀବନର ସୁଖଦୁଃଖ, ଆଶା-ନିରାଶାରେ ଛନ୍ଦ ହୋଇ ତାହାର ବାସ୍ତବ ଚିତ୍ର ପ୍ରଦାନ କରିଥିଲା । କିନ୍ତୁ ସେ ସବୁକୁ ମୂର୍ତ୍ତିମନ୍ତ କରି ଗଢ଼ିବାକୁ ଥିଲା ତା'ର ବର୍ଣ୍ଣମାଳା କିମ୍ବା ସ୍ୱରଲିପି । ସମସ୍ତ ଭାବନା କଣ୍ଠ ଧ୍ୱନି ମାଧ୍ୟମରେ ପ୍ରକଟିତ ହେଉଥିଲା । ତେଣୁ ଗୀତଗୁଡ଼ିକ ଥିଲା ଗାନପ୍ରଧାନ ଏବଂ ଶ୍ରୁତିପ୍ରଧାନ-ଯାହା ଦୃଶ୍ୟମାନ, ଯାହା ବାସ୍ତବ, ଯାହା ଅନୁଭୂତ ତାହାହିଁ ସେଥିରେ ପ୍ରତିଫଳିତ ହେଉଥିଲା । କଣ୍ଠରୁ କଣ୍ଠକୁ, ସ୍ଥାନରୁ ସ୍ଥାନକୁ, ପିଢ଼ି ପରେ ପିଢ଼ି ଅତିକ୍ରମ କରି ପରିପୁଷ୍ଟ ହେବା ସଙ୍ଗେ ସଙ୍ଗେ ତାହା ମଝିରେ ମଝିରେ ନବକଳେବର ଧାରଣ କରୁଥିଲା । କଳିଙ୍ଗରେ ବି ସେୟା ଘଟିଛି । କିନ୍ତୁ ଭାଗ୍ୟର ବିଡ଼ମ୍ବନା ଯେତେ ଖୋଜିଲେ ବି ତା'ର ଭଗ୍ନାବଶେଷ ଏବେ ମିଳେ ନାହିଁ । ବାଲ୍ୟ-ଯୌବନ ରହିଛି, ତାରୁଣ୍ୟର ସତ୍ତା ନାହିଁ—ରଜନୀ ଦିବସ ବିଦ୍ୟମାନ, ପ୍ରଭାତ ଅନ୍ତର୍ହିତ—ଯଦିଓ ତାରୁଣ୍ୟ ଅତିକ୍ରମ ନକଲେ ଯୌବନ ଏବଂ ପ୍ରଭାତ ନହେଲେ ଦିବସ ସମ୍ଭବ ନୁହେଁ । କଳିଙ୍ଗର ପାର୍ବତ୍ୟ ସମାଜ ଓ ଓଡ଼ ସମ୍ପ୍ରଦାୟର ଲୁପ୍ତପ୍ରାୟ ଲୋକଗୀତ ଅନୁଧ୍ୟାନ କଲେ ତାହା ସ୍ପଷ୍ଟ ଅନୁଭୂତ ହୁଏ । ସୀମିତ ଶବ୍ଦାବଳୀ ମାଧ୍ୟମରେ ଜୀବନର ସକଳ ଅନୁଭୂତି ଉପରେ ସୁଲଳିତ ଛନ୍ଦରେ ପ୍ରାଣବନ୍ତ ହୁଏ ପରଂପରାକ୍ରମେ ଚଳି ଆସୁଥିବା ଆରଣ୍ୟକ ସମ୍ପ୍ରଦାୟର ଗୀତମାନ ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ତାହା ଥିଲା କଳିଙ୍ଗର ଶୈଶବ କାଳ । ଅନ୍ୟ ପକ୍ଷେ କୋମଳ ପଦାବଳୀ ସମ୍ବଳିତ ଚମତ୍କାର ଶୈଳୀରେ ରଚିତ ଯୁଦ୍ଧୋତ୍ତର ଯୁଗର ଗୀତସମୂହ ମଧ୍ୟ ଦୃଷ୍ଟିଗୋଚର ନହୁଏ ନୁହେଁ ; କିନ୍ତୁ ତୁଳନାତ୍ମକ ଭାବେ ବିଚାର କଲେ ଉଭୟେ ଉଭୟଠାରୁ ଭିନ୍ନ ଜଣାପଡ଼ନ୍ତି । ପ୍ରଥମଟି ମାଟି ଦିହରେ ଇତସ୍ତତଃ ବିକ୍ଷିପ୍ତ ମହାବୃକ୍ଷର ଚେର ସ୍ୱରୂପ ପ୍ରତିଭାତ ହେଲାବେଳେ ଅନ୍ୟଟି ଫଳପୁଷ୍ପ-ଶୋଭିତ ବିଶାଳ ଶାଖାପ୍ରାୟ ମନେହୁଏ । ଅଥଚ ଗଣ୍ଡି ଭାଗ ଅଦୃଶ୍ୟ । ତେଣୁ ଚେର ଡାଳ ଅବଲମ୍ବନରେ ତାହାର ସ୍ୱରୂପ କଳ୍ପନା ଛଡ଼ା ଅନ୍ୟ ଗତି ନାହିଁ ।

**ଭାଷା**—ଭାଷା ଭାବନାର ଧ୍ୱନ୍ୟାତ୍ମକ ରୂପ । ପ୍ରାକ୍ତନ ଓଡ଼ ସମ୍ପ୍ରଦାୟର ଭାଷା ଦୁର୍ବଳ ନ ଥିଲା । ଭାବ, ଭାବନା, ଚିନ୍ତା, ବିଚାର, ବସ୍ତୁ, କିମ୍ବା, ଯେ କୌଣସି ବିଷୟ ପ୍ରକାଶ କରିବାରେ ତାହା ସମର୍ଥ ଥିଲା । ଭାଷା ପ୍ରସଙ୍ଗରେ ତାହା ପୂର୍ବେ କୁହାଯାଇଛି । ତେଣୁ ପରିମିତ ଶବ୍ଦାବଳୀ ମଧ୍ୟରେ ଆରଣ୍ୟକ ଗୋଷ୍ଠୀ ଯଦି ରସୋଚ୍ଛଳ କବିତାମାନ ରଚନା କରି ଗାନଯୋଗ୍ୟ କରିପାରିଥିଲେ, ତେବେ ଦେଶ ଦେଶାନ୍ତରାଗତ ମଞ୍ଜୁଳ ଶବ୍ଦାବଳୀ ଦ୍ୱାରା ପରିପୁଷ୍ଟ ଓଡ଼ ସମାଜର ଭାଷା ସେ 'କାଳିଙ୍ଗୀ' ହେଉ 'ଉଡ୍ର' ହେଉ ବା 'ଔଡ୍ରୀ' ହେଉ ପ୍ରାଣସ୍ପର୍ଶୀ ଗୀତ କବିତା ସୃଷ୍ଟିପାଇଁ କଦାପି ଅନୁପଯୁକ୍ତ ହୋଇ ନଥିବ । ଆବହମାନ କାଳରୁ ଦେଲି, ଡମ୍ବ, ଜାଗିଲି, ବାଉରି, ଖଦାଲ ପ୍ରଭୃତି ଅନୁନ୍ନତ ସମ୍ପ୍ରଦାୟର ନାରୀ ମୁଖରେ ପୁରୁଷ ପୁରୁଷ ଧରି ବୋଲି ହୋଇ ଆସୁଥିବା ଚଇତି ଉତ୍ସବ, ଝୁମିଯାତ୍ରା, ପର୍ବପର୍ବାଣି ଦିନର ଗୀତ ଏବଂ ନିଘଞ୍ଚ ପାହାଡ଼ ଶିଖର ଅର୍ଦ୍ଧନଗ୍ନ ପାର୍ବତ୍ୟ ସମାଜର ଯାତ୍ରା ପର୍ବ ଗୀତକୁ ସୂକ୍ଷ୍ମ କରି ସେକାଳ ଓଡ଼ ସମ୍ପ୍ରଦାୟର ଗୀତ-କବିତା ଅଧାହାର

କରିଯାଇପାରେ । ପାର୍ବତ୍ୟ ସମାଜରେ ପ୍ରଚଳିତ ଗୀତର ସାଙ୍କେତିକ ଦୃଷ୍ଟାନ୍ତ ଆଗରୁ ଦିଆଯାଇଛି । ବର୍ତ୍ତମାନ ଆରଣ୍ୟକ ଗୋଷ୍ଠୀରେ ବୋଲା ହୋଇ ଆସୁଥିବା ଗୀତଟିଏ ଦେଖନ୍ତୁ । ଏହା ପୌଷପର୍ବ କାଳରେ ବୋଲାହୁଏ । ନାଁ 'ରଇଲ' ଗୀତ ।

ବାଆଗ ବଳଦ ମୁହିଁ ବାନ୍ଧିଲି ହଳେ
ଗୃଷ କଲି ମଇନ୍ଦର ମାଳେଟି, ରଇଲ ଯେ
ଗୃଷ କଲି ମଇନ୍ଦର ମାଳେ ॥

ମଇନ୍ଦର ମାଳରେ ମୋର କ କ କ ପାଚ
ସ୍ୱାଦ ମୋର ମାଣିକର ପାଚଟି ରଇଲ ଯେ
ସ୍ୱାଦମୋର ମାଣିକର ପାଚ ॥

କାଳି ଗାଈ କାଳି ଗାଈ ମୋର କାହାର ଗାଈ
ଇନ୍ଦରଣେ (ତ) ଦୁଧକାର ଗାଈଟି ରଇଲ ଯେ
ଇନ୍ଦରଣେ ଦୁଧକାର ଗାଈ ।

ସେ ଗାଈ ମୋ ଦୁଆରେ ସେ ବନ୍ଧା ଗୋ ରଇ ମୋର
ସେ ଗାଈ ମୋ ଦୁଆରେ ସେ ବନ୍ଧା
ଯୋଡ଼ି ହାତୀ ଦୁଆରେ ମୋ ବନ୍ଧା ଗୋ ରାଣୀ ମୋର
ଯୋଡ଼ି ହାତୀ ଦୁଆରେ ମୋ ବନ୍ଧା

ବରଷକୁ ଥରେ ଘରେ ଆସୁ ଗୋ ଦେଇ ମୋର
ବରଷକୁ ଘରେ ମୋର ଆସୁ
ଆଞ୍ଜୁଳା ପୁରଇ ସେ ଦେଉଛି ରଇ ମୋର
ଆଞ୍ଜୁଳା ପୁରଇ ସେ ଦେଉ ।

ତେନ୍ତୁଳି ମୂଳରେ ମୁହିଁ କରିଚ ଘରଟି ରଇଲ ଯେ
ତେନ୍ତୁଳି ମୂଳରେ ମୋର ଘର ।
କେଡ଼େ ମୋର ଅଁ ଲାଗିର ଘରଟି ରଇଲ ଯେ
କେଡ଼େ ମୋର ଅଁ ଲାଗିର ଘର ।

କେଡ଼େ ମୋର ଧରମର ଘରଟି ରଇଲ ଯେ
କେଡ଼େ ମୋର ଧରମର ଘର ।
ଧରମ ମନରେ ସେ ସେ ଦଅଛି ରଇଲ ଯେ
ଧରମ ମନରେ ସେ ଦଅ ।

ନ' ଟି ଭଇର ମୋର ନ' ଯୋଡ଼ା ଘୋଡ଼ା ରଇଲ ଯେ
ନ ଯୋଡ଼ା ଘୋଡ଼ା

ଘୋଡ଼ା ବୋଲି ହାଣ୍ଡରେ ସେ ଚଢ଼ାଟି ଗଲା ଯେ
ଘୋଡ଼ା ବୋଲି ହାଣ୍ଡରେ ସେ ଚଢ଼ା ।

ପାକଲା ବାଉଁଶ ମୋର ସୁନ୍ଦରଟିକା ଗଲା ଯେ
କୁଞ୍ଚି ମୋର କବାଟଟି ଫିଟା
ଗନ୍ତା ଘରେ ପଶୁ ମୋର ଶିଷ୍ଟ ଘରେ ପଶୁ ଗଲା ଯେ
ଶିଷ୍ଟଘରେ ପଶୁ ।

କୁଲା ବୋଲି ଛପାରେ ସେ ବସୁ ମୋ ଗଲା ଯେ
ଦନ ଯେ ସବୁ ନାହିଁ
ଛପା ବୋଲି କୁଲରେ ସେ ବସାଟି ଗୋଡ଼ ଧୋଇ ଗଲା
ବସାଟି ଗୋଡ଼ ଧୋଇ ।

ବୁଢ଼ାଦନେ ମୋର ଖାଇବାକୁ ଗଲାଟି ଗଲା ଯେ
ବରଷକେ ଥରେ ବୁଢ଼ା ଖାଇବାକୁ ଗଲା
କଡ଼ୁ କୁଲା କଣ୍ଡା ମୋର କଲାଟି (?) ଗଲା ଯେ
କଡ଼ୁ କୁଲା କଣ୍ଡା ମୋର କଲା ।

ବରଷକୁ ଥରେ ମୋର ଘରେଟି ଗଲା ଯେ
ବରଷକୁ ଥରେ ମୋର ଘରେ
ଆଞ୍ଜୁଳା ପୁରାଇ ସେ ଦଅଟି ଗଇ ମୋର
ଆଞ୍ଜୁଳା ପୁରାଇ ସେ ଦଅ ।

ଅନୁରୂପ ଆଉ ଗୋଟିଏ ଗୀତ ଦେଖନ୍ତୁ—ଏହା 'ଖରଖଣ୍ଡ' ଉଦ୍ଦେଶ୍ୟରେ ବୋଲାଯାଏ ।

ଖରଖର ଲୋ ବରବର ଦେ ବରଷା ପାଣି
ନଈନାଲ ବଢ଼ି ଆଇଲା ବୁଡ଼ି ନାହିଁ କାଣି

କାଣି ମା କାଣି ମା ଭଲେଇ ଆ
ଗଢକ ପାହୁଲେ ମା ଯୁଡ଼ା ବୁଦା ଖା
ଯୁଡ଼ା ବୁଦା ଖାଉ ଖାଉ ମୋ କାଣି ମା କାହିଁ
ଏଡ଼େ ବଡ଼ ଗଇଜରେ ସାଙ୍ଗ ଲୋକ ନାହିଁ

ଉଡ଼ଶାକୁ ଯିବ ବୋଲି କଣିଥିଲି ପାଟ
ଉଡ଼ଶାର ଲୋକ ମୋତେ ନ ଗୁଡ଼ଲେ ବାଟ ।

ବା' ଆଇଲା ବତାସ ଆଇଲା ଉଡ଼େଇ ନେଲା ଛତା
ଭଣ୍ଡାର ଘରେ ସ୍ୱେର ପଶିଲା ପେନ୍ଦ ଗଲା ଦରପଣ ।

ସୁନେଇ ଲୋ ରୁପେଇ ଲୋ କାହିଁ ହଜେଇଲୁ ଦା
ତୋର ଆଜ ବଡ଼ ପରବ ଗଛରୁ ଓହ୍ଲେଇ ଆ ।

ଉକ୍ତ ଗୀତ ଦୁଇଟି ପଚାଶ ବର୍ଷ ତଳେ ଅର୍ଥାତ୍ ୧୯୩୯ ମସିହାରେ ପାରଳାଖେମୁଣ୍ଡି ଅଞ୍ଚଳରୁ ସଂଗୃହୀତ । ପ୍ରଥମଟି ତଥାକଥିତ ନିମ୍ନ ଶ୍ରେଣୀ 'ରେଲି' ଜାତିର ବୟସ୍କା ସ୍ତ୍ରୀମାନଙ୍କ ମୁହଁରେ ବୋଲାହୋଇ ଆସୁଥାଏ । ଏବେ ତାହା ସେପରି ରହିଛି କି ନାହିଁ ଜଣାନାହିଁ । ବିଶ୍ୱାସ ହୁଏ ଲୁପ୍ତ ହୋଇ ନଥିବ । କାରଣ ପରଂପରା ସହଜେ ଲୋପପାଏନାହିଁ । ଯାହାହେଉ ଗୀତଟି ଦେଖିଲେ ଜଣେ ଅଜ୍ଞାତନାମା ଭାବପ୍ରବଣ ଲେଖକଙ୍କ ରଚନାବୋଲି ମନେହୁଏ । ଭାଷା ଯେମିତି ସରଳ ସେମିତି ଶ୍ରୁତିମଧୁର । ଭାବଗୁଡ଼ିକ ନିଷ୍କପଟ ହୃଦୟର ସରସ ଅଭିବ୍ୟକ୍ତି ମାତ୍ର । ଅଯତ୍ନ ପଦଯୋଜନା ପାର୍ବତ୍ୟ ଗିରି ଝରଣା ତୁଲ୍ୟ ନୈସର୍ଗିକ ଏବଂ ଛନ୍ଦୋମୟ । ମଝିରେ ମଝିରେ ପ୍ରାସଙ୍ଗିକ ବିଷୟବସ୍ତୁର କ୍ରମଭଙ୍ଗ ଘଟିଥିଲେ ସୁଦ୍ଧା ସମସାମୟିକ ସମାଜର ନିଖୁଣଚିତ୍ର ପରିବେଷିତ । ଦ୍ୱିତୀୟଟି 'ଖରଖରିଗୀତ' । 'ଖରଖରି' ଏକ ବନଦେବୀ । ଚୈତ୍ରମାସ ରବିବାରଦିନ ଅଭିଆଡ଼ୀ ଝିଅମାନଙ୍କଦ୍ୱାରା ପୂଜିତା ହୁଅନ୍ତି । ସେଦିନ ପାହାନ୍ତା ପହରୁ ଝିଅମାନେ ନିଜନିଜର ଭାଇ ବା ଅନ୍ୟ ସାଙ୍ଗ ପିଲାଙ୍କଦ୍ୱାରା ଶ୍ରେଷ୍ଠ ଖଜୁରୀଗଛ 'ଗଜାଡାଳ' କଟାଇ ଆଣି ଭାରୁଡ଼ି ଓ ପଳାଶଫୁଲରେ ମଣ୍ଡଣି କରନ୍ତି । ପୂଜାସ୍ଥାନରେ ହାତେ ଗଭୀରର ଖାଲ ଖୋଳାଯାଏ । ଚାରିପାଖ ରଙ୍ଗମାଟିରେ ଲିପାପୋଛା କରି ସେ ମଧ୍ୟରେ ଗଜାଡାଳ ଆପନା କରାଯାଏ । ତା'ର ନାଁ । 'ଖରଖରି' । ଚାରିପଟେ ଖଜୁରୀକାଣ୍ଡି, ତାଳକାଣ୍ଡି, ନଡ଼ିଆକାଣ୍ଡି ଥୋଇ ଓପାଭୂଣୀ ଝିଅମାନେ ତାକୁ ଘେରିବସନ୍ତି ଓ ଉକ୍ତଗୀତ ବୋଲନ୍ତି ।

ସୂକ୍ଷ୍ମ ଦୃଷ୍ଟିଦେଇ ବିଚାରକଲେ ଗୀତଗୁଡ଼ିକ ଯୁଦ୍ଧୋତ୍ତର କଳିଙ୍ଗରେ ରଚିତ ହୋଇଥିବା ପରି ମନେହୁଏ । ଶବ୍ଦଯୋଜନା, ପଦଗୁମ୍ଫନ, କ୍ରିୟା-ପ୍ରୟୋଗାଦିରୁ ସେଇପରି ମନେହୁଏ । ଏହା ପ୍ରାଗୈତିହାସିକ କଳିଙ୍ଗର ମୂଳଭାଷା ନୁହେଁ । ଏଥିରେ 'ମାଗଧୀ' ଭାଷାର ପ୍ରଭାବ ପରିଲକ୍ଷିତ । ଚଉତିଶାଳି ସମେତ ଦୋଳିଗୀତ, କେନ୍ଦରାଗୀତ, ଶିଶୁବୋଧାଦି ଗୀତ ମାଧ୍ୟମରେ ଏହା ଦକ୍ଷିଣକଳିଙ୍ଗର 'ମହାକୁଳି' (ଗଉଡ଼) ଦାସ ବଂଶରେ ଜନ୍ମିଥିବା ସିଦ୍ଧେଶ୍ୱର ଦାସଙ୍କ 'ବିଚିତ୍ର ରାମାୟଣ'ରେ ଆତ୍ମପ୍ରକାଶ କରିଥିଲି ଏବଂ ଧୀରେ ଧୀରେ କ୍ରମବିକାଶ ଲଭିକରି ଶାରଳା ମହାଭାରତରେ ପୂର୍ଣ୍ଣାଙ୍ଗ ଭାଷାରୂପେ ପ୍ରତିଷ୍ଠିତ ହେଲା, ଅବଶ୍ୟ 'ସିଦ୍ଧେଶ୍ୱର' ନାମ ସାମ୍ୟ ଧରି ବିଚିତ୍ର ରାମାୟଣ ଓ ମହାଭାରତ ଲେଖକ ଦୁହେଁ ଅଭିନ୍ନ ବୋଲି କେହି କେହି ଯୁକ୍ତି ନିର୍ଦ୍ଦର୍ଶାଇଛନ୍ତି ନୁହେଁ । ବାସ୍ତବରେ କିନ୍ତୁ ଅଶୋକଙ୍କ ଦ୍ୱାରା ଧ୍ୱସ୍ତବିଧ୍ୱସ୍ତ ଜନମାନବଶୂନ୍ୟ କଳିଙ୍ଗର ଉତ୍ତର ଓ ଦକ୍ଷିଣପଟୁ ଅବାଧରେ ପଶି ଆସିଥିବା ଆର୍ଯ୍ୟ ବ୍ରାହ୍ମଣ ଓ ଆଦି ଦ୍ରାବିଡ଼ ସଂମିଶ୍ରିତ ଦେଶ୍ୟଭାଷା-ଏ' ଅନ୍ୟନାମ ଓଡ୍ରୀ; ଶାବରୀ ଭାଷାର ରୂପାନ୍ତର । କିନ୍ତୁ 'ଶାବରୀ' ଏଥିରେ ଗୌଣ, ଏପରିକି ବିଲୀନ କହିଲେ ଚଳେ । ସେହି ଭାଷାରେ ଲିଖିତ କେତୋଟି ପୂଜାପର୍ବ ଗୀତ ବର୍ତ୍ତମାନ ଜୀବନ୍ମୃତ ଅବସ୍ଥାରେ ପରିଲକ୍ଷିତ,

ଶ୍ରୁତି ଓ ସ୍ମୃତିପ୍ରଧାନ ଥିବାଯୋଗୁ ଏବଂ ସର୍ବଗ୍ରାସୀ କଳିଙ୍ଗ ଯୁଦ୍ଧରେ ଦେଶପ୍ରାଣ ଜନତା ସାମୂହିକ ଭାବେ ଆତ୍ମାହୁତି ଦେଇଥିବା ହେତୁ କେହି ତାହା ଗାଇବାକୁ ରହିଲେ ନାହିଁ କମ୍ବା ଶୁଣିବାକୁ ରହିଲେ ନାହିଁ । ଯାବତୀୟ ଗୀତ କବିତା ରଣାଙ୍ଗନର ମାଟିତଳେ ଚିରନିଦ୍ରା ଲଭିକଲା । ଯୁଦ୍ଧପୂର୍ବ କଳିଙ୍ଗର 'ଓଡ଼୍'ରଚନା ଚିରଦିନପାଇଁ ପୃଥିବୀରୁ ବିଦାୟନେଲା । ତାଳ ଲୟ ସମ୍ବଳିତ ଯେଉଁ ଗୀତର ମଧୁର ଧ୍ୱନିରେ ଗଗନକାନନ ଝଙ୍କୃତ ହୋଇଉଠୁଥିଲା ତାହା ଆଖିପିଛୁଳାକେ କୁଆଡ଼େ ଅନ୍ତର୍ହିତ ହୋଇଗଲା; ତଥାପି ଅଧିକ ଗବେଷଣା ହେଲେ କିଛି ଲୁପ୍ତାବଶେଷ ମିଳିବା ସମ୍ଭାବନା ।

**ସ୍ଥାପତ୍ୟ ଓ ଚିତ୍ର**—ସ୍ଥାପତ୍ୟ ଓ ଚିତ୍ରକଳାରେ ମଧ୍ୟ କଳିଙ୍ଗ ସମସାମୟିକ ଦେଶଠାରୁ ପଛରେ ପଡ଼ିନଥିଲା । ଏହାର ସୂଚନା ଆଗରୁ ଦିଆଯାଇଛି । ଭାସ୍କର୍ଯ୍ୟ ଦୃଷ୍ଟିରେ କଳିଙ୍ଗ ଶିଳ୍ପୀର କଳାକୁଶଳତା ପୃଥିବୀ ପ୍ରସିଦ୍ଧ । କୋଣାର୍କ, ପୁରୀ, ଭୁବନେଶ୍ୱର ମନ୍ଦିରର ଜୀବନ୍ତ ପଥର ମୂର୍ତ୍ତିମାନ ଦେଖିଲେ କିଏ ନ କହିବ ତାହା କଳିଙ୍ଗର ଅତୀତ ପରଂପରା ଉପରେ ପର୍ଯ୍ୟବସିତବୋଲି ! ନଭସ୍ପୃଶୀ ପ୍ରସ୍ତର ନିର୍ମିତ କୋଣାର୍କମନ୍ଦିର, ଏକାମ୍ର ନଗରୀର ବିରାଟ ଲିଙ୍ଗରାଜ ମନ୍ଦିର, ବିଶ୍ୱପ୍ରସିଦ୍ଧ ପୁରୀ ଜଗନ୍ନାଥଙ୍କ ବଡ଼ଦେଉଳ, କଳିଙ୍ଗ ସ୍ଥପତିଙ୍କ କଳ୍ପନାବିଳାସର ଅମ୍ଳାନ ଦୃଷ୍ଟାନ୍ତ ନୁହେଁ କି ? ଏହାଛଡ଼ା ଓଡ଼ିଶା'ର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠିତ ଦ୍ୱିଭୂଜାରୁ ଷୋଡ଼ଶଭୂଜା ପର୍ଯ୍ୟନ୍ତ ଦୁର୍ଗାମୂର୍ତ୍ତି, ଉତ୍ତରରେ 'ଚଣ୍ଡୀଖୋଲ' ଓ ଦକ୍ଷିଣର 'ପଞ୍ଚମା'ରେ ଅବସ୍ଥାପିତ ଗଣେଶଙ୍କ ପଥର ପ୍ରତିମାମାନଙ୍କରେ ଯେଉଁ ଉନ୍ନତ ଭାସ୍କର୍ଯ୍ୟର ନିଦର୍ଶନ ରହିଛି, ତାହା ଏକା ଦିନକେ ବା ଏକା ବର୍ଷକେ ଗଢ଼ି ଉଠିଥିଲାବୋଲି କହିହୁଏନାହିଁ । ପ୍ରସ୍ତର ଗାତ୍ରର ସୂକ୍ଷ୍ମାତିସୂକ୍ଷ୍ମ କାରୁକଳା ଏବଂ ଗଗନସ୍ପର୍ଶୀ ବିଶାଳ ଦେବାଳୟ ନିର୍ମାଣ କୌଶଳ ନିଶ୍ଚିତଭାବେ ଏକ ବିକାଶୋନ୍ମୁଖୀ ପରଂପରାର ନିଦର୍ଶନ; ଏଥିରେ ସନ୍ଦେହ କରିବାର କିଛି ନାହିଁ । କଳିଙ୍ଗର ଦକ୍ଷିଣ ପଶ୍ଚିମରେ ଥିବା ସୀତାବିଞ୍ଜି, ଗୁଡ଼ହାଣ୍ଡି ଓ ନରାଜ ପର୍ବତ ଖୋଦିତ ଚିତ୍ରଲିପିକୁ ଏହାର ପ୍ରମାଣ ସ୍ୱରୂପ ଚିହ୍ନିତ କରାଯାଇପାରେ । ଉକ୍ତ ରେଖାଚିତ୍ର ସକଳ କି ଉଦ୍ଦେଶ୍ୟରେ, କାହାଦ୍ୱାରା, କେଉଁବେଳେ ଲେଖା'ଯାଇଥିଲା ସଠିକ ଜ୍ଞାତ ନୁହେଁ ତଥାପି ତାହା ପ୍ରସ୍ତର ଯୁଗୀୟ ଆଦିବାସୀ ସମାଜର କଳାପ୍ରିୟତାର ପରିଚୟ ପ୍ରଦାନ କରନ୍ତି । କାଳକ୍ରମେ ତାହାହିଁ ପଶୁପକ୍ଷୀ, ବୃକ୍ଷଲତା, ନରନାରୀ ମୂର୍ତ୍ତି ଗଠନ କରିବାକୁ ପ୍ରେରଣା ଦେଇଥିବା ସମ୍ଭାବନା । କାରଣ ଚିତ୍ରକଳାକୁ ଭାସ୍କର୍ଯ୍ୟର ଜନନୀ ବୋଲି କୁହାଯାଏ । ତାହାହିଁ ଶେଷରେ ସାମାଜିକ ଜୀବନର ପବିତ୍ର ଅଙ୍ଗରୂପେ ବିବେଚିତ ଦେବତା ମୂର୍ତ୍ତି ଗଠନରେ ନିଜକୁ ନିୟୁକ୍ତ ହୋଇଥିବ । ସେହି କାରଣରୁ ବୋଧହୁଏ ପାର୍ବତ୍ୟ ଶବରଙ୍କତୁଳ୍ୟ ସମତଳବାସୀ ସମାଜରେ ମଧ୍ୟ ପ୍ରସ୍ତର ନିର୍ମିତ ଦେବଦେବୀ ମୂର୍ତ୍ତି ବହୁଳଭାବେ ଦୃଷ୍ଟିଗୋଚର ହୁଏ ।

କେବଳ ମୂର୍ତ୍ତି ନୁହେଁ, ଅଧିକାଂଶ ଦୁର୍ଗ, ନଗର, ପ୍ରାସାଦ, ପ୍ରାକାର, ସ୍ତୂପ ପ୍ରଭୃତି ନିର୍ମାଣ କରିବାରେ ମଧ୍ୟ କଳିଙ୍ଗ ଶିଳ୍ପୀ କମ୍ ଦକ୍ଷ ନଥିଲେ । କଳିଙ୍ଗର ବାସ ବସତି

ପ୍ରସଙ୍ଗରେ ତାହା ବର୍ଣ୍ଣିତ ହୋଇଛି । ଶିଶୁପାଳଗଡ଼, ଅସୁରଗଡ଼, ଜଉଗଡ଼ ସମେତ ଯବ, ମାଳୟ, ସିଂହଳର ଭଗ୍ନାବଶିଷ୍ଟ କୀର୍ତ୍ତିରାଜି କଳିଙ୍ଗ ଶିଳ୍ପ ଶୈଳୀର ଚାକ୍ଷୁଷମାନ ଦୃଷ୍ଟାନ୍ତରୂପେ ବିଦ୍ୟମାନ । ସେ ମଧ୍ୟରେ ଖଣ୍ଡଗିରିସ୍ଥିତ ରାଣୀଗୁମ୍ଫା ସବୁଠାରୁ ଅଧିକ ଚମତ୍କାର ବୋଲି ବିଶେଷଜ୍ଞମାନେ କହନ୍ତି । ଜୈନଧର୍ମର ଆଦିମ ତୀର୍ଥଙ୍କର 'ଋଷଭ-ନାଥ'ଙ୍କ ନାମରେ ତାହା ଉତ୍ସର୍ଗୀକୃତ । ଭଗ୍ନାବଶେଷ ଏକ ପୁରାତନ ଭିତ୍ତି ଉପରେ ଖାରବେଳଙ୍କ ଦ୍ୱାରା ତାହା ନିର୍ମିତ ହୋଇଥିଲା ବୋଲି ଐତିହାସିକମାନେ ବିଶ୍ୱାସ କରନ୍ତି । ତା' ଯଦି ହୁଏ—ହେବାର ଅଧିକ ସମ୍ଭାବନା—ତେବେ ଖାରବେଳଙ୍କ ଆଗରୁ, ଅର୍ଥାତ୍ ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀ ପୂର୍ବରୁ ମୂଳ ମନ୍ଦିର ବା ସ୍ତୂପଟି ନିର୍ମିତ ହୋଇଥିବା ନିଶ୍ଚୟ । ପୂରାପୂରି ଭଗ୍ନାବସ୍ଥା ପ୍ରାପ୍ତ ହୋଇନଥିଲେ ଖାରବେଳଙ୍କପରି ଜଣେ ଉଦାରମନା ନରପତି କୌଣସିଟା ସ୍ଥଳରେ ତା ଉପରେ ପ୍ରାସାଦ ନିର୍ମାଣ କରିବାକୁ ଇଚ୍ଛା କରିନଥିବେ । ପ୍ରସ୍ତରୀ ନିର୍ମିତ ପ୍ରାସାଦହେଉ ବା ସ୍ତୂପହେଉ ପାଞ୍ଚଶ ବର୍ଷ ଆଗରୁ ନିଶ୍ଚିହ୍ନ ହୋଇପଡ଼ିବା କ୍ୱଚିତ୍ ଦେଖାଯାଏ । ତେଣୁ ମୂଳବସ୍ତୁଟି ଖ୍ରୀ:ପୂ: ସପ୍ତମ ଶତାବ୍ଦୀ କିମ୍ବା ତତ୍ପୂର୍ବରୁ ଗଠିତ ହୋଇଥିବା ସମ୍ଭାବନା । ବୋଧହୁଏ ଜୈନଧର୍ମର ଚତୁର୍ବିଂଶ ତୀର୍ଥଙ୍କର ପାର୍ଶ୍ୱନାଥଙ୍କ କଳିଙ୍ଗ ଆଗମନର ସ୍ମାରକୀସ୍ୱରୂପ ସେଠାରେ ସ୍ତୂପ ବା ମଣ୍ଡପଟିଏ ସ୍ଥାପନ କରାଯାଇଥିଲା ଏବଂ ତାହା ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀ ସରିକି ଭୂମିସାତ୍ ହୋଇପଡ଼ିଥିଲା । ଜୈନରାଜା ଖାରବେଳ ଜୈନକୀର୍ତ୍ତିର ପୁନରୁଦ୍ଧାର ସକାଶେ ତା'ଉପରେ ରାଣୀଗୁମ୍ଫା ନିର୍ମାଣ କରାଇ ଆଦିତୀର୍ଥଙ୍କର ଋଷଭଙ୍କ ନାମରେ ଉତ୍ସର୍ଗ କରିଥିଲେ । ଏସବୁର ନିର୍ଯ୍ୟାସ ସ୍ୱରୂପ କୁହାଯାଇପାରେ, ପ୍ରାଗୈତିହାସିକ କଳିଙ୍ଗର ସ୍ଥାପତ୍ୟ ପ୍ରଥମାବସ୍ଥାରେ ଉନ୍ନତିର ଚରମସୀମା ସ୍ପର୍ଶ କରିନଥିଲେ ମଧ୍ୟ ବିଟବୀଜ ମହାଦ୍ରୁମରେ ପରିଣତ ହେଲାପରି ପରବର୍ତ୍ତୀକାଳରେ କଳିଙ୍ଗ ଶିଳ୍ପୀକୁ ବିଶ୍ୱବିଖ୍ୟାତ କରାଇପାରିଛି ।

ଭାସ୍କର୍ଯ୍ୟ ପରି କଳିଙ୍ଗର ଚିତ୍ରକଳା ମଧ୍ୟ ଅନୁନ୍ନତ ନଥିଲା । ଗିରିଶିଖରବାସୀ ଶବର, ଅରଣ୍ୟ ଭିତରେ କନ୍ଧ, ଉପକୂଳବାସୀ ଓଡ଼ ସମ୍ପ୍ରଦାୟର ପରଂପରା ଅନୁଧ୍ୟାନରୁ ତାହା ସ୍ପଷ୍ଟ ହୁଏ । ଗୃହ ନିର୍ମାଣ ପଦ୍ଧତିରୁ ଆରମ୍ଭକରି କ୍ଷୁଦ୍ର ବାସନକୁସନ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଏହାର ଦୃଷ୍ଟାନ୍ତ ମିଳେ । ସାଧାରଣ ବାସଗୃହମାନ ସମାନ ଛାଞ୍ଚରେ ଗଢ଼ା । ଘରମୁହଁରେ ପିଣ୍ଡା, ତାକୁ ଲାଗି ବଖରାଏ କୋଠରି । ପଛକୁ 'ପଞ୍ଚା' (ଚତୁରସ୍ର ଜାଗାଖଣ୍ଡେ) । ତା ପାଖକୁ ରନ୍ଧାଶାଳ । ବାଡ଼ିପଟକୁ ପୁଣି ପିଣ୍ଡାଟିଏ । ଏ ହେଲା ସାଧାରଣ ଗୃହସ୍ଥର ଗୃହ । ଘରର କାନ୍ଥ ହୁଏତ ଖାଣ୍ଟି-ମାଟି ନୁହେଁ ତ ବରୋଳା ମାଟିରେ ତିଆରି । ବାହାରପଟ ପଲସ୍ତରା ଉପରେ ରଙ୍ଗମାଟି ଲିପାଥାଏ । କେତେ ଜାଗାରେ ହାଣ୍ଡିକଳାରେ ପାଉଁଶ ଗୋଳାଇ କାନ୍ଥ ଲିପାହେବା ମଧ୍ୟ ଦେଖାଯାଏ । ଆଗ ପିଣ୍ଡାମାନ ଦାଣ୍ଡରାସ୍ତାଠାରୁ ଦି-ତିନିପାହାଚ ଉଚ୍ଚରେ ଏବଂ ଆଖିଦୃଶିଆ ଗୋବର ଲିପା ପିଣ୍ଡା ଉପରେ ସୁନ୍ଦର ଦିଶିବାଲାଗି ଖ୍ରଡ଼ିକଡ଼େ ରଙ୍ଗମାଟି ବୋଳି ଝୋଟିଚିତ୍ର ଅଙ୍କାଥାଏ । କାନ୍ଥଗୁଡ଼ିକ ବିଭିନ୍ନ ଚିତ୍ରଦ୍ୱାରା ଆକର୍ଷଣୀୟ

କରାଯାଉଥାଏ । ଗୁଣ୍ଡଲ ପିଠଉ ସାହାଯ୍ୟରେ ରେଖାକାଟି ଝୋଟିଚିତ୍ର ଅଙ୍କାହୁଏ । ଚିତ୍ର ମଧ୍ୟରେ ସ୍ୱସ୍ତିକ, ପଦ୍ମଫୁଲ, ଚନ୍ଦ୍ର, ଧାନଫେଣ, ଢୋଲ, ମଗର, ପାଦଚିହ୍ନ, ହାତୀ, ଶୁଆ, ଗଛ, ଲତା, କଳସ ପ୍ରଭୃତି ହରେକ ରକମର ବସ୍ତୁ । ପୁରନାରୀମାନେ ସବୁ ଚିତ୍ର ନିଜ ହାତରେ ଲେଖନ୍ତି । ପିଲାବୟସରୁ ବୋହୂମାନେ ଝିଅହେଲା ବେଳରୁ ଜ୍ୟେଷ୍ଠାଙ୍କଠାରୁ ଝୋଟିଲେଖା ଶିଖି ସାରିଥାନ୍ତି । କିନ୍ତୁ ଆଶ୍ଚର୍ଯ୍ୟର କଥା, ପର୍ବତ ଶିଖର ଶବର, ଅରଣ୍ୟବାସୀ କନ୍ଧ ଓ ସମତଳ ଓଡ଼ିଆ ପାଇକ ସମାଜରେ ଏକାରକମର, ଏକାଢଙ୍ଗର ଝୋଟିଚିତ୍ର ସମାନଭାବେ ଏ ପର୍ଯ୍ୟନ୍ତ ଚାଲିଆସୁଛି । ଏବେ ସୁଦ୍ଧା ମାର୍ଗଶୀର ଗୁରୁବାରଦିନ ଯେଉଁ ଝୋଟିଚିତ୍ର କଳିଙ୍ଗର ଗାଁ ଗାଁରେ ଲେଖାହୁଏ, ତାକୁ ଦେଖିଲେ କିଏ କହିବ ଏ କଳାର ଉତ୍ପତ୍ତି ମୂଳ ସମାନ ନୁହେଁ ବୋଲି ? ସୁତରାଂ ଏହା ପରଂପରାକ୍ରମେ ଚାଲି ଆସୁଥିବା କଳିଙ୍ଗର ପ୍ରାଚୀନ ଚିତ୍ରକଳାବୋଲି ନିଃସନ୍ଦେହରେ କୁହାଯାଇପାରେ । ଏଥିପାଇଁ ଯେଉଁ ବନ୍ୟଜାତବସ୍ତୁର ବ୍ୟବହାର ଆଦିମଯୁଗରୁ କରାହୋଇ ଆସିଥିଲା ତାହା ଏ ଯାବତ୍ ଅକ୍ଷୁଣ୍ଣ ରହିଛି । ଟିକିଏ ସୁଦ୍ଧା ବ୍ୟତିକ୍ରମ ଦେଖାଯାଏ ନାହିଁ । ରଙ୍ଗମାଟି, ଗୁଣ୍ଡଲ ପିଠଉ, ପଥର ମୁରୁଜ, ଉପାଦାନ ଏବଂ ଚିତ୍ର ବୋଇଲେ କଳସ, ଯୋଡ଼ିପାଦ, ମାଛ, ଗଛ, ସ୍ୱସ୍ତିକ, ପଦ୍ମ । ସବୁ ରେଖାଚିତ୍ର, ଯାହା ପରଂପରାକୁ ଯାବୁଡ଼ି ଧରି ରଖିବାରେ କେହି କଳିଙ୍ଗବାସୀଙ୍କ ସମକକ୍ଷ ନୁହେଁବୋଲି ସଙ୍କେତ ଦିଏ । ତେଣୁ ଏସବୁର ମୂଳ ଖୋଜିବାକୁ ଗଲାବେଳେ ଅନୁସନ୍ଧିତ୍ସୁ ଆପେ ଆପେ ପ୍ରାଗୈତିହାସିକ କଳିଙ୍ଗର ଅନାବିଷ୍କୃତ ଅତୀତ ଭିତରେ ନିଜକୁ ଅଜାଣତରେ ହଜାଇଦିଏ ।

**ଦେବବିଶ୍ୱାସ**—କଳିଙ୍ଗର ଦେବତା ବିଶ୍ୱାସ ଅତି ଉଚ୍ଚକୋଟିର ଏବଂ ବିଚିତ୍ର ଧରଣର । ବାସ୍ତବ ଜୀବନରେ ଯାହା ଉପକାରୀ ଏବଂ କଲ୍ୟାଣପ୍ରଦ; ଯଥା—ପୃଥିବୀ, ସୂର୍ଯ୍ୟ, ଅରଣ୍ୟ, ପର୍ବତ, ଝରଣା, ବୃକ୍ଷ ପ୍ରଭୃତି ତାହାହିଁ ଦେବତା । କାରଣ ତାଙ୍କର ଯୋଗୁ ଜୀବନର ଅଭାବ ପୂରଣ ହୋଇଥାଏ । ସୂର୍ଯ୍ୟ ଉତ୍ତାପ ଦିଏ, ପୃଥିବୀ ଶସ୍ୟ ଦିଏ, ଅରଣ୍ୟ ଶିକାର ଯୋଗାଏ, ବୃକ୍ଷରୁ ଫଳପୁଷ୍ପ ମିଳେ, ଝରଣା ତୃଷା ମେଣ୍ଟାଇଥାଏ । ତେଣୁ ସେମାନେ ଦେବତା; ଉପାସନାର ଯୋଗ୍ୟ । ତାଙ୍କର ନାଁରେ ବସ୍ତୁଟିଏ ଥାପନା ହୋଇ ପୂଜା କରାଯାଏ । ଅନୁଧ୍ୟାନରୁ ଜଣାପଡ଼େ, ପ୍ରାକ୍ତନ କଳିଙ୍ଗରେ ତ୍ରିବିଧ ଦେବତା ଉପାସିତ ହୋଇ ଆସୁଥିଲେ—ଗ୍ରାମଦେବତା, ଗୃହଦେବତା ଓ ଇଷ୍ଟଦେବତା । ଗ୍ରାମଦେବତା ହେଲେ ସମଗ୍ର ଗ୍ରାମବାସୀଙ୍କର । ସେ ଗ୍ରାମର ରକ୍ଷାକର୍ତ୍ତ୍ରୀ ଓ ମଙ୍ଗଳବିଧାତ୍ରୀ । ଶତ୍ରୁ, ବ୍ୟାଘ୍ର, ରୋଗ, ଶସ୍ୟହାନି, ମହାମାରି, ବସନ୍ତ ପ୍ରଭୃତି ଭୟ ଏବଂ ଭୂତପ୍ରେତାଦି ଉପଦ୍ରବରୁ ଗାଁ ଲୋକଙ୍କୁ ରକ୍ଷା କରନ୍ତି । ତେଣୁ ତାଙ୍କୁ ସର୍ବଦା ପ୍ରସନ୍ନ ରଖିବା ପାଇଁ ସକଳ ପ୍ରକାର ଉଦ୍ୟମ କରା ହେଉଥାଏ । ଅନୁଗ୍ରହ ଆଶାରେ ଦଳବଦ୍ଧ ଭାବେ ସ୍ତ୍ରୀ-ପୁରୁଷ ନିର୍ବିଶେଷରେ ଗୀତବାଦ୍ୟ ନୃତ୍ୟାଦି ଦ୍ୱାରା ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ପଶୁବଳି ଦେଇ ତାଙ୍କୁ ତୃପ୍ତି କରିଥାନ୍ତି । ସେମାନଙ୍କ ଧାରଣା ଯେଉଁ ଉପହାର ଓ ଖାଦ୍ୟପେୟ ଦ୍ୱାରା ମଣିଷ ସନ୍ତୁଷ୍ଟ

ହୁଏ, ତାହାହିଁ ଦେବତାଙ୍କ ପ୍ରିୟବସ୍ତୁ । ତାଙ୍କ ଦୃଷ୍ଟିରେ ଦେବତା ହେଉଛନ୍ତି ତାଙ୍କର ଭିତରୁ ଜଣେ—ଅତି ଆପଣାର ଏବଂ ସୁଖ ଦୁଃଖର ସାଥୀ । ସେ କିନ୍ତୁ ବିଭିନ୍ନ ଗୋଷ୍ଠୀ ମଧ୍ୟରେ ବିଭିନ୍ନ ଶବ୍ଦଦ୍ୱାରା ନାମିତ ହୋଇ ଆସୁଥିବା ଦେଖାଯାଏ । କୋଉଠି 'ଜାତ୍ରାଙ୍କ' କେଉଁଠି 'ପେନୁ', କେଉଁଠି 'ବୋଙ୍ଗା,' କେଉଁଠି 'ବୁରୁ', କେଉଁଠି 'ଦେବତା' ଏପରି ବିଭିନ୍ନ ନାମରେ ସେ ନାମିତ ହୋଇଥାନ୍ତି । ବିପଦବେଳେ ଦେବତାଙ୍କ କରଣି ଅନୁସାରେ 'କେର୍‌ମେଲ୍' (ଆଖିରୋଗର ଦେବୀ) 'ରୁଣିମା' (ଶିଶୁ ରୋଗର ଦେବୀ), 'କାସର୍‌ନା' (ପଶୁରୋଗର ଦେବୀ) 'କୁଦ୍ରା' (ନରବଳି ଖାଇବା ଦେବୀ) ପ୍ରଭୃତି ବିଭିନ୍ନ ରୂପରେ ତାଙ୍କୁ ପୂଜା ଅର୍ଚ୍ଚନା କରାଯାଏ । କିନ୍ତୁ ପ୍ରତି ଗ୍ରାମରେ ନିଶ୍ଚିତ ଭାବେ ଜଣେ ଗ୍ରାମ ଦେବତୀ ଥା'ନ୍ତି । ଏବେ ସୁଦ୍ଧା ଓଡ଼ିଶାର ଗାଁମାନଙ୍କରେ ବାସେଲୀ, କଦମ୍ବଖଣ୍ଡୀ, ମଙ୍ଗଳା, ବାଙ୍କଶିର, ଜହ୍ନିଖାଇ କାଲୁଡ଼ଗାଇ, କାଳୁଆ, କନ୍ଧୁଣୀ, ପଞ୍ଚ କୁରେଇଶୁଣୀ, ଦୁଆରଶୁଣୀ ପ୍ରଭୃତି ନାମରେ ଗ୍ରାମଦେବତୀ ପୂଜାପାଇ ଆସୁଥିବା ଦୃଷ୍ଟି-ଗୋଚର ହୁଏ । ଏହା ଯେ ଶାବରୀ ପରଂପରା ଉପରେ ଆଧାରିତ ଏଥିରେ ସନ୍ଦେହ ନାହିଁ ।

ଟିକିଏ ସୂକ୍ଷ୍ମଭାବେ ବିଚାରକଲେ ଜଣାପଡ଼େ ଗ୍ରାମଦେବତୀ ପ୍ରଥା ପ୍ରାଗୈତିହାସିକ ଯୁଗରୁ କଳିଙ୍ଗରେ ରହିଆସିଥିଲା । ପଥରରୂପିଣୀ ଗ୍ରାମଦେବୀ କାଳକ୍ରମେ କରଚରଣାଦି ବିଶିଷ୍ଟ ପାଷାଣ ମୂର୍ତ୍ତିରେ ପରିବର୍ତ୍ତିତ ହୋଇ ପୂଜାପାଇଆସିଲେ । ତାଦୃଶ ଶିଳାମୂର୍ତ୍ତି ପୁରୀ ସମୁଦ୍ର ଉପକୂଳରୁ ଆରମ୍ଭ କରି ବିଜୟନଗରମ୍ ଜିଲ୍ଲାପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ କେଉଁଠି ଅବହେଳିତ, କେଉଁଠି ସ୍ଥାନଚ୍ୟୁତ, କେଉଁଠି ବା ଉପେକ୍ଷିତ ଅବସ୍ଥାରେ ରହିଥିବା ଦେଖାଯାଏ । ପୁରୀ ଜିଲ୍ଲାରେ ଥିବା କଳିଙ୍ଗେଶ୍ୱରୀ, ଭୁଷଣ୍ଡପୁର ନିକଟସ୍ଥ ଉଗ୍ରତାରା, ବାଣପୁରଣ୍ଡି ପାଖ ଡୁମ୍ବୁଳା, ବାଙ୍କଶିରୀ, ସମୁଦ୍ରବେଳା ମାଟିତଳୁ ଉଠିଥିବା ମନ୍ଦିର ଭୈରବୀ, ଦକ୍ଷିଣୋପାନ୍ତ ଉଦ୍ୟାନଖଣ୍ଡବାସିନୀ କୁଠାରୀ, ମହେନ୍ଦ୍ରଗିରି ପାଦରେ ଅଧିଷ୍ଠିତା କୁରେଇଶୁଣୀ କୋରାପୁଟପାହାଡ଼ ଉପରି 'ବନଦୁର୍ଗା' ପ୍ରଭୃତି ଏହାର ନିଦର୍ଶନ ହୋଇ ରହିଛି । ତା'ଛଡ଼ା ରଜପର୍ବ, ଖରଖରି ଓଷା, ଜହ୍ନିଓଷା ସମୟରେ ଅଭିଆଡ଼ୀ ଝିଅଙ୍କ ଦ୍ୱାରା ପୂଜିତ ଦେବଦେବୀ ମଧ୍ୟ ଏହି ଶ୍ରେଣୀର ବୋଲି ମନେହୁଏ । ରଜପର୍ବରେ 'ରଜସ୍ୱଳା' ପୃଥିବୀପରି ଚଇତ୍ରମାସ ରବିବାରରେ 'ଖରଖରୀ' ନାମକ ବନଦେବୀଙ୍କୁ ପୂଜା କରାଯାଏ । ଏହା ପାରମ୍ପରିକ ରୀତିରେ ଚାଲିଆସୁଥିବା ସର୍ବଜନବିଦିତ ।

ଗ୍ରାମଦେବୀ ଛଡ଼ା ଓଡ଼ପାଟକ କୁଳରେ 'ଇଷ୍ଟଦେବୀ' ନାମରେ ଅନ୍ୟଏକ ଦେବତାପୂଜା ଚାଲିଆସୁଥିବା ଦେଖାଯାଏ । ଇଷ୍ଟଦେବୀ ବୋଇଲେ 'ଗୃହଦେବତା' । ସେ ପରିବାରକୁ ନିରାପଦରେ ରଖିଥାନ୍ତି । ଘର କୋଠରି ମଝି 'ବଇ' (କାଣ୍ଡ) ତଳେ ତାଙ୍କ ଅସ୍ଥାନ । ଆପଦବିପଦ ବେଳେ କୁଟୁମ୍ବର ଦାୟିତ୍ୱ 'ଇଷ୍ଟଦେବୀ'ଙ୍କ ଉପରେ ନ୍ୟସ୍ତଥାଏ । ତାଙ୍କୁ ପ୍ରଥମେ ପୂଜାକରି ତାଙ୍କର ଆଜ୍ଞାରେ ଶୁଭକର୍ମ ଆରମ୍ଭ କରାହୁଏ । ଏପରିକି ତାଙ୍କୁ ଲାଗି ନକଲେ ନୂଆ ଲୁଗାଟିଏ ବା ନୂଆ ଅଳଙ୍କାରଟିଏ ମଧ୍ୟ ପିନ୍ଧାଯାଏ ନାହିଁ । ଝିଅ ହେଉ ବା

ବୋହୂହେଉ ପ୍ରଥମେ ଘରକୁ ଆସିଲେ ଆଗେ ଇଷ୍ଟଦେବୀଙ୍କୁ ମୁଣ୍ଡିଆ ମାରିବାକୁ ପଡ଼େ। ଘରେ ମାଛରନ୍ଧା ହେଲେ, ନୂଆଖିଆ ହେଲେ ଆଗେ ଇଷ୍ଟଦେବୀଙ୍କ ନାଁରେ ପାଣିଛଡ଼େଇବା ବିଧି ରହିଛି । ସ୍ଥୂଳତଃ ଓଡ଼ ଗୃହସ୍ଥଙ୍କ ଇଷ୍ଟଦେବୀ ପରୋକ୍ଷଭାବେ ପରିବାରକୁ ନିୟନ୍ତ୍ରଣ କରିଥାନ୍ତି । ପାର୍ବତ୍ୟ ଶବରଙ୍କ 'ପିତୃଦେବତା' ଏବଂ ଆରଣ୍ୟକ ଗୋଷ୍ଠୀର 'ଇଶାଣ ଦେବତା' ଅନୁସରଣରେ ଇଷ୍ଟଦେବୀ ପ୍ରଥା ଓଡ଼ ସମାଜରେ ଚାଲିଆସୁଥିଲେ ସୁଦ୍ଧା ବୁଠାସୁଣୀ, ଭୈରବୀ, କାଳୀ, ମହାକାଳୀ, କାମାକ୍ଷୀ ପ୍ରଭୃତି ନାମରୁ ତାହା ତାନ୍ତ୍ରିକ ଦେବତାପରି ଜଣାପଡ଼େ। କାରଣ ଉକ୍ତ ନାଁଗୁଡ଼ିକ ଦେଶଜ ଶବ୍ଦ ନୁହେଁ, ତତ୍ସମ ଶବ୍ଦ, ପ୍ରଥମାବସ୍ଥାରେ ତାହା କିଣ ଥିଲା କହିବାର ଉପାୟ ନାହିଁ। ତଥାପି ତାହା ଏକ ଆଦିମ ସମାଜର ପରଂପରା—ଏହା ନିଃସନ୍ଦେହ ।

ଉକ୍ତ ଦୁଇଟି ଛଡ଼ା ଅନ୍ୟ ଏକ ଦେବତା କଳିଙ୍ଗରେ ଉପାସିତ ହୋଇଆସୁଥିଲେ, ଯାହାଙ୍କୁ 'ଗଣଦେବତା' ଆଖ୍ୟାଦିଆଯାଇପାରେ । ସେ ଥିଲେ ସମଗ୍ର ଦେଶବାସୀଙ୍କ ଦେବତା, ରାଷ୍ଟ୍ରଦେବତା; ଜାତି-କୁଳ ନିର୍ବିଶେଷରେ ସମସ୍ତଙ୍କ ଉପାସ୍ୟ ଥିଲେ ସେ। ସବୁ ଦେବତା ଅପେକ୍ଷା ଉଚ୍ଚରେ ଆସନ ତାଙ୍କର । ତେଣୁ ସର୍ବାପେକ୍ଷା ଉଚ୍ଚଜାଗାରେ ଅଧିଷ୍ଠିତ ଥିଲେ ସେ । ବୋଧହୁଏ ପର୍ବତ ଶିଖର ଥିଲା ତାଙ୍କର ଆସ୍ଥାନ—ସମ୍ଭବତଃ ମହେନ୍ଦ୍ରର ସର୍ବୋଚ୍ଚ ଶିଖର ପ୍ରଦେଶ, କାରଣ ତାହା ଯେପରି ନିରାପଦ ସେହିପରି ଅଗମ୍ୟ। ପର୍ବ ଦିନରେ ସମଗ୍ର କଳିଙ୍ଗବାସୀ ସେଠାରେ ଏକତ୍ରିତ ହୋଇ ପୂଜାର୍ଚ୍ଚନା କରୁଥିଲେ । ଦେବତାଙ୍କ ନାଁ ଥିଲା 'ଜଗନ୍ତ'। 'ଜଗନ୍ତ' ଶବ୍ଦ ପରବର୍ତ୍ତୀ ଯୁଗରେ 'ଜଗନ୍ନାଥ' ରୂପେ ପରିବର୍ତ୍ତିତ ହୋଇଥାଇପାରେ । ଯେହେତୁ ଅସମାନ ବାଗ୍‌ଯନ୍ତ୍ର ଓ ଶ୍ରୁତିବୈବିଧ୍ୟ ଯୋଗୁ ବ୍ୟକ୍ତିବିଶେଷଦ୍ୱାରା ଉଚ୍ଚାରିତ ଶବ୍ଦ କାଳକ୍ରମେ ପରିବର୍ତ୍ତିତ ହୋଇ ପଡ଼ନ୍ତି, ତେଣୁ 'ଜଗନ୍ତ' 'ଜଗନ୍ନାଥ'ରେ ପରିଣତ ହୋଇ ପଡ଼ିବା ବିଚିତ୍ର ନୁହେଁ। ପକ୍ଷାନ୍ତରେ ଏହା ବି ହୋଇପାରେ । 'ଜଗନ୍ନାଥ' 'ଜଗନ୍ତ' ଶବ୍ଦର ସଂସ୍କୃତାୟିତ ରୂପ। 'ଦେବତା'ରୂପୀ ଦାରୁ ବ୍ରାହ୍ମଣ୍ୟ ପ୍ରଭାବରେ 'ବ୍ରହ୍ମ' ରୂପୀ 'ଦାରୁ' ଭାବେ ଅର୍ଥାତ୍ 'ଦାରୁଦେବତା', 'ଦାରୁବ୍ରହ୍ମ' ନାମରେ ପୁରାଣମାନଙ୍କରେ ବର୍ଣ୍ଣିତ ହେଲାପରି 'ଜଗନ୍ତ'ଙ୍କୁ 'ଜଗନ୍ନାଥ' କହିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବୋଧହୁଏ ଦାରୁଦେବତା 'ଜଗନ୍ତ' ବ୍ରାହ୍ମଣ୍ୟ ଧର୍ମର ଉପାସ୍ୟରୂପେ ଗୃହୀତ ହେଲାପରେ 'ଜଗନ୍ନାଥ' ନାମରେ ଅଭିହିତ ହୋଇଥିଲେ। ମହେନ୍ଦ୍ର ଶିଖରକୁ ଉଠିଥିବା ଏକ ମାର୍ଗର ନାମ 'ଦାରୁବ୍ରହ୍ମ'। ସେଥିରୁ ସେହି କଥା ବ୍ୟଞ୍ଜିତ ହୁଏ। ସେହି ବାଟେ ଯାଇ 'ଦାରୁ' ଦର୍ଶନ କରୁଥିବା ହେତୁ କିମ୍ବା ସେହି ମାର୍ଗରେ 'ଦାରୁ' ସ୍ଥାନାନ୍ତରିତ ହୋଇଥିବାରୁ ତାହା 'ଦାରୁବ୍ରହ୍ମ' ନାମରେ ନାମିତ କହିହୁଏନାହିଁ । ତଥାପି ପ୍ରଥମ ଅପେକ୍ଷା ଦ୍ୱିତୀୟଟି ଅଧିକ ଯୁକ୍ତିଯୁକ୍ତ ମନେହୁଏ । କାରଣ, ପାର୍ଶ୍ୱନାଥଙ୍କ ଆଗମନପରେ 'ଅଶ୍ମକ' ଦ୍ୱାରା କଳିଙ୍ଗ ଆକ୍ରାନ୍ତ ହୋଇଥିବା କଥା ଜୈନଶାସ୍ତ୍ରରେ ଉଲ୍ଲିଖିତ । ଅଶ୍ମକ ଏକ ଦାକ୍ଷିଣାତ୍ୟ ରାଜ୍ୟ।

ଦକ୍ଷିଣପଟ୍ଟୁ ଆକ୍ରମଣବେଳେ ଶବରଗୋଷ୍ଠୀ ସ୍ୱଇଷ୍ଟଦେବତାଙ୍କୁ ଗୋପନମାର୍ଗରେ ଓହ୍ଲାଇ ନେଇ କଳିଙ୍ଗର ପୂର୍ବ ସୀମାନ୍ତ ନୀଳକନ୍ଦରକୁ ନିରାପଦ ମନେକରି ସେଠାରେ ଅବସ୍ଥାପିତ କରିଥିବେବୋଲି ବିଶ୍ୱାସ ହୁଏ । ମୂଳ ଦାରୁକୁ ସ୍ଥାନାନ୍ତରିତ କରିବା ସମ୍ଭବ ହୋଇ ନଥିଲେ ମଧ୍ୟ ଉପାସିତ ଶିଳାଖଣ୍ଡକୁ ଅପସାରିତ କରିନେବା କଷ୍ଟସାଧ୍ୟ ନୁହେଁ । ଅନୁମାନ ହୁଏ, ତାକୁ ହିଁ ନେଇ ନୀଳାଚଳସ୍ଥିତ ବଟବୃକ୍ଷ ମୂଳରେ ପ୍ରତିଷ୍ଠିତ କରାଯାଇଥିଲା । ଯାହା ପୁରାଣରେ 'ନୀଳକାନ୍ତମଣି ବିଗ୍ରହ' ବୋଲି ବର୍ଣ୍ଣିତ । ଦେବତାଙ୍କ ଗହଣରେ ରାଜସେବକ ସହିତ ସହଯୋଗୀ ସେବାନିଯୋଗ ମଧ୍ୟ ସେଠାକୁ ଉଠିଯାଇଥିବେ ଏବଂ ସ୍ଥାୟୀ ବସତି ନିର୍ମାଣ କରି ରହିଥିବେ । ତେଣୁ ବ୍ରାହ୍ମଣ୍ୟ ଦେବତାରୂପେ ଜଗନ୍ନାଥଙ୍କ ପ୍ରତିଷ୍ଠା ବେଳକୁ ସେ ସ୍ଥାନ 'ବେଷ୍ଟିତଂ ଶବରାଳୟୈଃ' ବୋଲି ପୁରାଣରେ ଉକ୍ତ ଅଛି । ଏଣେ ଶବର ଦେବତାଙ୍କ ଅପସାରଣ ପରେ ମହେନ୍ଦ୍ର ଶୈବପୀଠରେ ପରିଣତ ହୋଇଥିବା ବିଶେଷ ସମ୍ଭବ । ମନେହୁଏ ଅଶ୍ୱକାଧୀନ ଦକ୍ଷିଣ କଳିଙ୍ଗ ଭିତରେ ଶୈବୋପାସକ ବର୍ଗ ନିର୍ବାଧରେ ଆସି ମହେନ୍ଦ୍ର ଚୂଡ଼ାରେ ଶିବଲିଙ୍ଗମାନ ପ୍ରତିଷ୍ଠା କରିଥିବେ, ଯାହାର ସ୍ମୃତି ସ୍ୱରୂପ ଭଗ୍ନାବଶିଷ୍ଟ 'ଗୋକର୍ଣ୍ଣେଶ୍ୱର' ଲିଙ୍ଗ ଅଦ୍ୟାପି ବିଦ୍ୟମାନ । ଏଣୁ ଜଗନ୍ନାଥ ପ୍ରଥମେ 'ଦାରୁଦେବତା'ରୂପେ ମହେନ୍ଦ୍ରାଚଳରେ ପ୍ରତିଷ୍ଠିତ ଥିଲେ ଏବଂ ଉତ୍ତରକାଳରେ ନୀଳାଚଳକୁ ଅପସାରିତହୋଇ 'ଦାରୁବ୍ରହ୍ମ' ନାମରେ ପୂଜାପାଇ ଆସିଲେ ବୋଲି କହିବା ଅସଙ୍ଗତ ନୁହେଁ । ତଥାପି ଏହା ଅଧିକ ଗବେଷଣାସାପେକ୍ଷ ।

ଶବର ଦେବତା ଦିବ୍ୟତ୍ୱବାପନ୍ନ ନଥିଲେ, ତେଣୁ ତାଙ୍କୁ ମଣିଷଭଳି ପୂଜାକରାଯାଉଥିଲା । 'ବଡ଼ ମଣିଷ' ବା 'ଉତ୍ତମ ପୁରୁଷ'ରୂପେ ସେ ଥିଲେ 'ପୁରୁଷୋତ୍ତମ' । ସେଥିସକାଶେ ବଡ଼ ମଣିଷର ଚଳଣି ଅର୍ଥାତ୍ ବିଭିନ୍ନ ସେବାପାଇଁ ବିଭିନ୍ନ ନିଯୋଗ ମଣୋହି ବେଳେ ନାନାବିଧ ମିଷ୍ଟ ପଦାର୍ଥ ନିର୍ଦ୍ଦିଷ୍ଟ ଥିଲା । ସେ ଥିଲେ ବଡ଼ମଣିଷଙ୍କ ଭୋଗ—ରାଜଭୋଗ, ରାଜୁଡ଼ା । ସମଗ୍ର ଦେଶର ରାଜା ସେ । ତେଣୁ ତାଙ୍କପାଇଁ ଥିଲା ସବୁ କୁଳର ସେବା ଛତିଶାନିଯୋଗ, ଏବଂ 'ଛପନ' ପ୍ରକାର ଭୋଗସାମଗ୍ରୀ । 'ଛତିଶାନିଯୋଗ' ବୋଇଲେ ଛତିଶିଟି ପାଟକ କୁଳର ସେବାଧିକାର । ପାଟକ ଶ୍ରେଣୀର ବୃତ୍ତି ସମ୍ବନ୍ଧରେ ଆଗରୁ ସୂଚନା ଦିଆହୋଇଛି । ସ୍ୱ-ସ୍ୱ କୁଳ ବୃତ୍ତି ଅନୁରୂପ ସେବାଦ୍ୱାରା ଦେବତାଙ୍କୁ ସନ୍ତୁଷ୍ଟ କରିବା ସେମାନଙ୍କ କର୍ତ୍ତବ୍ୟ ଥିଲା । କୁମ୍ଭାର ମାଟିପାତ୍ର, ବନ୍ଧାଣି ଶିଳ୍ପକର୍ମ, ସୁନାରି ଅଳଙ୍କାର, ଗଉଡ଼ ଦୁଧ ଦହି, ମାଳୀ ଫୁଲମାଳ, ପାଠରା ପାଠପଠନ ତୁଳାଇବାପରି ମାହାରୀ ନୃତ୍ୟ-ଗୀତ-ସଂଗୀତ ଦ୍ୱାରା ଦେବତାଙ୍କ ମନୋରଞ୍ଜନ କରୁଥିଲେ । ଯେଝା ବୃତ୍ତି ଅନୁଯାୟୀ ସେବାକରି ନିଜକୁ କୃତକୃତ୍ୟ ମଣୁଥିଲେ । ଅତୀତ ଯୁଗର ଛତିଶି ପାଟକଙ୍କ କୁଳ ସେବା ହିଁ ପରବର୍ତ୍ତୀ କାଳରେ ଶ୍ରୀମନ୍ଦିରରେ 'ଛତିଶାନିଯୋଗ'ରୂପେ ପ୍ରଚଳିତ । ବଡ଼ଦେଉଳ ସେବକ ଖଟଣି ନିଯୋଗ 'କର୍ମାଙ୍ଗୀ'ରୁ ମଧ୍ୟ ଏହାର ସୂଚନା ମିଳେ । କର୍ମାଙ୍ଗୀର ରାଜଗୁରୁ ବିବରଣୀରେ ଯେଉଁ ବର୍ଣ୍ଣନା ରହିଛି ସେଥିରୁ ମନେହୁଏ, ଛତିଶକୁଳଦ୍ୱାରା ଛତିଶିଖଟଣି ସମ୍ପାଦିତ

ହୋଇଆସୁଥିଲା; କିନ୍ତୁ ପରବର୍ତ୍ତୀ ବିଧି ଅନୁଯାୟୀ ତାହା ବର୍ତ୍ତମାନ ଶତାଧିକ ସଂଖ୍ୟାକୁ ବିଲପଡ଼ିଥିଲେ ସୁଦ୍ଧା ଆବହମାନ କାଳରୁ ଚଳିଆସୁଥିବା 'ଛତିଶି' ସଂଖ୍ୟାର ବିଲୋପ ଘଟିନାହିଁ । ତାହା କରିବା ବୋଧହୁଏ ସମ୍ଭବ ହୋଇନାହିଁ । ଅଦ୍ୟାପି ନିର୍ଦ୍ଦିଷ୍ଟ ସେବାମାନ ନିର୍ଦ୍ଦିଷ୍ଟ କୁଳର ଅଧିକାରରେ ରହିଆସିଛି । ଉଦାହରଣସ୍ୱରୂପ ୧ । ଦଇତା ନିଯୋଗ—ଶବର, ୨। ଭଣ୍ଡନିଯୋଗ—ମାଳୀ, ୩। ବନ୍ଧାଣିନିଯୋଗ—ବଣିଆ, ୪। ମହାରଣା-ନିଯୋଗ—ବଢ଼େଇ, ୫। ଓଳର ନିଯୋଗ (କ) ଛତାର—ମାଳୀ, (ଖ) ତରସିଆ—ଭଣ୍ଡାରି, (ଗ) ଧ୍ୱଜାଧର—ଦୁରିଆ, (ଘ) ଅଷ୍ଟ ଆଡ଼େଣି—ଗୋଲ୍ଲ, (୬) ଖରକାନିଯୋଗ—କେଉଟ, ୭। ପାଣିଆ ଆପଟ—ଗଉଡ଼, ୮। ଧୋବାବନ୍ତୁ—ଧୋବା, ୯। କୋଠ କୁମ୍ଭାର—କୁମ୍ଭାର ବେହେରା, ୧୦। ପାଟଯୋଗନିଯୋଗ—ପାଟପତନି, ୧୧। ମାହାରୀନିଯୋଗ—ସେବକା (ମାଲୁଣୀ), ୧୨। ନାହାକ ନିଯୋଗ—ଜ୍ୟୋତିଷୀ' ୧୩। ସୁପଦଲେଇ—ଧୀବର, ୧୪। ମହାଭୋଇ ନିଯୋଗ—ଗଉଡ଼, ୧୫। ଘଣ୍ଟୁଆନିଯୋଗ—ଚଷା ଇତ୍ୟାଦି । (ବିଶେଷ ବିବରଣୀ କମିଟିରେ ଦ୍ରଷ୍ଟବ୍ୟ) ଛଟଣିସଦୃଶ ବିବିଧ ଭୋଗ ସେବାରେ ଦେବତାଙ୍କୁ ଅପ୍ୟାୟିତ କରାଯାଉଥିଲା । ପ୍ରାଚୀନ କଳିଙ୍ଗରେ ପ୍ରଚଳିତ ସର୍ବପ୍ରକାର ରନ୍ଧଣା ସାମଗ୍ରୀ ଦେବତାଙ୍କୁ 'ଭୋଗ'ରୂପେ ସମର୍ପିତ ହେଉଥିଲା । (ରନ୍ଧଣା ଦ୍ରବ୍ୟ ତାଲିକା ଆଗରୁ ଦିଆଯାଇଛି) । କିନ୍ତୁ ରାଜ୍ୟର ରାଜାଙ୍କଦ୍ୱାରେ ଦେବତାଙ୍କୁ ଉପନରୁ ବ୍ୟତିରିକ୍ତ ସ୍ୱତନ୍ତ୍ର ଦ୍ରବ୍ୟ ମଧ୍ୟ 'ରାଜଭୋଗ'ରୂପେ ଲାଗି କରାଯାଉଥିଲା । ସକଳ ଭୋଗସାମଗ୍ରୀ 'ଅକଟାଅବଟା' ପ୍ରଣାଳୀରେ ରନ୍ଧାହୋଇ ମାଟିପାତ୍ରରେ ଦେବତାଙ୍କୁ ସମର୍ପଣ କରାଯାଉଥିଲା । ନରନାରୀ ସୁରପଟେ ଘେରିବସି ଯେଝା ମନମୁତାବକ ପ୍ରସାଦ ବାଣ୍ଟିନେଇ ଆହାର କରୁଥିଲେ । ଭୋଗ ଥିଲା ଦେବତାଙ୍କ 'ପ୍ରସାଦ' ବା ଅନୁଗ୍ରହ, ତେଣୁ ଅତି ପବିତ୍ର ଥିଲା ସେ ବସ୍ତୁ । ଅଇଁଠା ସଙ୍ଗୁଡ଼ି ବାରଣ ନଥିଲା, ଛୁଆଁ ଅଛୁଆଁର ପ୍ରଶ୍ନ ନଥିଲା । ସମସ୍ତେ ମଣିଷ—ଏକା ଜାତିର—ଭେଦାଭେଦ ଆସିବ କୁଆଡ଼ୁ ? ଦେବତା ଆଖିରେ ସମସ୍ତେ ସମାନ, ପ୍ରସାଦ ପାଇବା ଅଧିକାର ସମସ୍ତଙ୍କର—ଏହା ଥିଲା ସେକାଳ କଳିଙ୍ଗର ଧର୍ମ ଭାବନା—ଦେବତା ବିଶ୍ୱାସ । ତେଣୁ ସମାଜରେ ନଥିଲା ଜାତିଭେଦ ବା ବର୍ଣ୍ଣଭେଦ ପ୍ରଥା । ଉତ୍ତରକାଳୀନ ଦୁର୍ନିବାର ସ୍ୱତୁର୍ବର୍ଣ୍ଣ୍ୟ ସ୍ରୋତରେ ପ୍ଲାବିତ ହୋଇସୁଦ୍ଧା ତାହାର ଆତ୍ମସତ୍ତ୍ୱ ଦେବତା ସେବାରୁ ଲୁପ୍ତ ହୋଇନାହିଁ । ବହିରଙ୍ଗରେ ପରିବର୍ତ୍ତନ ଘଟିଥିଲେ ସୁଦ୍ଧା ଅନ୍ତରାତ୍ମା ଅକ୍ଷୁଣ୍ଣ ରହିଛି ।

**ସାମାଜିକ ଚରିତ୍ର**—ଧର୍ମବିଶ୍ୱାସ ସଦୃଶ ମାନବ ଚରିତ୍ର ଜାତୀୟ ସଂସ୍କୃତିର ଅନ୍ୟତମ ପରିପ୍ରକାଶ । ଏହା ସମାଜର ମେରୁଦଣ୍ଡ । ଚରିତ୍ରହୀନ ସମାଜ ସମାଜ ନୁହେଁ । ଯେଉଁ ସମାଜର କ୍ରିୟାକଳାପ ଯେତିକି ଚରିତ୍ରଗଠନୋପଯୋଗୀ ଏବଂ ମାନବିକତାର ମାର୍ଗଦର୍ଶୀ, ସେ ସେତିକି ଉନ୍ନତ ବୋଲି ଧରାଯାଏ । ତେଣୁ ସଂସ୍କୃତିର ମୂଲ୍ୟାୟନବେଳେ ସାମାଜିକ ଚଳଣି ଓ ଶିଷ୍ଟ ବ୍ୟବହାର ପ୍ରଥମେ ସମୀକ୍ଷା କରିବାକୁ ହୁଏ । ସ୍ତ୍ରୀ ପୁରୁଷ

ଉଭୟଙ୍କୁ ନେଇ ସମାଜ । ଉଭୟ ଚରିତ୍ର ଉପରେ ସମାଜର ଶୃଙ୍ଖଳା ନିର୍ଭର କରେ । ତେଣୁ ଉଭୟଙ୍କ ଚରିତ୍ର ଶୃଙ୍ଖଳିତ ହେବା ଆବଶ୍ୟକ । ସେ ଦୃଷ୍ଟିରୁ ବିଚାରକଲେ କଳିଙ୍ଗର ଲୋକଚରିତ୍ର ଆଦର୍ଶସ୍ଥାନୀୟ ଜଣାପଡ଼େ । ଶିଶୁ ଜନ୍ମଠାରୁ ମୃତାହ ପର୍ଯ୍ୟନ୍ତ ସମଗ୍ର ଆଚରଣ ବିଧିରେ ତାହା ପରିଲକ୍ଷିତ । ପରିବାର ମଧ୍ୟରେ ନବାଗତ ଶିଶୁ ଭୂମିଷ୍ଠ ହେବାର ପାଞ୍ଚବରଷଯାଏ ପିତାମାତା ପାଖରେ ରହି ଲାଳିତପାଳିତ ହୁଏ । ପାଞ୍ଚ ବର୍ଷ ପୂରିଲେ ଗାଁ ପିଲାଙ୍କ ସହିତ ମେଲ୍ଲଘରେ ଗୁଡ଼ିଦିଆଯାଏ । ସାଙ୍ଗସାଥୀଙ୍କ ମେଳରେ ରହି ସେଠାରେ ସେ ନାନାବିଧ ଖେଳକୌତୁକ ଶିକ୍ଷାକରେ । ସମୟେ ସମୟେ ସେମାନେ କୌଳିକ କର୍ମରେ ସହାୟକ ନହେଉ ନଥିଲେ ନୁହେଁ ଦଶବର୍ଷ ବେଳକୁ ଶାରୀରିକ ବ୍ୟାୟାମ ସହିତ ପ୍ରବୀଣଙ୍କଠାରୁ ଯୁଦ୍ଧକୌଶଳ ଶିଖିବା ଆରମ୍ଭକରନ୍ତି । ମେଲ୍ଲଘର ଥିଲା ଆବାଳବୃଦ୍ଧ ସମସ୍ତଙ୍କ ବାସସ୍ଥଳୀ । ବରିଷ୍ଠଲୋକେ ଏକତ୍ରିତହୋଇ ସେଠାରେ କନିଷ୍ଠଙ୍କୁ କୁଳବୃତ୍ତି ଅନୁରୂପ ତାଲିମ ଦିଅନ୍ତି । ପ୍ରୟୋଜନୀୟ ବିଦ୍ୟାଭ୍ୟାସକରାଇ ଭବିଷ୍ୟତପାଇଁ ପ୍ରସ୍ତୁତକରି ରଖନ୍ତି । ଏଥିରେ ଧନୀ-ନିର୍ଦ୍ଧନ, ଉଚ୍ଚ-ନୀଚ, ପର-ଆପଣା ଭେଦ ନଥାଏ । ସମସ୍ତେ ଥିଲେ ଏକ ନାବର ଯାତ୍ରୀ, ବିପଦଆପଦବେଳେ ପରସ୍ପରର ସହାୟକ । ଏ ରୀତି ସର୍ବଦା ରହିଆସିଥିଲା । ସେହି ନିୟମରେ କଳିଙ୍ଗର ଯୁବରାଜ ଖାରବେଳ ପାରମ୍ପରିକ ରୀତିରେ 'କୁମାର କ୍ରୀଡ଼ିକା' ସମାପ୍ତ କରିଥିଲେ ବୋଲି ଶିଳାଲେଖରେ ଉଲ୍ଲେଖ ଅଛି । କିନ୍ତୁ ଝିଅଙ୍କ ପାଇଁ ଶିକ୍ଷାଥିଲା ଇତର ଧରଣର । କାରଣ ପୁଅ ବାପର ଅନୁଗତ ଥିଲାବେଳେ ଝିଅ ମାର ଆଦର୍ଶରେ ବଢ଼େ । ପୁଅ ବା ଝିଅ ଜନ୍ମରେ କଳିଙ୍ଗବାସୀ ସମାନ ଆନନ୍ଦ ଅନୁଭବ କରୁଥିଲେ । ଝିଅ ଜନ୍ମିଲେ ଘରକୁ ଲକ୍ଷ୍ମୀ ଆସେ ବୋଲି ଅଦ୍ୟାପି ପ୍ରବାଦ ପ୍ରଚଳିତ । ବିଶେଷତଃ ପଢ଼ୁଆଁ ଝିଅ ହେଲେ ବାପା-ମା'ଙ୍କ ଆନନ୍ଦ କହିଲେ ନସରେ । ଝିଅ ପଛକୁ ପୁଅ ହେଲେ ଆଦର ଆହୁରି ବଢ଼ିଯାଏ, କାରଣ ଭାଇକୁ ସେ ପିଠିରେ ବୋହି ଆଣିଛି । ଏଣୁ ପୁଅ ଅପେକ୍ଷା ଝିଅ ଅଧିକ ଗେଲବସରରେ ବଢ଼ିଥାଏ । ପାଞ୍ଚ ବରଷ ଅଲିଅଳ ଭାବେ କଟାଇଲା ପରେ ଆସ୍ତେ ଆସ୍ତେ ମା'ଠାରୁ ସେ ଘରକରଣା ଶିଖେ । ଗୃହଯୋଗ୍ୟା ହେଲା ଯାଏ ମା' ପାଖେ ପାଖେ ରହିଥାଏ । ଫଳରେ ପୁଷ୍ପବତୀ ହେଲାବେଳକୁ ସେ ଝୋଟି କାଟିବା, ଚିତ୍ର ଲେଖିବା, ଘର ଲିପିବା, ରନ୍ଧାଶାଳ ସଜାଡ଼ିବା, ଲୁଗା ଧୋଇବା, ବାସନ ମାଜିବା ପ୍ରଭୃତି ଗୃହକର୍ମରେ ନିପୁଣତା ହାସଲ କରିଥାଏ । ଅଜାତରଜା କନ୍ୟା ଗୃହଯୋଗ୍ୟା ହେଲାଯାଏଁ ପୁଅମେଳରେ ରହିବା ନିଷିଦ୍ଧ ନଥିଲା ।

କନ୍ୟାର ପ୍ରଥମ ରଜୋଦର୍ଶନରେ ପିତାମାତାଙ୍କଦ୍ୱାରା ଆନନ୍ଦୋତ୍ସବ କରାଯାଏ । କିନ୍ତୁ କନ୍ୟାପକ୍ଷେ ତାହା ଥିଲା ଯେତିକି କଠୋର ସେତିକି ଶୃଙ୍ଖଳାବଦ୍ଧ । ରଜୋଦର୍ଶନ ମାତ୍ରେ କନ୍ୟାପାଇଁ ଏକ ସ୍ୱତନ୍ତ୍ର କୋଠରି ବନ୍ଦୋବସ୍ତ ହୁଏ । ସେଠାରେ ତାକୁ ଦିନରାତି ସାତଦିନ କଟାଇବାକୁ ପଡ଼େ । ପ୍ରଥମ ତିନିଦିନ କଦଳୀ, କମଳା, ନଡ଼ିଆ, ଗଜାମୁଗ ଭଳିଅଲଣା ସାତ୍ତ୍ୱିକ ପଦାର୍ଥ ଦିବସରେ ଏବଂ ରାତିହେଲେ ଖିଉଳ ତିଆରି ପିଠା ଖାଇବାକୁ ଦିଆଯାଏ ।

ଚତୁର୍ଥଦିନ କୌଣସି ସନ୍ତାନବତୀ ସଧବା ରମଣୀ ସାଙ୍ଗରେ ଯାଇ ନଦୀ ବା ପୋଖରୀରେ ଶୁଦ୍ଧ ସ୍ନାନ କରିଆସେ । ସେଠାରୁ ବାହୁଡ଼ି ଘରେ ପଶିଲାବେଳେ ରଜସ୍ୱଳାର ମଥାଉପରେ ବାଉଁଶ 'ଗୁଲୁଣି' ଓ 'ପଘା'ଟିଏ ଥୁଆ ହୁଏ ଏବଂ ପାଣି ଢଳାଯାଏ । ଗୁଲୁଣି ଗଳା ପାଣି ମଥାସ୍ନାନ କଲା ପରେ କୋଠଘରକୁ ଆସେ । ସେଇଦିନ ଅଲଣା ବ୍ୟଞ୍ଜନ ସହିତ ଭାତ ଖାଇବାକୁ ଦିଆଯାଏ । ସପ୍ତମ ଦିନ ହଳଦୀ ସ୍ନାନ ପରେ କନ୍ୟାକୁ ପାଟପଡନି ସହିତ ଅଲଙ୍କାର ପିନ୍ଧାନ୍ତି ଏବଂ ସମବୟସ୍କା ସାତଜଣ ଝିଅ ସାତଘରୁ ମାଟି କୁମ୍ଭରେ ପାଣି ଆଣି ତାକୁ ବନ୍ଦାପନା କଲାପରେ ମଥାରେ ସିଞ୍ଚନ୍ତି । ଶକ୍ତି ଅନୁସାରେ ବନ୍ଧୁ ବାନ୍ଧବଙ୍କୁ ଭୋଜିଭାତରେ ଆପ୍ୟାୟିତ କରାଯାଏ । ସାତଟି ରଜମାସ ପର୍ଯ୍ୟନ୍ତ କନ୍ୟା ପାକଶାଳାରେ ପ୍ରବେଶ କରିବା ନିଷିଦ୍ଧ । ସେହିଦିନୁ ଜାତରଜାକନ୍ୟା ପିତାମାତାଙ୍କ ଅନୁମତି ବିନା ପୁଅମେଳରେ ରହିବା ଅପରାଧ । ଏହାଦ୍ୱାରା କନ୍ୟା ମନରେ ଯୌବନ ପ୍ରତି ସଚେତନତା ଜାଗ୍ରତ ହେଉଥିଲା ଏବଂ ସେ ସର୍ବଦା ସଂଯତ ରହୁଥିଲା । କଳିଙ୍ଗବାସୀଙ୍କ ଦୃଷ୍ଟିରେ ନାରୀର ଚରିତ୍ର ସର୍ବାପେକ୍ଷା ମହତ୍ତ୍ୱପୂର୍ଣ୍ଣ । ତେଣୁ ଚରିତ୍ର ରକ୍ଷା ନିମିତ୍ତ ସଂଯମକୁ ପ୍ରଥମସ୍ଥାନ ଦିଆଯାଇଥିଲା । ସଂଯମ ରକ୍ଷାରେ ଯୁବକ-ଯୁବତୀଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିବା ଯୋଗୁ ସୁକୁମାର ବୟସରୁ ସେମାନଙ୍କୁ ଶୃଙ୍ଖଳିତ କରାଯାଉଥିଲା ଏବଂ ଉପଯୁକ୍ତ ବୟସରେ ତାଙ୍କର ବିବାହ ସମ୍ପନ୍ନ ହେଉଥିଲା ।

ପ୍ରାଚୀନ କଳିଙ୍ଗରେ ଚତୁର୍ବିଧ ବିବାହ ପ୍ରଥା ପ୍ରଚଳିତ ଥିଲା—କୌଳିକ, ଐଚ୍ଛିକ, ଐକାନ୍ତିକ ଏବଂ ଆସୁରିକ । ପ୍ରଥମଟି ବରକନ୍ୟା ଉଭୟ ପକ୍ଷର ସ୍ୱୀକୃତିରେ ସଂଘଟିତ ହେଉଥିଲା । ବରପିତା ଓ କନ୍ୟାପିତାଙ୍କ ମଧ୍ୟରେ ଶୁଳ୍କ ନିର୍ଣ୍ଣୟପରେ ବିବାହ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯାଇ କନ୍ୟାକୁ ବରଘରକୁ ପଠାହେଉଥିଲା । ଏହା କୁଳପ୍ରଥାନୁଯାୟୀ ସମ୍ପାଦିତ ହୁଏ । ଦ୍ୱିତୀୟ ଶ୍ରେଣୀର ବିବାହ 'ଐଚ୍ଛିକ' । ବରକନ୍ୟା ଉଭୟେ ଉଭୟଙ୍କୁ ମନୋନୀତ କଲାପରେ ବିବାହ-ବନ୍ଧନରେ ଆବଦ୍ଧ ହୁଅନ୍ତି । ଏଥିରେ ଅଭିଭାବକଙ୍କ ସମ୍ମତି ଗୌଣ । ତା'ଛଡ଼ା ବର ବା କନ୍ୟା ଗୁରୁଜନଙ୍କ ଅଜ୍ଞାତରେ ଅପରିଚିତ ସ୍ଥଳକୁ ପଳାଇ ଆସି ବିବାହ କରିବାର ନାମ 'ଐକାନ୍ତିକ' । ଏ ପ୍ରଥା ତତ୍କାଳ ସମାଜରେ ସ୍ୱୀକୃତି ଲାଭ କରିଥିଲା । ଆସୁରିକ ବିବାହ ନୀତିବିରୁଦ୍ଧ ହେଲେ ସୁଦ୍ଧା ସ୍ଥଳବିଶେଷରେ ସମାଜର ସ୍ୱୀକୃତି ପାଇବାରେ ପ୍ରତିବନ୍ଧକ ନଥିଲା । କନ୍ୟାର ଇଚ୍ଛା ବିରୁଦ୍ଧରେ ପ୍ରଣୟାସକ୍ତ ବର ସୁଯୋଗ ଉଣ୍ଡି ବଳପୂର୍ବକ ହରଣ କରିନେଇ ତା'ର ମନ ପରିବର୍ତ୍ତିତ ହେଲାପରେ ବିବାହକରେ । ଏ ଯୁଗରେ ମଧ୍ୟ ଆଦିବାସୀ ସମାଜରେ ଉକ୍ତ ବିବାହ ପ୍ରଥା ବିଦ୍ୟମାନ । କିନ୍ତୁ ଉପକୂଳ-ବାସୀ ଓଡ଼ିଆ ସମ୍ପ୍ରଦାୟରେ ପ୍ରଥମ ଦୁଇଟିଛଡ଼ା ଅପର ପ୍ରଥା ଅନୁସୃତ ହେବା ଦେଖାଯାଏ ନାହିଁ । ଅସାମାଜିକ ରୂପେ ତାହା ବହୁ କାଳରୁ ପରିତ୍ୟକ୍ତ ।

ତତ୍କାଳ ସମାଜ ଥିଲା ପୁରୁଷ-ପ୍ରଧାନ । ମୂଳବିଶ୍ୱବେ ପରିବାରର ପରିଚାଳନା ଦାୟିତ୍ୱ ଥିଲା ପୁରୁଷଙ୍କ ଉପରେ । ଯେତେ ବୃଦ୍ଧ ହୁଅନ୍ତୁ ପଛେ ପିତା ବା ପିତାମହଙ୍କ ନିର୍ଦ୍ଦେଶ

ବିନାଦ୍ୱିଧାରେ ପାଳିତ ହେଉଥିଲା । ପରିବାରମାନ ଏକାନ୍ନବର୍ତ୍ତୀ ଥିଲା । ମୃତ୍ୟୁ ପରେ ପିତାଙ୍କ ଦାୟିତ୍ୱ ଜ୍ୟେଷ୍ଠପୁତ୍ର ବହନ କରୁଥିଲେ । ତଥାପି ସ୍ଥଳେ ସ୍ଥଳେ ଭ୍ରାତୃବିବାଦ ନଥିଲା ନୁହେଁ । ନବୀନଙ୍କ ଭକ୍ତି ବିନମ୍ରସ୍ୱରେ ପ୍ରବୀଣମାନେ ଅପାର ଶ୍ରଦ୍ଧା ପ୍ରଦର୍ଶନ କରୁଥିଲେ । ଜନସାଧାରଣ ଥିଲେ ନିର୍ଭୀକ ଏବଂ ସତ୍ୟବାଦୀ । ମନକଥା ପ୍ରକାଶ କରିବାକୁ କୁଣ୍ଠାବୋଧ କରୁନଥିଲେ । ମିଥ୍ୟା-କପଟ-ଘୃଣ୍ୟ ବିବେଚିତ ହେଉଥିଲା । ପ୍ରାଣ ବିନିମୟରେ ସୁଦ୍ଧା ଅନ୍ୟର ପ୍ରତିଶୋଧ କରିବାକୁ ଦ୍ୱିଧା କରୁନଥିଲେ । ଆଚରଣ କଠୋର ମନେହେଲେ ସୁଦ୍ଧା ହୃଦୟ ଥିଲା ନିଷ୍କଳଙ୍କ ଓ କପଟଶୂନ୍ୟ । ଏବେ ମଧ୍ୟ ପାଟକ ସମାଜରେ ଏହାର କ୍ଷୀଣ ଆଭାସ ଦେଖିବାକୁ ମିଳେ ।

କଳିଙ୍ଗର ସାମାଜିକ ଜୀବନ ଥିଲା ଅତିମାତ୍ରାରେ ଭଦ୍ର । କଳିଙ୍ଗବାସୀ ଯେତିକି ବନ୍ଧୁବତ୍ସଳ ସେତିକି ଅତିଥିପରାୟଣ । ସେ ଜାତିର ଅତିଥିସତ୍କାର ଅନନ୍ୟସାଧାରଣ । ଦ୍ୱିପହରେ ଏପରିକି ଅଧରାତିରେ ମଧ୍ୟ କେହି ବନ୍ଧୁ ଆସି ପହଞ୍ଚିଲେ, ଗୃହବଧୂ ଅଣ୍ଟାରେ ଲୁଗାଭିଡ଼ି ସାଙ୍ଗେସାଙ୍ଗେ କର୍ତ୍ତବ୍ୟରେ ଲାଗିପଡ଼େ ଏବଂ ନାନାବିଧ ଅନ୍ନବ୍ୟଞ୍ଜନ ପ୍ରସ୍ତୁତ କରେ । ଅଭ୍ୟାଗତଙ୍କୁ ସନ୍ତୁଷ୍ଟ କରିବାରେ କଳିଙ୍ଗବାସୀ ଅଦ୍ୱିତୀୟ କହିଲେ ଚଳେ । ଅପରପକ୍ଷେ ବନ୍ଧୁଘରକୁ କେହି ଉପଢୌକନ ବିନା ଶୂନ୍ୟହସ୍ତରେ ଯିବା ଶିଷ୍ଟାଚାର ବିରୁଦ୍ଧ ଥିଲା । ତେଣୁ ବାଡ଼ିବଗିଚା ବା କ୍ଷେତ ବିଲରେ ଉତ୍ପନ୍ନ ଦ୍ରବ୍ୟ ଉପହାର ସ୍ୱରୂପ ସଙ୍ଗରେ ନ ନେଇ କେହି ବନ୍ଧୁଘରକୁ ଯାଉନଥିଲା । ତାହା ଥିଲା ପାରସ୍ପରିକ ମୈତ୍ରୀର ଅଲକ୍ଷିତ ସଙ୍କେତ ।

ନାରୀମାନେ ଯେମିତି ଲଜ୍ଜାଶୀଳା ସେମିତି ଗୃହକର୍ମନିପୁଣା ଥିଲେ । କୌଳିକ ବୃତ୍ତିରେ ସେମାନେ ଥିଲେ ସହକର୍ମିଣୀ ଏବଂ ଅବସର ବେଳେ ସହଧର୍ମିଣୀ, ଅଙ୍ଗସଙ୍ଗିନୀ । ଆବଶ୍ୟକ ହେଲେ ପରଶୁ କୁଠାର ହସ୍ତରେ ଶତ୍ରୁକୁ ଆକ୍ରମଣ କରିବାକୁ ଦ୍ୱିଧା କରୁ ନଥିଲେ । ଅନିଷ୍ଟକାରୀକୁ ମାରିବା କିମ୍ବା ମରିବା ଥିଲା ସେମାନଙ୍କର ମୂଳମନ୍ତ୍ର । କିନ୍ତୁ ସେମାନଙ୍କ ଅବସରବିନୋଦନ ଅତୀବ କୌତୁକପ୍ରଦ । ନବବଧୂ ଅବସର ସମୟରେ ସମବୟସୀଙ୍କ ସଙ୍ଗେ ନାନାବିଧ ଖେଳରେ ମାତି ଅଥବା ଅଙ୍ଗସଜ୍ଜାରେ ସମୟ ଅତିବାହିତ କରୁଥିଲା । (ଖେଳ ସମ୍ବନ୍ଧୀ ସୂଚନା ଆଗରୁ ପ୍ରଦତ୍ତ) ଗଳାରେ ମୋତି ମାଣିକର ହାର, ତେଲ ଚିକ୍‌କଣ କେଶ, ବିନବିନକାର ଖୋସା, ସେଥିରେ ରଙ୍ଗବେରଙ୍ଗ ଫୁଲର ଟାହିଆ ବେଶ୍ ଚମତ୍କାର ମାନେ ତାଙ୍କୁ । କଳିଙ୍ଗରମଣୀ ଅତିମାତ୍ରାରେ ଫୁଲରସିକା । ଫୁଲ ବିନା ତା ଶିଙ୍ଗାର ଅପୂର୍ଣ୍ଣ । ଫୁଲରେ ମଣ୍ଡିହୋଇ ମନକୁ ଆକର୍ଷଣ କରିବାରେ କଳିଙ୍ଗ କନ୍ୟାର ପଟାନ୍ତର ନାହିଁ ।

କଳିଙ୍ଗର ଗ୍ରାମ୍ୟଜୀବନ ଅତ୍ୟନ୍ତ ସୁସଂହତ ଥିଲା । ବିପଦରେ କିମ୍ବା ଅଘଟଣରେ ଗ୍ରାମବାସୀ ସ୍ୱତଃପ୍ରବୃତ୍ତ ଭାବେ ପରସ୍ପରକୁ ସାହାଯ୍ୟ କରୁଥିଲେ । କାହାରି ମୃତ୍ୟୁଘଟିଲେ କାଳ ବିଳମ୍ବ ନକରି ଶବକୁ ଉଠାଇ ନିଆଯାଉଥିଲା । ଘରେ ଶବ ପଡ଼ିଥିଲେ ଗ୍ରାମବାସୀ

ଅନ୍ନ ସ୍ପର୍ଶ କରୁନଥିଲେ । ଶ୍ମଶାନରେ ଦାହକର୍ମ କରିଥିବା ଶବବାହକମାନେ ମୃତ ବ୍ୟକ୍ତିଙ୍କ ଘରେ ପ୍ରେତାନ୍ନ ଦ୍ୱାରା ପ୍ରେତକୁ ତୃପ୍ତ କରୁଥିଲେ । ବିପଦ ସମୟରେ କୁଳବୃତ୍ତି ନିର୍ବିଶେଷରେ ସମସ୍ତେ ବନ୍ଧୁ ବିବେଚିତ ହେଉଥିଲେ । ଦଶମଦିନ ଜଳଘାଟରେ ଶୁଦ୍ଧସ୍ନାନ କରି ନବବସ୍ତ୍ର ପରିଧାନ କଲା ପରେ ମୃତବ୍ୟକ୍ତି ଘରେ ଗ୍ରାମଲୋକେ ଏକତ୍ରିତ ହୁଅନ୍ତି ଓ ପ୍ରେତର ମୁକ୍ତି କାମନା କରନ୍ତି । କେବଳ ମୃତ୍ୟୁ ନୁହେଁ, ଶିଶୁଜନ୍ମ ବେଳେ ବି ଗ୍ରାମବାସୀଙ୍କ ସହୃତ ଆଦର୍ଶ-ସ୍ଥାନୀୟ ଥିଲା । ଅନୁଭୂତିସମ୍ପନ୍ନ ମହିଳାମାନେ ଜନ୍ମଦାତ୍ରୀର ଆବଶ୍ୟକ ଶୁଶ୍ରୂଷା କରିଆସୁଥିଲେ । ଶିଶୁ ଭୂମିଷ୍ଠ ହେଲାଯାଏ ଗର୍ଭିଣୀର ପାଖେପାଖେ ସେମାନେ ଜଗିରହୁଥିଲେ । ଶିଶୁ ଜନ୍ମର ପଞ୍ଚମ ଦିନରେ ଉତ୍ସବ ଉପଲକ୍ଷେ ବରି, ଗହମ, ମୁଗ, ଚଣା ଓ କାନ୍ଦୁଲ ମିଶାଇ 'ପଞ୍ଚୁଆତି' ଭଜା ପିଲାଙ୍କ ମଧ୍ୟରେ ବଣ୍ଟାଯାଉଥିଲା । ଏଗାର ଦିନରେ ଜନ୍ମଦାତ୍ରୀ ଶୁଦ୍ଧ ହୁଏ । କିନ୍ତୁ ଏକୋଇଶ ଦିନଯାଏଁ ତାହାର ପାକ ସ୍ପର୍ଶ ନିଷିଦ୍ଧଥିଲା । ଉକ୍ତ ପରମ୍ପରା ଅଦ୍ୟାପି ଗାଁଗହଳରେ ପ୍ରଚଳିତ ଥିବା ଦେଖାଯାଏ ।

ଗାଁ ଥିଲା ଏକ ସୁସଂହତ ପରିବାର । କାହାରି ଶଳା ବା ଜୁଆଇଁ ଆସିଲେ ସେ ହୁଏ ସମସ୍ତଙ୍କ ଶଳା ବା ଜୁଆଇଁ । ଗାଁର ଝିଅବୋହୂ ଥିଲେ ସମସ୍ତଙ୍କ ଝିଅବୋହୂ । ସମସ୍ତଙ୍କୁ ଆପଣା ଲୋକ ବୋଲି ମନେକରାଯାଉଥିଲା । ବାପା, ମା', କକା, ଖୁଡ଼ୀ, ମାଉସୀ, ପିଉସୀ ସଭିଙ୍କି 'ତୁ'ଭାବେ ସମ୍ବୋଧନ କରାଯାଉଥିଲା ; ଏପରିକି ଦେବତାଙ୍କୁ ମଧ୍ୟ । କାରଣ ଦେବତା ବି ଆପଣାର ଲୋକ । ସେଥିଯୋଗୁଁ ବୋଧହୁଏ "ଜଗନ୍ନାଥ ହେ କିଛି ମାଗୁନାହିଁ ତୋତେ" ଭଳି ପରଂପରା ରହିଆସିଛି । ବୟୋବୃଦ୍ଧ ବ୍ୟକ୍ତିଙ୍କୁ ଯଥୋଚିତ ସମ୍ମାନ ଓ ଭକ୍ତି ପ୍ରଦର୍ଶିତ ହେଉଥିଲା । କଳହ କିମ୍ବା ମନାନ୍ତରବେଳେ ତାଙ୍କ ନିଷ୍ପତ୍ତିକୁ ଉଭୟପକ୍ଷ ବିନା-ଦ୍ୱିଧାରେ ମାନିନେଉଥିଲେ । ସେ ଥିଲେ ଗାଁରେ ସର୍ବେସର୍ବା ବା 'ମୁଖିଆ' । ମୁଖିଆ-ମାନଙ୍କ ଦ୍ୱାରା ଉପଯୁକ୍ତ ବ୍ୟକ୍ତିଙ୍କୁ ଜନନାୟକ ରୂପେ ବଚ୍ଛାଯାଉଥିଲା । ସେ ଥିଲେ ରାଜ୍ୟର ରାଜା । ତାଙ୍କ ଉପରେ ରାଜ୍ୟର ଦାୟିତ୍ୱ ନ୍ୟସ୍ତ ଥିଲା । ରାଜା ଅଯୋଗ୍ୟ ବା ଦାୟିତ୍ୱହୀନ ହେଲେ ଅନ୍ୟ ଜଣେ ନିର୍ବାଚିତ ହେଉଥିଲେ । ଯୋଗ୍ୟ ବିବେଚିତ ରାଜପୁତ୍ରମାନେ ପୁରୁଷାନୁକ୍ରମେ ରାଜା ହେବାରେ ପ୍ରତିବନ୍ଧକ ନଥିଲା । କିନ୍ତୁ ବ୍ୟତିକ୍ରମ ଘଟିଲେ ତାଙ୍କୁ ଗାଦିଚ୍ୟୁତ କରାଯାଉଥିଲା । ତାଦୃଶ ବ୍ୟତିକ୍ରମ ଯୋଗୁ ହିଁ କଳିଙ୍ଗରେ ବିଭିନ୍ନ ରାଜବଂଶର ଉତ୍ଥାନ-ପତନ ଘଟିଥିବା ଜଣାପଡ଼େ । ରାଜା ଚତୁରଙ୍ଗ ବାହିନୀର ମୁଖ୍ୟ ଥିଲେ ଏବଂ 'ସ୍ଥାନିକ' ବା ବିଷୟୀମାନଙ୍କୁ ନିଯୁକ୍ତି ଦେଉଥିଲେ । ସେ ଥିଲେ ନିର୍ଦ୍ଦିଷ୍ଟ 'ସ୍ଥାନ' ବା 'ମଣ୍ଡଳ'ର ଅଧିକାରୀ । ତାଙ୍କ ତଳକୁ 'ଗୋପ' ବା 'କାର୍ଯ୍ୟୀ' । ମୁଖିଆ ତାଙ୍କ ସହଯୋଗରେ ରାଜ୍ୟରକ୍ଷା ପାଣ୍ଠି ବା ରାଜସ୍ୱ ଆଦାୟ କରୁଥିଲେ । ରାଜାଜ୍ଞା ଥିଲା ସର୍ବଶେଷ ନିଷ୍ପତ୍ତି ଏବଂ ତାହା ବିନାବିଚାରରେ କାର୍ଯ୍ୟକାରୀ ହେଉଥିଲା ।

କଳିଙ୍ଗ ରାଜାଙ୍କ ପ୍ରଶସ୍ତି ବହୁ ପୁରାଣରେ ବର୍ଣ୍ଣିତ । କୁରୁ-ପାଣ୍ଡବ ଯୁଦ୍ଧରେ କଳିଙ୍ଗ ରାଜା 'ଶ୍ରୁତାୟୁ' ପରିଚାଳିତ ପଦାତିବାହିନୀ କୁରୁସେନାପତି ଦ୍ରୋଣଙ୍କ ଦକ୍ଷିଣପାର୍ଶ୍ୱ

ରକ୍ଷାକରୁଥିଲେ ଏବଂ ଗରୁଡ଼ ବ୍ୟୂହର ଗ୍ରୀବାଦେଶ ରକ୍ଷା କରିବାକୁ ଦଶସହସ୍ର ଗଜସେନା ସହିତ ଭୀମଙ୍କ ସମ୍ମୁଖୀନ ହୋଇଥିଲେ ବୋଲି ମହାଭାରତରେ ଉଲ୍ଲେଖ ଅଛି । ସେଥିରେ କଳିଙ୍ଗସେନାଙ୍କୁ ପତିତ ଓ ମ୍ଲେଚ୍ଛ ଦେଶାଗତବୋଲି ବର୍ଣ୍ଣନା କରାଯାଇଛି । ବୋଧହୁଏ କଳିଙ୍ଗ ଜାତିବର୍ଣ୍ଣଭେଦଶୂନ୍ୟ ଶବର ରାଜ୍ୟ ଥିବାହେତୁ ଏବଂ ସେଠାରେ ବର୍ଣ୍ଣପତିଙ୍କ ଆଧିପତ୍ୟ ନଥିବା ଯୋଗୁ ତାଙ୍କୁ ସେହିପରି ଚରିତ କରାହୋଇଛି । ବାସ୍ତବିକ କଳିଙ୍ଗରେ ଉଚ୍ଚନୀଚ କୁଳବୃତ୍ତି ନିର୍ବିଶେଷରେ ସମସ୍ତେ ସମାନ ବିବେଚିତ ହେଉଥିଲେ । ମହାଭାରତଛଡ଼ା ପୁରାଣଯୁଗରେ ମଧ୍ୟ 'ସ୍ୱୟଭୂ' ନାମକ ଜଣେ ରାଜା କଳିଙ୍ଗକୁ ଶାସନ କରୁଥିବା ଓ ତାହା ଏକ 'ମ୍ଲେଚ୍ଛ' ରାଜ୍ୟ ଥିବାର ସୂଚନା ମିଳେ । ହରିଭଦ୍ରୀସ୍ ବୃତ୍ତି ଓ ଜୈନ ହରିବଂଶ ପୁରାଣରେ 'କରକଣ୍ଡୁ' ନାମକ ଜଣେ ଆର୍ଯ୍ୟେତର ରାଜା କଳିଙ୍ଗ ସିଂହାସନ ଅଲଂକୃତ କରିଥିଲେ ବୋଲି ବର୍ଣ୍ଣିତ ଅଛି । ଚୁଲ୍ଲକାଳିଙ୍ଗ ଓ କାଳିଙ୍ଗବୋଧି ବୌଦ୍ଧଜାତକ ଦ୍ୱୟରେ କଳିଙ୍ଗ ଓ ଅଶ୍ମକ ମଧ୍ୟରେ ଯୁଦ୍ଧ ଘଟିଥିବା ଏବଂ ଦୁଇଟିଯାକ ଅନାର୍ଯ୍ୟ ରାଜ୍ୟ ଥିବା ବର୍ଣ୍ଣିତ ହୋଇଛି । ମ୍ଲେଚ୍ଛ ଦେଶ ହୋଇ ସୁଦ୍ଧା କଳିଙ୍ଗ କେତେବଡ଼ ପ୍ରତିପତ୍ତିଶାଳୀ ରାଜ୍ୟ ଥିଲା ତାହାର ସୂଚନା ସେଥିରୁ ମିଳେ ।

ଖ୍ରୀଃପୂଃ ତୃତୀୟ ଶତାବ୍ଦୀର ପର୍ଯ୍ୟଟକ ମେଘାସ୍ଥିନିସ୍‌ଙ୍କ ଭ୍ରମଣ ବୃତ୍ତାନ୍ତରେ କଳିଙ୍ଗ ସମ୍ପର୍କରେ ଯେଉଁ ବିବରଣୀ ପ୍ରଦତ୍ତ,ସେଥିରୁ ଜଣାପଡ଼େ କଳିଙ୍ଗରେ ପଦାତିକ,ଅଶ୍ୱାରୋହୀ, ଗଜାରୋହୀ ତ୍ରିବିଧ ସେନାବାହିନୀ ରହିଥିଲେ । ପଦାତିକଙ୍କ ସଂଖ୍ୟା ଥିଲା ପ୍ରାୟ ଷାଠିଏ ହଜାର, ଅଶ୍ୱାରୋହୀ ଦଶହଜାର ଏବଂ ଗଜାରୋହୀଙ୍କ ସଂଖ୍ୟା ସର୍ବାଧିକ । ଏ ଥିଲା ରାଜ ପୋଷ୍ୟ ସେନାବାହିନୀ । ଏତଦ୍‌ବ୍ୟତୀତ ଇତରବୃତ୍ତିଧାରୀ ଅସଂଖ୍ୟ ନାଗରିକ ସାମରିକ ଶିକ୍ଷା ଲାଭ କରି ଦେଶରକ୍ଷା ପାଇଁ ପ୍ରସ୍ତୁତ ରହୁଥିଲେ । ସୈନ୍ୟବାହିନୀ ସ୍ତ୍ରୀ-ପୁରୁଷ ଉଭୟ ଦ୍ୱାରା ଗଠିତ ଥିଲା । ସେହି କାରଣରୁ ଅଶୋକଙ୍କ କଳିଙ୍ଗ ଆକ୍ରମଣବେଳେ ଦେଢ଼ଲକ୍ଷ ଲୋକ ବନ୍ଦୀ, ଲକ୍ଷେ ଆହତ ଏବଂ ତଦୂର୍ଦ୍ଧ୍ୱ ସଂଖ୍ୟାରେ ମୃତ୍ୟୁଘଟିଥିଲା ବୋଲି ଉଲ୍ଲେଖିତ । ମନେହୁଏ, ବୃତ୍ତିଜୀବୀ ଅପେକ୍ଷା ନାଗରିକ ବାହିନୀର ସଂଖ୍ୟା ବହୁଗୁଣ ଅଧିକ ଥିଲା । ତାରୁଣ-ବାହିନୀ ଗଢ଼ିବାର ମୂଳକାରଣ ଥିଲା ନନ୍ଦରାଜାଙ୍କ ଆକ୍ରମଣ ଓ ତଜ୍ଜନିତ ପରାଜୟ । ତାହାହିଁ କଳିଙ୍ଗବାସୀଙ୍କୁ ଦୁର୍ଦ୍ଦାନ୍ତବାହିନୀ ଗଢ଼ିବାରେ ପ୍ରୋତ୍ସାହନ ଦେଇଥିଲା । ସେହିଦିନୁ ରାଜ୍ୟର ଆବାଳ ବୃଦ୍ଧ ନରନାରୀ ବୀରସଜ୍ଜାରେ ସଜ୍ଜିତ ହୋଇ ସର୍ବଦା ସତର୍କ ରହୁଥିଲେ । ମେଘାସ୍ଥିନିସ୍‌ଙ୍କ ବିବରଣୀ ତାହାର ହିଁ ପରୋକ୍ଷ ସୂଚନା ଦିଏ । କିନ୍ତୁ କଳିଙ୍ଗ ବୋଇଲେ ସେତେବେଳେ କେବଳ 'ମଧ୍ୟକଳିଙ୍ଗ'କୁ ବୁଝାଉଥିଲା ।

---

# ଉପସଂହାର

## କଳିଙ୍ଗର ଅନ୍ତିମ ବୃତ୍ତିଚକ୍ର

କଳିଙ୍ଗର ଇତିବୃତ୍ତ ଆଲୋଚନାରେ ମଗଧର ଭୂମିକା ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ସୁତରାଂ ବିଭବଶାଳୀ ରାଜ୍ୟରୂପେ କଳିଙ୍ଗ ଉନ୍ନତିର ଚରମ ସୀମା ସ୍ପର୍ଶ କରିଥିଲାବେଳେ ମଗଧର ଅବସ୍ଥା କିପରି ଥିଲା ଦେଖିବାର କଥା । ଖ୍ରୀ:ପୂ: ଚତୁର୍ଥ ଶତକର ମଧ୍ୟଭାଗରେ ନନ୍ଦବଂଶୀ ରାଜାମାନେ ମଗଧର ଶାସକ ଥିଲେ ବୋଲି ଇତିହାସ କହେ । ନନ୍ଦବଂଶର ପ୍ରତିଷ୍ଠାତା ମହାପଦ୍ମନନ୍ଦ ଜଣେ ଶକ୍ତିଶାଳୀ ରାଜା ଏବଂ ସେ ଇକ୍ଷ୍ୱାକୁ, ପଞ୍ଚାଳ, କାଶୀ, ହୈହୟ, କୁରୁ, ଶୂରସେନାଦି ଦେଶର କ୍ଷତ୍ରିୟ ରାଜାମାନଙ୍କୁ ପରାସ୍ତ କରି ତାଙ୍କ ରାଜ୍ୟଗୁଡ଼ିକୁ ନିଜ ଶାସନାଧୀନ ରଖିଥିଲେ । କଳିଙ୍ଗର ଉତ୍ତର ଭୂଭାଗକୁ ମଧ୍ୟ ସେ ମଗଧ ରାଜ୍ୟର ଅନ୍ତର୍ଗତ କରିଦେଇଥିଲେ । ମହାପଦ୍ମଙ୍କ ପରେ କେତେ ଜଣ ରାଜା ସେଠାରେ ରାଜତ୍ୱ କରିଥିଲେ ତା'ର ହିସାବ ନାହିଁ, କିନ୍ତୁ ଧନନନ୍ଦ ସେ ବଂଶର ଶେଷ ରାଜା ଓ ସେ କୁଆଡ଼େ ଅତି-ମାତ୍ରାରେ ଧନଲୋଭୀ ଥିଲେ, ପ୍ରଜାଙ୍କଠାରୁ ଅଧିକ ରାଜସ୍ୱ ଆଦାୟ କରି ବିରକ୍ତିଭାଜନ ହୋଇଥିଲେ । ସେ ଅବସରରେ ମୌର୍ଯ୍ୟବଂଶୀ ଚନ୍ଦ୍ରଗୁପ୍ତ ତାଙ୍କୁ ରାଜ୍ୟରୁ ବିତାଡ଼ିତ କରି ସିଂହାସନ ଅଧିକାର କରନ୍ତି । ସେତେବେଳେ ନନ୍ଦଙ୍କ ପୂର୍ବ ଶତ୍ରୁ କଳିଙ୍ଗର ମ୍ଳେଚ୍ଛରାଜା 'ପର୍ବତକ' ପ୍ରତିଶୋଧ ନେବା ଉଦ୍ଦେଶ୍ୟରେ ଚନ୍ଦ୍ରଗୁପ୍ତଙ୍କ ଅନ୍ତରଙ୍ଗ ମିତ୍ର ହୋଇ ବିପୁଳ ସାହାଯ୍ୟ ପ୍ରଦାନ କରିଥିଲେ ବୋଲି ବିଶାଖଦତ୍ତକୃତ 'ମୁଦ୍ରାରାକ୍ଷସ' ନାଟକରୁ ଜଣା ପଡ଼େ । ସେଥିରେ ଲେଖାଅଛି—ନନ୍ଦରାଜାଙ୍କୁ ଗାଦିଚ୍ୟୁତ କରିବା ଆଗରୁ ଚନ୍ଦ୍ରଗୁପ୍ତ 'ପର୍ବତକ' ରାଜାଙ୍କ ସାହାଯ୍ୟ ପ୍ରାର୍ଥନା କରିଥିଲେ ଏବଂ ଯୁଦ୍ଧରେ ବିଜୟୀ ହେଲେ 'ଅର୍ଦ୍ଧରାଜ୍ୟ' ପ୍ରତ୍ୟର୍ପଣ କରାଯିବ ବୋଲି ପ୍ରତିଶ୍ରୁତି ଦେଇଥିଲେ । ତାହା ବୋଧହୁଏ କଳିଙ୍ଗର ଉତ୍ତରାର୍ଦ୍ଧ ରାଜ୍ୟ, ଯାହା ନନ୍ଦରାଜାଙ୍କ ଦ୍ୱାରା ଅପହୃତ ହୋଇଥିଲା । ପର୍ବତକଙ୍କ ସାହାଯ୍ୟରେ ନନ୍ଦରାଜାଙ୍କୁ ପରାଜିତ କରି ଚନ୍ଦ୍ରଗୁପ୍ତ ସିଂହାସନାସୀନ ହୁଅନ୍ତି । ସେହି ଉପଲକ୍ଷେ ପାଟଳିପୁତ୍ରରେ ବିଜୟ ଉତ୍ସବ ପାଳିତ ହୁଏ । ପର୍ବତକ ପ୍ରମୁଖ ସକଳ ମିତ୍ରରାଜା ସପରିବାର ସେଥିରେ ଯୋଗ ଦିଅନ୍ତି । କୂଟନୀତି ବିଶାରଦ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ଚାଣକ୍ୟ ଅର୍ଦ୍ଧରାଜ୍ୟ ନଦେବା ଲକ୍ଷ୍ୟରେ କୌଶଳପୂର୍ବକ ପର୍ବତକଙ୍କୁ ହତ୍ୟା କରିବା ଉପାୟ କରନ୍ତି । ଉପହାର ସ୍ୱରୂପ ଜଣେ ଅପରୂପ ସୁନ୍ଦରୀ 'ବିଷକନ୍ୟା' (ଯାହାର ସଂସର୍ଗରେ ନିଶ୍ଚିତ ପ୍ରାଣହାନି ଘଟେ) ତାହାଙ୍କୁ ପ୍ରେରଣ କରନ୍ତି । ଫଳରେ ପର୍ବତକଙ୍କର ମୃତ୍ୟୁ ଘଟେ । ଚାଣକ୍ୟଙ୍କ ଉଦ୍ଦେଶ୍ୟ ଚରିତାର୍ଥ ହୁଏ । କିନ୍ତୁ ତାଦୃଶ ଅନ୍ୟାୟ ଆଚରଣରେ

କ୍ଷୁବ୍ଧ ପାଟଳିପୁତ୍ରର ପ୍ରମୁଖ ନାଗରିକ ତଥା ଭୂତପୂର୍ବ ରାଜପୁରୁଷବର୍ଗ ମୃତରାଜାଙ୍କ ନାବାଳକ ପୁତ୍ର ମଳୟକେତୁଙ୍କ ପ୍ରତି ଅନୁକମ୍ପା ଦର୍ଶାଇ ବିଦ୍ରୋହ ଆରମ୍ଭ କରନ୍ତି । ତାହାର ପ୍ରଧାନ ଉଦ୍ୟୋକ୍ତା ଥିଲେ ନନ୍ଦରାଜ୍ୟର ମୁଖ୍ୟ ସେନାପତି ତଥା ସାନ୍ଧିବିଗ୍ରହିକ 'ରାକ୍ଷସ'ନାମା ଜଣେ ପ୍ରତିପତ୍ତିଶାଳୀ ନାଗରିକ, ଯାହାଙ୍କୁ ଚାଣକ୍ୟ ମନେ ମନେ ଚନ୍ଦ୍ରଗୁପ୍ତଙ୍କ ମୁଖ୍ୟ ମନ୍ତ୍ରୀ ଭାବେ ଅବସ୍ଥାପିତ କରିବାକୁ ସ୍ଥିର କରିଥିଲେ । ଯାହାହେଉ, ଶେଷରେ ବିଦ୍ରୋହ ପ୍ରଶମିତ ହୁଏ । ଚାଣକ୍ୟଙ୍କ ଉପାୟ ଜାଲରେ ଛନ୍ଦି ହୋଇ 'ରାକ୍ଷସ' ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରିତ୍ୱ ଗ୍ରହଣକରନ୍ତି ଏବଂ ବିଦ୍ରୋହୀ ମଳୟକେତୁ ପୈତୃକ ରାଜ୍ୟଟି କେବଳ ସ୍ୱାଧୀନଭାବେ ଉପଭୋଗ କରିବାକୁ ସନ୍ଧି ସ୍ଥାପିତ ହୁଏ । ଏହା ଥିଲା ଖ୍ରୀ:ପୂ: ଚତୁର୍ଥ ଶତାବ୍ଦୀ ଶେଷପାଦର ଘଟଣା ।

ସିଂହାସନ ଆରୋହଣ କଲାପରେ ଚନ୍ଦ୍ରଗୁପ୍ତ ନନ୍ଦ ଅମଳର ମଗଧ ରାଜ୍ୟକୁ ପାରସ୍ୟ ସୀମାରୁ ବଙ୍ଗ ଏବଂ ମହୀଶୂରଠାରୁ କାଶ୍ମୀର ପର୍ଯ୍ୟନ୍ତ ବିସ୍ତାରିତ କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ ଚାଣକ୍ୟଙ୍କ ପରାମର୍ଶରେ ଆଦର୍ଶ ଶାସନନୀତି ପ୍ରବର୍ତ୍ତନ କରିଥିଲେ । ଏକାଙ୍ଗ ଚକ୍ରବର୍ତ୍ତୀ ଭାବେ କଳିଙ୍ଗ ଛଡ଼ା ଭାରତବର୍ଷର ସମଗ୍ର ଅଞ୍ଚଳ ଶାସନାଧୀନ କରି ରଖିଥିଲେ । କିନ୍ତୁ କଳିଙ୍ଗ ଥିଲା ଏକ ସ୍ୱତନ୍ତ୍ର ସ୍ୱୟଂଶାସିତ ରାଜ୍ୟ । କଳିଙ୍ଗ ବୋଇଲେ ତାହା କେବଳ 'ମଧ୍ୟ କଳିଙ୍ଗ' ଥିଲା । ଉତ୍କଳିଙ୍ଗ ଓ ଦକ୍ଷିଣ କଳିଙ୍ଗ ବହୁପୂର୍ବରୁ ପରାଧୀନ ହୋଇପଡ଼ିଥିଲା । ଉପକାରୀ କଳିଙ୍ଗ ରାଜାଙ୍କ ସ୍ୱାଧୀନତା ଅପହରଣ କରିବାକୁ ଗୁଣଗ୍ରାହୀ ସମ୍ରାଟ୍ ଚନ୍ଦ୍ରଗୁପ୍ତ ଉଚିତ ମନେକରି ନଥିଲେ । ତା'ଛଡ଼ା ନନ୍ଦରାଜାଙ୍କ ସହ ଯୁଦ୍ଧକାଳରେ କଳିଙ୍ଗସେନାଙ୍କ ସାହସ ଓ ବୀରତ୍ୱ ଚନ୍ଦ୍ରଗୁପ୍ତଙ୍କୁ ଅବଗତ ନଥିଲା ନୁହେଁ । ତେଣୁ ତା' ବିରୁଦ୍ଧରେ ଅହେତୁକ ସୈନ୍ୟ ଚାଳନା କରି କୃତଘ୍ନତାର ପରିଚୟ ଦେଇ ଅହେତୁକ ସୈନ୍ୟକ୍ଷୟ ଘଟାଇବାକୁ ଇଚ୍ଛା କରିନଥିଲେ । ତେଣୁ ପୂର୍ବବତ୍ କଳିଙ୍ଗ ମଗଧର ଏକ ସମସ୍କନ୍ଧ ସାଧୀନ ମିତ୍ର ରାଜ୍ୟ ରୂପେ ରହିଥିଲା ।

ବିଭିନ୍ନ ରାଜ୍ୟ ଜୟ ପରେ ଚନ୍ଦ୍ରଗୁପ୍ତ ଆଦର୍ଶ ରାଜା ରୂପେ ଶାସନ ନୀତିରେ ଅଭୂତପୂର୍ବ ପରିବର୍ତ୍ତନ ଘଟାନ୍ତି । ପ୍ରଜାନୁରଞ୍ଜନ ଓ ରାଜ୍ୟରକ୍ଷା ନିମିତ୍ତ ନାନାବିଧ କଲ୍ୟାଣକର ନୀତି ପ୍ରଣୟନ କରିବା ସଙ୍ଗେ ସଙ୍ଗେ ଦେଶର ନିରାପତ୍ତା ପାଇଁ ଚତୁରଙ୍ଗ ବଳକୁ ସର୍ବଦା ସତର୍କ ରଖାଇଥାନ୍ତି । ରାଜ୍ୟର ରକ୍ଷାକର୍ତ୍ତା ରାଜା ନିରାପଦରେ ରହିବାପାଇଁ ସୁଦୃଢ଼ ପ୍ରାଚୀରଘେରା ନଗର ନିର୍ମିତ ହୁଏ । ଗୁପ୍ତହତ୍ୟା, ବିଷପ୍ରୟୋଗାଦି ଷଡ଼ଯନ୍ତ୍ରର ପ୍ରତିକାର ସ୍ୱରୂପ ବିଶ୍ୱସ୍ତ ତୀକ୍ଷ୍ଣଧୀ ସମ୍ପନ୍ନ ବ୍ୟକ୍ତିଙ୍କୁ ଅଙ୍ଗରକ୍ଷୀଭାବେ ନିଯୁକ୍ତ ଦିଆଯାଉଥିଲା, ସେମଧ୍ୟରେ ରୂପବତୀ ଯୁବତୀଙ୍କ ସଂଖ୍ୟା ଥିଲା ସର୍ବାଧିକ । ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସକାଶେ ମନ୍ତ୍ରୀସଭା, ପୌରସଭା, ସନ୍ନିଧାତା, ସମାହର୍ତ୍ତା, ସେନାପତି, ଦୁର୍ଗପାଳ, ଅନ୍ତର୍ବଂଶିକାଦିଙ୍କ ଉପରେ ଦାୟିତ୍ୱ ନ୍ୟସ୍ତଥିଲା । ନିର୍ଭୀକ ଏବଂ ବିଶ୍ୱସ୍ତ ଗୁପ୍ତଚର ବର୍ଗଦ୍ୱାରା ପ୍ରଜାଙ୍କ ମନୋଭାବନା ରାଜାଙ୍କ ଗୋଚରୀଭୂତ ହୋଇ ଯଥାଶୀଘ୍ର ପ୍ରତିକାର କରାଯାଉଥିଲା । ସଂକ୍ଷେପରେ କହିଲେ

ଚନ୍ଦ୍ରଗୁପ୍ତଙ୍କ ଶାସନକାଳ ଥିଲା ମଗଧ ଇତିହାସରେ ସୁବର୍ଣ୍ଣଯୁଗ । ତାଙ୍କଦ୍ୱାରା ପ୍ରବର୍ତ୍ତିତ ଶାସନପ୍ରଣାଳୀ ବହୁପୁରୁଷଯାଏଁ ମଗଧରେ ଅନୁସୃତ ହୋଇଆସିଥିଲା । ଚନ୍ଦ୍ରଗୁପ୍ତଙ୍କ ସ୍ୱର୍ଗାରୋହଣ ପରେ ପୁତ୍ର ବିନ୍ଦୁସାର ରାଜ୍ୟଭାର ଗ୍ରହଣ କରନ୍ତି । ତାଙ୍କ ସଂପର୍କରେ ଇତିହାସ ନୀରବ ରହିଲେ ସୁଦ୍ଧା ସେ ଜଣେ ବିଳାସୀ, ପରନିର୍ଭରଶୀଳ ଏବଂ ଦୁର୍ବଳ ରାଜା ଥିଲେ ବୋଲି ଜଣାପଡ଼େ । ଦୁର୍ବଳ ଶାସନର ସୁଯୋଗନେଇ ଦୁର୍ନୀତିଗ୍ରସ୍ତ ରାଜପୁରୁଷଗଣ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରିବାରୁ ତକ୍ଷଶିଳାର ପ୍ରଜାବର୍ଗ ବିଦ୍ରୋହୀ ହୋଇ ଉଠିଥିଲେ ଏବଂ ରାଜବିରୋଧୀ ଶକ୍ତି ମୁଣ୍ଡ ଟେକି ଉଠିଥିଲା । ରାଜଭକ୍ତ ସେନାପତିଙ୍କ କାଳୋଚିତ ହସ୍ତକ୍ଷେପଯୋଗୁ ବିଦ୍ରୋହାଗ୍ନି ନିର୍ବାପିତ ହେଲା ସତ କିନ୍ତୁ ପ୍ରଜାମନରୁ ବିଦ୍ୱେଷ ଦୂର ହୋଇନଥିଲା । ତାହାସତ୍ତ୍ୱେ ଭୋଗାସକ୍ତ ରାଜା ବିନ୍ଦୁସାରଙ୍କ ଜ୍ଞାନୋଦୟ ହୋଇନଥିଲା । ଅହର୍ନିଶ ଅନ୍ତଃପୁର ସୁନ୍ଦରୀମାନଙ୍କ ଗହଣରେ କାଳାତିପାତ କରୁଥିବାରୁ ରାଜରମଣୀମାନେ ସ୍ୱ ସ୍ୱ ପୁତ୍ରଙ୍କୁ ଉତ୍ତର ଦାୟାଦରୂପେ ମନୋନୀତ କରିବାଲାଗି ନାନା ଉପାୟରେ ତାଙ୍କୁ ପ୍ରଭାବିତ କରିବାକୁ ଲାଗିଥିଲେ । କିନ୍ତୁ ଚତୁର ରାଜା ଉପାୟ-କାଳରେ ଛନ୍ଦହେବା ଆଗରୁ ଇହଧାମରୁ ବିଦାୟ ନେଲେ । ପରେ ପରେ ସିଂହାସନ ଅଧିକାର ଲୋଭରେ ରାଜପୁତ୍ରମାନଙ୍କ ମଧ୍ୟରେ ରକ୍ତାକ୍ତ ସଂଘର୍ଷର ସୂତ୍ରପାତ ହୁଏ । କେତେ ସଂଖ୍ୟାରେ ସେମାନେ ସଂଘର୍ଷରେ ମାତିଥିଲେ ଇତିହାସରେ ଲେଖା ନାହିଁ, କିନ୍ତୁ ବୌଦ୍ଧଗ୍ରନ୍ଥରେ 'ବିନ୍ଦୁସାରଙ୍କ ପରେ ଅଶୋକ ଅନେଶତ ଭାଇଙ୍କୁ ହତ୍ୟାକରି ମଗଧ ସିଂହାସନ ଅଧିକାର କରିଥିଲେ' ବୋଲି ଲେଖାଅଛି । ବୌଦ୍ଧ ଲେଖକଗଣ ସ୍ୱୀୟ ଧର୍ମର ପରାକାଷ୍ଠା ଦର୍ଶାଇବା ଉଦ୍ଦେଶ୍ୟରେ ଘଟଣାକୁ ଅତିରଞ୍ଜିତ କରିଛନ୍ତି କିମ୍ବା ବ୍ରାହ୍ମଣ୍ୟଧର୍ମୀ ବିନ୍ଦୁସାରଙ୍କୁ ସ୍ୱୈରରୂପେ ଚିତ୍ରଣ କରିବାକୁ ସେପରି ଲେଖିଛନ୍ତି କହିହୁଏ ନାହିଁ । ଐତିହାସିକଙ୍କ ମତରେ କିନ୍ତୁ ଜଣେ ମାତ୍ର ବୈମାତ୍ରେୟ ଭାଇ 'ସୁସିମ'କୁ ହତ୍ୟାକରି ଅଶୋକ ସିଂହାସନ ଆରୋହଣ କରିଥିଲେ । ରାଜାଙ୍କ ମୃତ୍ୟୁର ଚାରିବର୍ଷଯାଏଁ ଯଦି ସିଂହାସନ ଅନଧିକୃତ ତେବେ ନିଶ୍ଚିତଭାବେ ରାଜ୍ୟରେ ଭୟାବହ ଭ୍ରାତୃବିଦ୍ରୋହ ଏବଂ ସଂଘର୍ଷ ଘଟିଥିବବୋଲି ଅନୁମାନ ହୁଏ—ଦୁଇଭାଇ ଭିତରେ ହେଉ କିମ୍ବା ଅନେଶତ ଭାଇଙ୍କ ଭିତରେ ହେଉ କାରଣ ଶହ ଶହ ଅନ୍ତଃପୁରବାସିନୀଙ୍କ ଗର୍ଭରୁ ବିନ୍ଦୁସାରଙ୍କର ଶତାଧିକ ପୁତ୍ର ଜାତହେବା ଅସମ୍ଭବ ନୁହେଁ । ରାଜ୍ୟଲୋଭୀ ରାଜପୁତ୍ରଙ୍କ ମଧ୍ୟରେ ପରସ୍ପର କଳହ ଓ ଭ୍ରାତୃହତ୍ୟା ସେ ଯୁଗରେ ଅସାଧାରଣ ଘଟଣା ନଥିଲା । ତେଣୁ ଚଣ୍ଡକର୍ମୀ ଅଶୋକ ସିଂହାସନପାଇଁ ଅନ୍ୟମାନଙ୍କୁ ନୃଶଂସଭାବେ ହତ୍ୟା କରିବାକୁ କୁଣ୍ଠିତ ହୋଇନଥିବେ । ଯାହାହେଉ ଶେଷରେ ସେ ଜୟଯୁକ୍ତ ହେଲେ ଏବଂ ରାଜାରୂପେ ଅଭିଷିକ୍ତ ହେଲେ ।

କେବଳ ଭାରତବର୍ଷ ନୁହେଁ, ସମଗ୍ର ବିଶ୍ୱଇତିହାସରେ ଅଶୋକ ଧର୍ମରାଜାଭାବେ ସ୍ୱତନ୍ତ୍ର ଆସନର ଅଧିକାରୀ—ଏହା ସର୍ବସମ୍ମତ । କିନ୍ତୁ ପୁଙ୍ଖାନୁପୁଙ୍ଖ ସମୀକ୍ଷାକଲେ ଜଣାପଡ଼େ ତାଙ୍କ ଜୀବନକାଳ ତାମସ, ରାଜସ ଓ ସାତ୍ତ୍ୱିକ ତିନୋଟି ଗୁଣର ସମାହାର ଥିଲା । ତିନୋଟିଯାକ

ରୂଣର ସେ ଥିଲେ ମୂର୍ତ୍ତିମନ୍ତ ପ୍ରତୀକ । ପ୍ରଥମାବସ୍ଥାରେ ନିର୍ମମ ଭ୍ରାତୃହତ୍ୟା, ଅଗଣିତ ଜୀବବଧ, ଅହରହ ପାନଗୋଷ୍ଠୀ, ରତିକ୍ରୀଡ଼ା, ରୂପଗର୍ବ, ଦୁର୍ଜନ ସଂସର୍ଗୋଦ୍ଧ ତାମସକର୍ମ, ମଧ୍ୟ ବୟସରେ ରାଜ୍ୟଜୟ, ଐକାଧିପତ୍ୟ, ଧନଲୋଭ, ଯଶୋଲିପ୍ସା, ଅହଂକାର ପ୍ରଭୃତି ରାଜସଗୁଣ ଏବଂ ଶେଷ ଜୀବନରେ ଅହିଂସା, ପରୋପକାର, ସମଦୃଷ୍ଟି, ଜୀବେଦୟା, ତିତିକ୍ଷା, ବୈରାଗ୍ୟ, ସଦ୍‌ବୃଦ୍ଧି ଇତ୍ୟାଦି ସାତ୍ତ୍ୱିକ ଭାବନା ଯୋଗୁ ସେ ଚଣ୍ଡାଶୋକ, ରାଜାଶୋକ ଏବଂ ଧର୍ମାଶୋକ ବା ଅଭିଲେଖ ଭାଷାରେ 'ପ୍ରିୟଦର୍ଶି', 'ରାଜା' ଏବଂ 'ଦେବାନାଂପ୍ରିଅ'ଭାବେ ସାର୍ଥକନାମା ଥିଲେ । ରାଜପଦ ପ୍ରାପ୍ତି ପୂର୍ବରୁ ପାର୍ଥିବ ସୁଖସମ୍ଭୋଗ ସକାଶେ ଯେଉଁ କର୍ମମାନ ସେ କରିଯାଇଛନ୍ତି, ସେଥିରୁ ଜଣେ ଦୟାମାୟାଶୂନ୍ୟ ଦୁର୍ଦ୍ଧର୍ଷ ରାଜପୁତ୍ର ରୂପେ ପ୍ରମାଣିତ ହୁଅନ୍ତି । ବାଲ୍ୟବୟସରୁ ତାଙ୍କର ଦୁଷ୍ଟବୁଦ୍ଧି ପ୍ରକଟିତ ହୋଇଥିଲା । ପିତା ବିନ୍ଦୁସାରଙ୍କ କ୍ରିୟାକଳାପ ତାଙ୍କ ଉପରେ ବିଶେଷ ପ୍ରଭାବ ପକେଇଥିବ ବୋଲି ଅନୁମିତ ହୁଏ । ପିତାଙ୍କ ପଦାଙ୍କ ଅନୁସରଣରେ ବନ୍ୟଜନ୍ତୁ ଶିକାର ଓ ରାଣୀହଂସପୁରର ସୁନ୍ଦରୀ ତରୁଣୀଙ୍କ ମେଳରେ ବିଳାସପୂର୍ଣ୍ଣ ଜୀବନ କଟାଇଥିଲେ । ଦୁର୍ଜନ ସଂସର୍ଗରେ ରହି ଅପରିମିତ ମୁଦ୍ରା ବ୍ୟୟରେ ପାନଗୋଷ୍ଠୀ, ରଙ୍ଗଶାଳା, ବ୍ୟାୟାମ ମନ୍ଦିର, ମହୋତ୍ସବାଦି ଅନୁଷ୍ଠିତ କରାଉଥିଲେ । ପ୍ରତ୍ୟହ ସହସ୍ର ସହସ୍ର ଜୀବଙ୍କ ମାଂସରେ ପାକକର୍ମ ସଂପାଦିତ ହେଉଥିଲା । ଏପରିକି ତାଙ୍କର ବୌଦ୍ଧଦୀକ୍ଷା ଗ୍ରହଣ ପର୍ଯ୍ୟନ୍ତ ତାହା ବଳବତ୍ତର ଥିଲା । ସେତିକି ନୁହେଁ 'ସମ୍ବୁଦ୍ଧ' ହେଲାପରେ ମଧ୍ୟ ଭୋଜନକାଳରେ ଦୁଇଟି ମୟୂର ଏବଂ ଗୋଟିଏ ମୃଗର ମାଂସ ନହେଲେ ଚଳୁ ନ ଥିଲା । କର୍ବିଂଶ୍ବରରେ ରାଜକୋଷରୁ ମୁଦ୍ରାବ୍ୟୟ, ସ୍ୱୈର ଶାସନ, ଅପରିଣାମ-ଦର୍ଶିତା, ମାଧାତିଶକ୍ତ କର୍ମଚାରୀ ନିଯୋଗହେତୁ ରାଜକୋଷ ଶୂନ୍ୟ ହେବାକୁ ବସିଲା । ପିତାମହ ଅମଳରୁ ରହିଥିବା ବିରାଟ ଚତୁରଙ୍ଗବାହିନୀରେ ଅସନ୍ତୋଷ ଦେଖାଦେଲା । ଫଳରେ ଅଧୀନସ୍ଥ ରାଜ୍ୟମାନଙ୍କରୁ ଅନ୍ୟାୟପନ୍ଥାରେ 'ରାଜଭାଗ' ଆଦାୟ କରାଗଲା । ତଥାପି ଅବସ୍ଥାର ପରିବର୍ତ୍ତନ ନଘଟି ବରଂ ବୃଦ୍ଧି ପାଇବାକୁ ଲାଗିଲା । ପ୍ରଜାପୁଞ୍ଜ ଋଣ ପୀଡ଼ାରେ ଭାରାକ୍ରାନ୍ତ । ଭୃତ୍ୟବର୍ଗ କର୍ମଶିଥିଳ । ରାଜକୋଷ ମୁଦ୍ରାଶୂନ୍ୟ । ଚତୁର୍ଦ୍ଦିଗରେ ନୈରାଶ୍ୟର ଛାୟା । ପ୍ରତିବାଦ କରିବାକୁ ସାହସ ନଥିଲା କାହାର । 'ଅଶୋକ' ନାମରେ ଭୀତତ୍ରସ୍ତ ସମସ୍ତେ । ତାଦୃଶ ଅବସ୍ଥାରେ ନନ୍ଦକାଳୀନ ପ୍ରଜା ଅସନ୍ତୋଷ ଏବଂ ପିତାଙ୍କ ଅମଳର ତିକ୍ତଶିଳା ପ୍ରଜା ବିଦ୍ରୋହ ଅଶୋକଙ୍କ ମନକୁ ନିଶ୍ଚେ ଆଲୋଡ଼ିତ କରିଥିବ । ଛଳେ ବଳେ କୌଶଳେ ରାଜକୋଷ ବୃଦ୍ଧି କରିବାକୁ ସେ ମନସ୍ଥ କରିଥିବେ ଏବଂ ପ୍ରତିକାର ପନ୍ଥା ଚିନ୍ତା କରିଥିବେ । ଶେଷରେ ଅନନ୍ୟୋପାୟହୋଇ ଯୁଦ୍ଧ ଅଭିଯାନକୁ ଏକମାତ୍ର ପନ୍ଥାରୂପେ ବାଛି ନେଇଥିବେ । ସେତିକିବେଳେ ତାଙ୍କ ଲୋଲୁପଦୃଷ୍ଟି ପଡ଼େ ପଡ଼ୋଶୀ କଳିଙ୍ଗ ଉପରେ ।

କିନ୍ତୁ କଳିଙ୍ଗ ଆକ୍ରମଣ କରିବାରେ ଏକାଧିକ ପ୍ରତିବନ୍ଧକ ରହିଥିଲା । ଏକେ, ତାହା ଏକ ମିତ୍ର ରାଜ୍ୟ । ପିତାମହଙ୍କ ଅମଳରୁ ତା'ସହିତ ମଗଧର ସୁସଂପର୍କ ରହିଛି । ଦ୍ୱିତୀୟତଃ

ଦୁଇଦେଶର ମର୍ଯ୍ୟାଦା ଓ ପ୍ରତିଷ୍ଠା ସମାନ ସ୍ତରର । ସୁତରାଂ କଳିଙ୍ଗ ବିପଦ କାଳର ବନ୍ଧୁ । ଏହାଛଡ଼ା କଳିଙ୍ଗ ଯୋଦ୍ଧାଙ୍କ ବୀରତ୍ବ ଓ ସାହସ ପୃଥିବୀ ବିଖ୍ୟାତ । ତାଦୃଶ ଏକ ଶକ୍ତିଶାଳୀ ବନ୍ଧୁରାଜ୍ୟ ଉପରେ ଆକସ୍ମିକ ଆକ୍ରମଣ ନୈତିକତା ଦୃଷ୍ଟିରୁ ଯେତିକି ନିନ୍ଦନୀୟ, ଭୌତିକ ଦୃଷ୍ଟିରୁ ସେତିକି କ୍ଷତିକାରକ । ସୁତରାଂ ସିଂହାସନାରୋହଣର ଛଅ ବର୍ଷ ଯାଏଁ ତାଙ୍କୁ ଅପେକ୍ଷା କରିବାକୁ ପଡ଼ିଥିଲା । ଆଭ୍ୟନ୍ତରୀଣ ସମସ୍ୟା ସମାଧାନ ପାଇଁ ଅବଲମ୍ବିତ କୌଶଳମାନ ନିଷ୍ଫଳ ହେବା ଯୋଗୁ ବୋଧହୁଏ ଯୁଦ୍ଧର ଫଳାଫଳ ପ୍ରତି ଦୃକ୍‌ପାତ ନକରି ଶେଷରେ କଳିଙ୍ଗ ଆକ୍ରମଣ କରିବାର ନିଷ୍ପତ୍ତି ନିଅନ୍ତି । ସେତେବେଳକୁ କଳିଙ୍ଗ ସାମାଜିକ, ଆର୍ଥନୀତିକ, ବାଣିଜ୍ୟିକ, ରାଜନୈତିକ, ସାମରିକ ସକଳ କ୍ଷେତ୍ରରେ ବିଭବଶାଳୀ ରାଷ୍ଟ୍ରଭାବେ ବିଶ୍ବ ପ୍ରସିଦ୍ଧି ଲାଭ କରିଥାଏ । ଏହାର ନୌ-ଚଳାଚଳୋପଯୋଗୀ ଅସଂଖ୍ୟ ବନ୍ଦର, ଦ୍ବୀପାନ୍ତରାନୀତ ବିବିଧ ମଣିମାଣିକ୍ୟ, ଉନ୍ନତ କୃଷିଜାତ ପଦାର୍ଥ, ସାଧବକୁଳର ବିପୁଳ ଧନସମ୍ପତ୍ତି, ଶତଶତ ବିରାଟକାୟ ବାଣିଜ୍ୟପୋତ, ସହସ୍ର ସଂଖ୍ୟକ ଯୁଦ୍ଧ ଗଜ, ଅଶ୍ବ ଇତ୍ୟାଦି ଦେଖିଲେ ଲୋଭ ସମ୍ବରଣ କରିହେଉନଥିଲା । ଏଣୁ ଅନ୍ୟମନରେ ଅସୂୟା ଜାଗ୍ରତ ହେବା ଅସ୍ବାଭାବିକ ନଥିଲା; ବିଶେଷତଃ ଅଶୋକଙ୍କ ଭଳି ଜଣେ ଦୁଷ୍ଟବୁଦ୍ଧି ରାଜାଙ୍କ ପକ୍ଷେ । ତେଣୁ ତାକୁ କରଗତ କରିବା ଅଭିପ୍ରାୟରେ ହଠାତ୍ ଚତୁରଙ୍ଗସେନା ଚଳାଇ ଯୁଦ୍ଧଯାତ୍ରା ଆରମ୍ଭ କରନ୍ତି ।

ସେ ସମୟକୁ କଳିଙ୍ଗର ଆଭ୍ୟନ୍ତରୀଣ ପରିସ୍ଥିତି ପ୍ରତି ଟିକିଏ ଦୃଷ୍ଟିପାତ କରିବା ଉଚିତ । ଉତ୍ତରକୁ ମହାନଦୀ ଏବଂ ଦକ୍ଷିଣକୁ ବଂଶଧାରା ଏବଂ ପୂର୍ବରେ ମହୋଦଧି ଓ ପଶ୍ଚିମରେ 'କୋଶଳ' ରାଜ୍ୟ ମଧ୍ୟରେ ରହି କ୍ଷୁଦ୍ରକାୟ ହେଲେ ସୁଦ୍ଧା କଳିଙ୍ଗ ସକଳ ପାର୍ଥିବ ଐଶ୍ବର୍ଯ୍ୟରେ ପରିପୂର୍ଣ୍ଣ ଥିଲା । ଏହାର ବେଳାଭୂମିରେ ଶ୍ରେଷ୍ଠ ବଡ଼ ପନ୍ଦରଟି ଯାଏ ପୋତାଶ୍ରୟ ଥିଲା । ନାବିକ ଓ ବଣିକମାନେ ସାଗର ବକ୍ଷରେ ନୌକାମେଲି ଦୂରଦୂରାନ୍ତ ବାଲି, ଯବ, ସୁମାତ୍ରାଦି ପୂର୍ବଭାରତୀୟ ଦ୍ବୀପପୁଞ୍ଜ ସମେତ ବ୍ରହ୍ମଦେଶ, ମାଳୟ ଉପଦ୍ବୀପ, ଶ୍ୟାମ ପ୍ରଭୃତି ରାଜ୍ୟ ସହିତ ବୋଇତ ବାଣିଜ୍ୟ ଚଳାଉଥିଲେ ଏବଂ ବିପୁଳ ପରିମାଣ ଧନରତ୍ନ ବୋହି ଆଣି ଦେଶକୁ ସମୃଦ୍ଧିଶାଳୀ କରିଥିଲେ । ଦେଶରକ୍ଷା ଦିଗରେ ମଧ୍ୟ କଳିଙ୍ଗ ଅସାବଧାନ ନଥିଲା । ଖ୍ରୀ:ପୂ: ଚତୁର୍ଥ ଶତାବ୍ଦୀରେ ମୌର୍ଯ୍ୟ ଚନ୍ଦ୍ରଗୁପ୍ତଙ୍କ ସଭା ମଣ୍ଡନ କରିଥିବା ଗ୍ରୀକ୍‌ଦୂତ ମେଘାସ୍ଥିନିସ୍‌ଙ୍କ ଭାରତ ଭ୍ରମଣ ବୃତ୍ତାନ୍ତରୁ ଜଣାପଡ଼େ ସେତେବେଳକୁ କଳିଙ୍ଗରେ ଷାଠିଏ ହଜାର ପଦାତିକ, ସାତ ହଜାର ଯୁଦ୍ଧାଶ୍ବ, ହଜାରେ ରଥ ଏବଂ ଦଶହଜାର ପର୍ଯ୍ୟନ୍ତ ହସ୍ତୀ ରହିଥିଲେ । ଦୁର୍ଦ୍ଧର୍ଷ ତଥା ରଣକୁଶଳ ଚତୁରଙ୍ଗ ବାହିନୀ ଇତର ରାଜ୍ୟ ମନରେ ଭୀତି ସଞ୍ଚାର କରୁଥିଲା । ରାଜପୁଷ୍ଟ ସୈନ୍ୟ ଛଡ଼ା ସୁସ୍ଥ ସବଳ ଗ୍ରାମୀଣ ଯୁବକଦଳ ଯୁଦ୍ଧବିଦ୍ୟାରେ ପାରଙ୍ଗମ ହୋଇ ସମର କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ସର୍ବଦା ପ୍ରସ୍ତୁତ ଥିଲେ । ସଂଖ୍ୟା ତୁଳନାରେ ମଗଧ ଅପେକ୍ଷା କଳିଙ୍ଗର ଚତୁରଙ୍ଗ ବଳ ଏକତୃତୀୟାଂଶ ହେଲେ ସୁଦ୍ଧା ବୀରତ୍ବ ଓ ସାହସିକତାରେ ବହୁଗୁଣ ଶକ୍ତିଶାଳୀ ଥିଲା । ଏହା ଜାଣି ସୁଦ୍ଧା କଳିଙ୍ଗକୁ

ପର୍ଯ୍ୟାକ୍ରାନ୍ତ କରି ଧନସମ୍ପଦ ଲୁଟିନେବା ସଙ୍ଗେ ସଙ୍ଗେ ସାର୍ବଭୌମ ବୋଲାଇବା ଲୋଭରେ ଅଶୋକ ଅଭିଯାନ ଚଳାଇଲେ । ସେଥିସକାଶେ ପିତୃପିତାମହ ଅମଳରୁ ମିତ୍ରରାଜ୍ୟ ବୋଲାଉଥିବା କଳିଙ୍ଗର ସ୍ୱାଧୀନତା ଅପହରଣ କରିବାକୁ ଉଠିଲେ ସୁଦ୍ଧା ଲଜ୍ଜାବୋଧ କଲେ ନାହିଁ । ସେଥିପାଇଁ ଅବଶ୍ୟ ତାଙ୍କର ଦୁଇଟି ଲକ୍ଷ୍ୟ ରହିଥିଲା—ଅସନ୍ତୁଷ୍ଟ ପ୍ରଜାଙ୍କମନ ଅନ୍ୟ ଦିଗେ ଆକୃଷ୍ଟ କରିବା ଏବଂ ଆପଣାର ଅଭିଳାଷ ଚରିତାର୍ଥ କରିବା । କିନ୍ତୁ ଯୋଗକୁ ଦୁଇଟିଯାକ ବ୍ୟର୍ଥ ହୋଇଛି ।

ଏଣେ ମହାନଦୀର ଉତ୍ତରପଟେ ରାଜଧାନୀ ତୋଷଳିକୁ ଲାଗି କଳିଙ୍ଗ ଶିଳ୍ପୀଙ୍କଦ୍ୱାରା ଏକ ସୁଦୃଢ଼ ଦୁର୍ଗ ନିର୍ମିତ ଥିଲା, ଯାହା ଏବେ 'ଶିଶୁପାଳ ଗଡ଼' ନାମରେ ଅଭିହିତ । ଭୂଖନନ ଫଳରେ ଆବିଷ୍କୃତ ଶିଶୁପାଳ ଗଡ଼ର ମୃତ୍ତିକାସ୍ତରର ପରୀକ୍ଷାରୁ ତାହା ଖ୍ରୀ.ପୂ. ଚାରିଶହ ବର୍ଷ ତଳେ ନିର୍ମିତ ହୋଇ ଥିଲା ବୋଲି ପ୍ରତ୍ନତାତ୍ତ୍ୱିକମାନେ କହନ୍ତି । କିନ୍ତୁ ଐତିହାସିକ ମତରେ ତାହା ମୌର୍ଯ୍ୟବଂଶୀ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ନିର୍ମାଣ କରାଯାଇଥିଲା । ହିସାବ କଲେ ଦ୍ୱିତୀୟ ଅପେକ୍ଷା ପ୍ରଥମ ମତଟି ଅଧିକ ବିଶ୍ୱାସଯୋଗ୍ୟ ମନେହୁଏ । କାରଣ ଚନ୍ଦ୍ରଗୁପ୍ତଙ୍କଦ୍ୱାରା ସେଠାରେ ଏତେ ବଡ଼ ବିରାଟ ଗଡ଼ ନିର୍ମାଣର କୌଣସି ଆବଶ୍ୟକତା ନଥିଲା । ଶତ୍ରୁ ଆକ୍ରମଣକୁ ଦୃଷ୍ଟିରେ ରଖି ଦୁର୍ଗ ବା ଗଡ଼ ନିର୍ମିତ ହୋଇଥାଏ । ଉତ୍କଳିଙ୍ଗ ଥିଲା ମଗଧାଧୀନ ଏବଂ ତାକୁ ଲାଗି କଳିଙ୍ଗ ଥିଲା ଚନ୍ଦ୍ରଗୁପ୍ତଙ୍କ ମିତ୍ରରାଜ୍ୟ । ନନ୍ଦରାଜାଙ୍କ ସହ ସଂଘର୍ଷ କାଳରେ କଳିଙ୍ଗର ମ୍ଳେଚ୍ଛରାଜା 'ପର୍ବତକ' ଚନ୍ଦ୍ରଗୁପ୍ତଙ୍କୁ ଆନ୍ତରିକ ସାହାଯ୍ୟ ପ୍ରଦାନ କରିଥିଲେ । ତେଣୁ ସେପଟୁ ଉତ୍କଳିଙ୍ଗ ଉପରେ କୌଣସି ଆକ୍ରମଣର ଆଶଙ୍କା ନଥିଲା । ସେ ଅବସ୍ଥାରେ ଏତେ ବଡ଼ ଦୁର୍ଗ ସେଠାରେ ଚନ୍ଦ୍ରଗୁପ୍ତ ନିର୍ମାଣ କରିଥିବେ ବୋଲି ମନେହୁଏନାହିଁ । ବରଂ ନନ୍ଦରାଜା ମହାପଦ୍ମଙ୍କ ଦ୍ୱାରା କଳିଙ୍ଗର ଉତ୍ତର ଭାଗ ଅଧିକୃତ ହୋଇପଡ଼ିବାପରେ ପୁନରାକ୍ରମଣର ଆଶଙ୍କାରେ ଦକ୍ଷିଣପଟ ଅଧିବାସୀ ଉତ୍ତର ସୀମାରେ ଦୃଢ଼ତର ଦୁର୍ଗଟିଏ ନିର୍ମାଣ କରିଥିବା ଅଧିକ ସମ୍ଭବ । ପ୍ରତ୍ନତାତ୍ତ୍ୱିକ ପ୍ରଫେସର୍ ବି. ଲାଲ୍ ଶିଶୁପାଳଗଡ଼ର ନିର୍ମାଣ କୌଶଳ ଓ ନାମକରଣ ସମ୍ବନ୍ଧରେ ଯେଉଁ ମନ୍ତବ୍ୟ ଦିଅନ୍ତି ସେଥିରୁ ତାହାହିଁ ପରୋକ୍ଷରେ ସୂଚିତ ହୁଏ । ତାଙ୍କ କହିବାରେ 'ଶିଶୁପାଳ ଗଡ଼' ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀରେ ପ୍ରତିଷ୍ଠିତ ହୋଇଥିଲା ଏବଂ ତଦନୁଯାୟୀ ନିକଟସ୍ଥ ଗ୍ରାମର ନାମ ମଧ୍ୟ 'ଶିଶୁପାଳ' ଥିଲା । ଏଠାରେ ମନେରଖିବା ଉଚିତ, କଳିଙ୍ଗର ନବନିର୍ମିତ କୀର୍ତ୍ତିମାନ ସାଧାରଣତଃ ପୁରାଣ ବା ଇତିହାସ ପ୍ରସିଦ୍ଧ ବ୍ୟକ୍ତିଙ୍କ ନାମରେ ଉତ୍ସୃଷ୍ଟ ହୋଇଥାଏ । ତାହା ରକ୍ଷଣଶୀଳ ପରମ୍ପରାର ଅନ୍ୟତମ ନିଦର୍ଶନ । ଉଦୟଗିରିସ୍ଥ 'ମଞ୍ଚପୁରୀ' ଯେପରି ଆଦି ତୀର୍ଥଙ୍କର 'ଋଷଭ'ଙ୍କ ନାମରେ ନାମିତ ସେହିପରି କୌଣସି ଚେଦିବଂଶୀ କଳିଙ୍ଗ ନରପତି ଦ୍ୱାରା ପୁରାଣ ପ୍ରସିଦ୍ଧ ଚେଦିରାଜା 'ଶିଶୁପାଳ'ଙ୍କ ନାମରେ ଗଡ଼ଟି ଉତ୍ସୃଷ୍ଟ ଥିଲା । ଗଡ଼ନାମାନୁଯାୟୀ ନିକଟସ୍ଥ ଗ୍ରାମକୁ 'ଶିଶୁପାଳ' କୁହାଯାଇଥିଲା । କିମ୍ବା ଗଡ଼ଟି ବିନଷ୍ଟ ହେଲା ପରେ ସ୍ମୃତିସ୍ୱରୂପ ସେ ନାମରେ ଗ୍ରାମଟିଏ ପ୍ରତିଷ୍ଠିତ ହେଲା । କିନ୍ତୁ ଚେଦିରାଜା ଖାରବେଳଙ୍କ ଶିଳାଲେଖରେ ତାହାର

କୌଣସି ଉଲ୍ଲେଖ ନଥିବାରୁ ମନେହୁଏ ସେ ସମସ୍ତଙ୍କୁ ତାହା ଭୂଗର୍ଭରେ ଲୀନ ହୋଇ ପଡ଼ିଥିଲା, ନୋଚେତ୍ କଣ୍ଟେ ତାହାର ଉଲ୍ଲେଖ ରହନ୍ତା । ଅନୁମାନ ହୁଏ, ଖ୍ରୀ.ପୂ: ତୃତୀୟ ଶତାବ୍ଦୀର କଳିଙ୍ଗ ଯୁଦ୍ଧ ପର୍ଯ୍ୟନ୍ତ ତାହା ଅକ୍ଷତ ଅବସ୍ଥାରେ ଥିଲା ।

ଆଗରୁ କୁହାଯାଇଛି, ଧଉଳି ପାହାଡ଼ ସନ୍ନିକଟ 'ତୋଷଳି' ଥିଲା କଳିଙ୍ଗର ରାଜଧାନୀ ଏବଂ ତାକୁ ଲଗି ରହିଥିଲା 'ଶିଶୁପାଳଗଡ଼' । ଉତ୍କଳିଙ୍ଗ ଅଭିକ୍ରମ କରିବ ମଗଧ ରାଜଧାନୀ 'ପାଟଳିପୁତ୍ର'ରୁ 'ତୋଷଳି' ଆସିବାକୁ ଅନ୍ୟ ମାର୍ଗ ନ ଥିଲା । ଯାହା ବା ଥିଲା ତାହା ଅତ୍ୟନ୍ତ ଦୁର୍ଗମ ଓ ପର୍ବତ ସଙ୍କୁଳ । ସ୍ଥଳପଥରେ ମାନଭୂମିର 'ପଞ୍ଚେଟ୍' ଘାଟିରୁ ତାମ୍ରଲିପ୍ତି ଦେଇ କେଉଁଝରର ବାଟେ ଯାଜନଗରରେ ପହଞ୍ଚି ସିଧାସଳଖ ମହାନଦୀ ଆସିବା କଷ୍ଟସାଧ୍ୟ ନ ଥିଲା । ସେଥିପାଇଁ ଅବଶ୍ୟ କେତୋଟି ସ୍ରୋତ ବଡ଼ ନଈ ପାର ହେବାକୁ ପଡ଼ୁଥିଲା । ତଥାପି ତାହା ଥିଲା ଅପେକ୍ଷାକୃତ ସହଜ ଏବଂ ନିରାପଦ ମାର୍ଗ । ଦିଗ୍‌ବିଜୟ କାଳରେ 'ରଘୁ' ସେହି ବାଟେ କଳିଙ୍ଗରେ ପ୍ରବେଶ କରିଥିଲେ ବୋଲି କାଳିଦାସଙ୍କ ଦ୍ୱାରା ବର୍ଣ୍ଣିତ । ମହାଭାରତୋକ୍ତ ଯୁଧିଷ୍ଠିରଙ୍କ ବନବାସ ବେଳକୁ ମଧ୍ୟ ସେହି କଥା । ଚୀନ ପରିବ୍ରାଜକ ହୁଏନ୍‌ସାଂ ସେହି ପଥ ଦେଇ କଳିଙ୍ଗକୁ ଯାଇଥିଲେ ବୋଲି ତାଙ୍କ ଭ୍ରମଣ ବୃତ୍ତାନ୍ତରୁ ଜଣାପଡ଼େ । ଅତଏବ ସେହି ମାର୍ଗରେ ଅଶୋକ ମହାନଦୀ ପର୍ଯ୍ୟନ୍ତ ବିନାବାଧାରେ ଆସି ପହଞ୍ଚି ଥିଲେ ବୋଲି କହିବା ଅସଙ୍ଗତ ନୁହେଁ, ଯେହେତୁ ସେତେବେଳକୁ ଉତ୍କଳିଙ୍ଗ ଥିଲା ମଗଧାଧୀନ ।

ନଦୀ ପାର ହେଲା ମାତ୍ରେ ତାଙ୍କୁ ପ୍ରଥମ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡ଼ିଥିବ 'ଚଣ୍ଡକା' ପାଖରେ । କାରଣ ସେଠାରେ 'ତୋଷଳି'ର ପ୍ରହରୀ ସେନା ରହୁଥିଲେ । ସୀମାରକ୍ଷାର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତଥିଲା । ସେଠାରୁ ହିଁ ଐତିହାସିକ କଳିଙ୍ଗଯୁଦ୍ଧର ଅସ୍ତ୍ରମାରମ୍ଭ । ଏକ ପକ୍ଷରେ ଅଗଣିତ ଆକ୍ରମଣକାରୀ ମଦୋନ୍ମତ୍ତ ମଗଧବାହିନୀ, ଅପରପକ୍ଷେ ମୁଷ୍ଟିମେୟ କଳିଙ୍ଗର ଦୁର୍ଦ୍ଦାନ୍ତ ସାହସୀ ସେନା—କେହି କାହାରକୁ ଊଣା ନୁହନ୍ତି । ଉଭୟେ ରଣରଙ୍ଗା । କିନ୍ତୁ ସଂଖ୍ୟା ତୁଳନାରେ ମଗଧର ଚତୁର୍ଥାଂଶ ଥିଲା କଳିଙ୍ଗସେନା । କଳିଙ୍ଗଭଳି ଏକ ଶକ୍ତିଶାଳୀ ରାଜ୍ୟ ବିରୁଦ୍ଧରେ ଅଭିଯାନ ଚଳାଇଲାବେଳେ ଅଶୋକ ସର୍ବବିଧ ସତର୍କତା ଅବଲମ୍ବନ କରିଥିବେ । ତେଣୁ ଷାଠିଏ ହଜାର ସୈନ୍ୟ ବିରୁଦ୍ଧରେ ଅନ୍ତତଃ ଚତୁର୍ଗୁଣ ସେନାବାହିନୀ ବିନିଯୁକ୍ତ ହୋଇଥିବେ । ବୋଧହୁଏ ଭାବିଥିବେ ସଂଖ୍ୟାଧିକ୍ୟ ବଳରେ କଳିଙ୍ଗ ସେନାକୁ ସହଜେ ପରାଜିତ କରିହେବ । ଯୁଦ୍ଧର ପ୍ରଥମାବସ୍ଥାରେ ଅବଶ୍ୟ ତାହା କିଛିଟା ପରିମାଣ ଫଳବତୀ ହୋଇଥାଇପାରେ । ପ୍ରଥମ ପ୍ରତିରୋଧବେଳେ ପ୍ରହରୀ ସେନା ପଛଘୁଞ୍ଚାଦେଇ ଗଡ଼ଦ୍ୱାର ପର୍ଯ୍ୟନ୍ତ ହଟିଥାଇପାରନ୍ତି । କିନ୍ତୁ ଗଡ଼ମଧ୍ୟସ୍ଥ ରାଜସେନାପତିଙ୍କ ନିର୍ଦ୍ଦେଶରେ ଯୋଧାଜ୍ଞ କଳିଙ୍ଗ ବାହିନୀ ଯେତେବେଳେ ଦ୍ୱିଗୁଣ ତେଜରେ ପ୍ରତ୍ୟାକ୍ରମଣ କରିଥିବେ ସେତେବେଳେ ମଗଧର ସମ୍ମୁଖବାହିନୀ ଅସ୍ତବ୍ୟସ୍ତ ହୋଇ ପୃଷ୍ଠଭଙ୍ଗ ଦେଇଥିବେ । ଗତ୍ୟନ୍ତର ନ ଦେଖି ଅପେକ୍ଷାରତ ଚତୁରଙ୍ଗ

ସେନା ନଦୀ ଆରପଟରୁ ଅଗଣିତ ସଂଖ୍ୟାରେ ଆସି ପୁନରାକ୍ରମଣର ଉପକ୍ରମ କରିଥିବେ ନିଶ୍ଚୟ । ତଥାପି ରଣଚଣ୍ଡୀ କଳିଙ୍ଗ ବାହିନୀକୁ ପରାସ୍ତ କରିବା ସମ୍ଭବ ନଥିଲା । ହଜାର ସଂଖ୍ୟାରେ ଶତ୍ରୁକବନ୍ଧ ରଣାଙ୍ଗନରେ ନୃତ୍ୟ କରିଥିବେ । ଆକ୍ରମଣକାରୀ ଯେତେ ସଂଖ୍ୟାରେ ନିପାତ ହେଲେ ସୁଦ୍ଧା ରକ୍ତବୀଜ ଭଳି ତତୋଽଧିକ ସଂଖ୍ୟାରେ ଆସି ଯୋଗ ଦେଉଥିବେ । କାରଣ ଅଭିପ୍ସିତ ଚରିତାର୍ଥ କରିବାପାଇଁ ସ୍ୱାର୍ଥାନ୍ଧ ରାଜା ଲକ୍ଷ ସଂଖ୍ୟକ ଜୀବନ ବଳିଦେବାରେ କୁଣ୍ଠା କରିନଥିଲେ । ଯୁଦ୍ଧ ଆରମ୍ଭ କରିବା ଯେତିକି ସହଜ ଅବସାନ ଘଟାଇବା ସେତିକି ସହଜ ନୁହେଁ । ଅଶୋକଙ୍କ ପକ୍ଷେ ସେଇଆ ଘଟିଛି । ଆତ୍ମସମ୍ମାନ ରକ୍ଷାପାଇଁ ରଣାଙ୍ଗନରେ ଲକ୍ଷ ଲକ୍ଷ ପ୍ରାଣୋତ୍ସର୍ଗ କରିବାକୁ ପଡ଼ିଛି । ସାମୟିକ ଜୟ ପରାଜୟ ମଧ୍ୟରେ ଉଭୟ ପକ୍ଷର କେତେ ଯେ ସୈନ୍ୟ ନିହତ ହୋଇଥିବେ ତା'ର କଳନା ନାହିଁ । ତଥାପି ତାଙ୍କର ଜ୍ଞାନୋଦୟ ହୋଇନଥିଲା । ଯୁଦ୍ଧକ୍ଷେତ୍ରକୁ ପୁନଃ ପୁନଃ ଅଧିକରୁ ଅଧିକ ସେନା ପଠାଇ କଳିଙ୍ଗକୁ ପଦାନତ କରିବାପାଇଁ ବେଳୁଁବେଳ ଦୃଢ଼ପ୍ରତିଜ୍ଞ ହୁଅନ୍ତି । ଏଣେ କଳିଙ୍ଗ ବାହିନୀ ଯେତେ ଦୁର୍ଦ୍ଧର୍ଷ ଓ ଅନମନୀୟ ହେଲେ ମଧ୍ୟ ସଂଖ୍ୟା ତୁଳନାରେ ଥିଲା ନିତାନ୍ତ ନଗଣ୍ୟ । କାହିଁ ଛ' ଲକ୍ଷ କାହିଁ ବା ଷାଠିଏ ହଜାର ? ଏତେ ସତ୍ତ୍ୱେ ଚନ୍ଦକା ବଣରୁ ଖୋରଧା ମଧ୍ୟରେ ହିଁ ଯୁଦ୍ଧ ଆବଦ୍ଧ ରହିଥିଲା—ଦକ୍ଷିଣକୁ ଇଞ୍ଚେ ସୁଦ୍ଧା ମାଡ଼ିଯିବାକୁ ପ୍ରତିପକ୍ଷ ସମର୍ଥ ହୋଇ ନଥିଲେ । ସେ ଅବସରରେ ଯୁଦ୍ଧକୁଶଳ ଅଗଣିତ ଗ୍ରାମରକ୍ଷୀ ବାହିନୀ ରଣାଙ୍ଗନରେ ନିଶ୍ଚେ ଅବତୀର୍ଣ୍ଣ ହୋଇଥିବେ । ସେମାନଙ୍କ ସଂଖ୍ୟା ନଗଣ୍ୟ ନ ଥିଲା, ଯେହେତୁ ପ୍ରତି ଗ୍ରାମ ଓ ଜନପଦରେ ସେମାନେ ଦଳବଦ୍ଧ ଭାବେ ସୀମାରକ୍ଷା କରି ଆସୁଥିଲେ । ରାଜପୋଷ୍ୟ ସମ୍ମୁଖବାହିନୀର ସହାୟତାରେ ବିପକ୍ଷ ସେନାଙ୍କୁ ନିପାତ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ଅଗଣିତ ସଂଖ୍ୟାରେ ପ୍ରାଣ ବଳି ଦେଇଥିବେ । ସୁତରାଂ ଯୁଦ୍ଧର ପ୍ରଚଣ୍ଡତା ଓ ଭୟାବହତା ସହଜେ ଅନୁମେୟ । ଅନାୟାସରେ କଳିଙ୍ଗ ଜୟକରିବା ଆଶା ରଖି ଯେଉଁ ବିପୁଳ ବାହିନୀ ସଙ୍ଗରେ ଧରି ମଗଧ ସମ୍ରାଟ ସଗର୍ବେ ଅଗ୍ରସର ହୋଇ ଥିଲେ, ସଂଗ୍ରାମକୁଶଳୀ କଳିଙ୍ଗ ସେନାଙ୍କ ନିର୍ଭୀକ ପ୍ରତ୍ୟାକ୍ରମଣଦ୍ୱାରା ବେଳୁବେଳ ଆତଙ୍କିତ ହୋଇପଡ଼ନ୍ତି । ଅନ୍ୟ ପକ୍ଷରେ ଶତ୍ରୁ ପକ୍ଷର ରକ୍ତବୀଜ ସେନାଙ୍କୁ ନିହତ କରି ସୁଦ୍ଧା ସ୍ୱପକ୍ଷ ସୈନ୍ୟଙ୍କ କ୍ରମାବକ୍ଷୟ ଯୋଗୁ କଳିଙ୍ଗ ମନରେ ବି ଆଶଙ୍କା ସୃଷ୍ଟି ନ ହୋଇ ରହିନଥିଲା । ତଥାପି ସ୍ୱଦେଶ ମାଟିରେ ଶତ୍ରୁର ପଦସଞ୍ଚରଣାକୁ ପ୍ରଶ୍ରୟ ଦେଇ ନ ଥିଲା । ଶିଶୁପାଳ ଗଡ଼ ଘେରପଟେ ଉଭୟ ବାହିନୀ ରହି ପରସ୍ପର ଆକ୍ରମଣ ଚଳାଉଥିଲେ, କିନ୍ତୁ କେହି କାହାରିକୁ ପରାଜିତ କରିପାରୁ ନଥିଲେ । ଅଶୋକ ଯେତେବେଳେ ଦେଖନ୍ତି ନ୍ୟାୟ ଯୁଦ୍ଧରେ କଳିଙ୍ଗକୁ ପରାସ୍ତ କରିବା ସମ୍ଭବ ନୁହେଁ, ସେତେବେଳେ ସମସ୍ତ ନୀତି ନିୟମକୁ ଜଳାଞ୍ଜଳି ଦେଇ ଲିଙ୍ଗ-ବୟଃ ନିର୍ବିଶେଷରେ ନିର୍ଦ୍ଦୋଷ ପ୍ରଜାବର୍ଗଙ୍କୁ ହତ୍ୟାକରିବା ଆଦେଶ ଦିଅନ୍ତି । ଏଣେ ଲକ୍ଷ ସଂଖ୍ୟାରେ ନିହତ ହେଲାବେଳେ ତେଣେ ମଗଧ ସେନାଙ୍କ ବର୍ବରୋଚିତ ଆକ୍ରମଣ କଳିଙ୍ଗ ସେନାଙ୍କୁ ମର୍ମାହତ କରିଦିଏ । ସେ ଅବସରରେ କଳିଙ୍ଗର

ଯୁବକରାଜା ସ୍ୱୟଂ ସୈନ୍ୟ ପରିଚାଳନା କରିବାକୁ ରଣାଙ୍ଗନରେ ଅବତୀର୍ଣ୍ଣ ହୁଅନ୍ତି । ସେ ସମସ୍ତଙ୍କୁ ବୋଧହୁଏ ବୃଦ୍ଧ ରାଜା 'ମଳୟକେତୁ' ଇହଧାମରୁ ବିଦାୟ ନେଇଥାନ୍ତି । କାରଣ ଚନ୍ଦ୍ରଗୁପ୍ତଙ୍କ ମଗଧ ଅଧିକାର (ଖ୍ରୀ:ପୂ ୩୨୩) ବେଳକୁ ସେ ଥିଲେ ପର୍ବତକଙ୍କ ନାବାଳକ ପୁତ୍ର । ରାଜାଭାବେ ଅଶୋକଙ୍କ ଅଭିଷେକ କାଳ ଖ୍ରୀ.ପୂ ୨୭୩ ମସିହା, ଅର୍ଥାତ୍ ମଳୟକେତୁଙ୍କ ଆନୁମାନିକ ବୟସ ସେତେବେଳକୁ ଅନ୍ୟୁନ ପଞ୍ଚାଶ ବର୍ଷ । ସେ ଅବସ୍ଥାରେ ହୁଏତ ରାଜା ରଣାଙ୍ଗନରେ ବୀରଗତିକୁ ପ୍ରାପ୍ତ ହୋଇଥିବେ । ଅଥବା ଯୁଦ୍ଧପୂର୍ବରୁ ଅକାଳମୃତ୍ୟୁ ବରଣ କରିଥିବେ । ସେ ଯାହାହେଉ, ଦୁର୍ଭାଗ୍ୟକୁ କଳିଙ୍ଗର ତରୁଣ ଯୁବରାଜ ଶତ୍ରୁଦ୍ୱାରା ନିହତ ହୁଅନ୍ତି ଏବଂ ତାହା ଦେଖି ଯୁବରାଣୀ ପରମ ରୂପବତୀ 'କାରୁବାକୀ' ତରବାରୀ ହସ୍ତରେ ଯୁଦ୍ଧକ୍ଷେତ୍ରକୁ ଲମ୍ଫ ପ୍ରଦାନ କରନ୍ତି । ଜଣେ କୈବର୍ତ୍ତି କନ୍ୟା ହେଲେ ସୁଦ୍ଧା ସେ ଯେପରି ତେଜସ୍ୱିନୀ ସେହିପରି ସମରନିପୁଣା ଥିଲେ । ତାଙ୍କ ସାହସର ପଟାନ୍ତର ନ ଥିଲା । ତାହା ଦେଖି ନୈରାଶ୍ୟ ଜଡ଼ିତ କଳିଙ୍ଗ ସେନା ପୁଣି ଦ୍ୱିଗୁଣ ଉତ୍ସାହରେ ଶତ୍ରୁ ନିପାତ କରି ବିପକ୍ଷ ମନରେ ବିଭୀଷିକା ସୃଷ୍ଟି କରନ୍ତି । ସ୍ୱୟଂ ରାଜା ଅଶୋକ ତାହା ଜାଣି କୁଶଳୀ ସେନାପତିମାନଙ୍କ ସାହାଯ୍ୟରେ କାରୁବାକୀଙ୍କୁ ଚତୁର୍ଦ୍ଦିଗରୁ ଆକ୍ରମଣ କରି ଯୁଦ୍ଧବନ୍ଦିନୀ କରାନ୍ତି । ଫଳରେ କଳିଙ୍ଗ ସୈନ୍ୟ ପୃଷ୍ଠଭଙ୍ଗ ଦିଅନ୍ତି । ସେତିକରେ ଯୁଦ୍ଧର ପରିସମାପ୍ତି । କିନ୍ତୁ କଳିଙ୍ଗ ଯୁଦ୍ଧ ସରିବାକୁ କୁଆଡ଼େ ଦୁଇବର୍ଷ ଲାଗିଥିଲା ବୋଲି କୁହାଯାଏ । ଅଶୋକଙ୍କ କହିବାରେ, ସେ ଯୁଦ୍ଧରେ କଳିଙ୍ଗର ଦେଢ଼ ଲକ୍ଷ ସୈନ୍ୟ ବନ୍ଦୀ, ଲକ୍ଷେ ଆହତ ଏବଂ ବହୁ ଲକ୍ଷଙ୍କର ମୃତ୍ୟୁ ଘଟିଥିଲା । କିନ୍ତୁ ସେତିକି କଳିଙ୍ଗ ସୈନ୍ୟ ମରିବା ପୂର୍ବରୁ ଶତ୍ରୁ ପକ୍ଷର କେତେ ଲକ୍ଷଙ୍କୁ ନିପାତ କରିଥିଲେ ତାର ହିସାବ ନାହିଁ ।

ଯୁଦ୍ଧ ଶେଷହେବାମାତ୍ରେ ଗର୍ବୋତ୍ଫୁଲ୍ଲ ମଗଧବାହିନୀ ଶତ୍ରୁରାଜ୍ୟ ଉପରେ ନୃଶଂସ ଅତ୍ୟାଚାର ଆରମ୍ଭ କରନ୍ତି । ଅନୁମାନ ହୁଏ, ଅଭେଦ୍ୟ ଦୁର୍ଗ, ଶିଶୁପାଳଗଡ଼ ସର୍ବପ୍ରଥମେ ତାଙ୍କର ଦୃଷ୍ଟି ଆକୃଷ୍ଟ କରିଥିଲା । ତେଣୁ କ୍ରୋଧାନ୍ଧ ଭାବେ ପ୍ରଥମେ ତାକୁ ଭୂଲୁଣ୍ଠିତ କରି ତାର ଅସ୍ତିତ୍ୱ ଲୋପ ଘଟାଇଥିବେ । ପରେ ପରେ କାଦମ୍ବିନୀକ ଭାବେ ଦୃପ୍ତ ପଦରେ ଦକ୍ଷିଣ ଆଡ଼କୁ ମାଡ଼ିଯାଇ ନିର୍ବିଘ୍ନରେ ଅଟ୍ଟାଳିକା, ବାସଗୃହ, ଦେବସ୍ଥାନ, ପାଚେରୀ, ନଗର, ଗ୍ରାମ, ଜନପଦ ସବୁକୁ ଭଗ୍ନ ସ୍ତୂପରେ ପରିଣତ କରିଥିବେ । ଅଭ୍ୟନ୍ତର ଦୁର୍ଗ ନଗରୀ ସମୀପ ପର୍ଯ୍ୟନ୍ତ ମାଡ଼ିଗଲେ ସୁଦ୍ଧା ଦୁର୍ଗମ ପାହାଡ଼ ଓ ଖରସ୍ରୋତା ନଦୀ-ନାଳ ପାରିହୋଇ ଅଧିକ ଅଗ୍ରସର ହେବା ଉଚିତ ମନେକରିନଥିବେ । ଦେଶ ଜନମାନବ ଶୂନ୍ୟ, ଗ୍ରାମବସତି ଶ୍ମଶାନ ତୁଲ୍ୟ, ଚତୁର୍ଦ୍ଦିଗ ନିସ୍ତବ୍ଧ, କାହାରି ପ୍ରତିରୋଧ ନାହିଁ, ଯୁଆଡ଼େ ଦେଖିଲେ ଶୂନ୍ଶାନ୍ । ସେଥିରେ ପୁଣି ରାତିର ଅନ୍ଧକାରରେ ଲୁକ୍କାୟିତ ପାର୍ବତ୍ୟ ଶବରଙ୍କ ପ୍ରଚଣ୍ଡ ଆକ୍ରମଣ—ପ୍ରତିକାରର ଉପାୟ ନାହିଁ । ତାଦୃଶ ସଙ୍କଟଜନକ ପରିସ୍ଥିତି ଦେଖି ବୋଧହୁଏ ବିଜୟୀସେନା ଲୁଣ୍ଠିତ ପଦାର୍ଥ ସହିତ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । କାହାରି ଆପତ୍ତି ନଥିଲା । ତାହା କରିବାକୁ ବି କେହି ନଥିଲେ ।

ତେଣେ ବିଜୟୀ ଅଶୋକ ଶାଭସ୍ତ୍ର ଲୀଳା ସାଙ୍ଗ କରି ସଗର୍ବେ ମଗଧକୁ ଫେରିଯାଆନ୍ତି ଓ ବନ୍ଦିନୀ ଶତ୍ରୁକନ୍ୟା କାରୁବାକୀଙ୍କୁ ଅନ୍ତଃପୁରବାସିନୀ ହେବା ପାଇଁ ପ୍ରସ୍ତାବ ଦିଅନ୍ତି । କଳିଙ୍ଗକନ୍ୟା ଦୃଢ଼ଭାବେ ତାହା ପ୍ରତ୍ୟାଖ୍ୟାନ କରନ୍ତି, କିନ୍ତୁ ନ୍ୟଗ୍ରୋଧ ଓ ଉପଗୁପ୍ତ ନାମକ ଦୁଇଜଣ ସେନାପତିଙ୍କ ମନ୍ତ୍ରଣାରେ ଶେଷରେ ଦୁଇଟି ସର୍ତ୍ତରେ ସେ ସମ୍ମତ ହୁଅନ୍ତି । ପ୍ରଥମ—ଜୀବନରେ କୌଣସି ରାଜ୍ୟ ଉପରେ ସେ ଆକ୍ରମଣ କରିବେ ନାହିଁ । ଦ୍ଵିତୀୟ—ଜୀବହିଂସା ତ୍ୟାଗକରି ଅହିଂସା ଧର୍ମରେ ଦୀକ୍ଷିତ ହେବେ । ପ୍ରଣୟାସକ୍ତ ଅଶୋକ ଦୁଇଟି ଯାକ ସର୍ତ୍ତ ଅବିଳମ୍ବେ ଗ୍ରହଣକଲେ ଓ ତାଙ୍କୁ ବିବାହକଲେ । ଏ କଥାରେ କେତେଦୂର ସତ୍ୟତା ରହିଛି ଜଣାନାହିଁ । କିନ୍ତୁ ଏ କିମ୍ବଦନ୍ତୀ ପାରମ୍ପରିକ ରୀତିରେ ଏବେ ବି କୈବର୍ତ୍ତ କୁଳରେ ପ୍ରଚଳିତ । ଯେଉଁ କାରଣରୁ ହେଉ ସେହିଦିନୁ ଅଶୋକ ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ ବୋଲି ଇତିହାସ କହେ । ସେଥିନିମିତ୍ତ ବୋଧହୁଏ ବୌଦ୍ଧଧର୍ମଗୁରୁମାନଙ୍କ ଭୂମିକା ଗୁରୁତ୍ଵପୂର୍ଣ୍ଣ ଥିଲା । ଦେଖାଯାଇଛି, ଭାରତର ସନାତନ ଧର୍ମ ଛାଡ଼ିଦେଲେ ପୃଥିବୀରେ ଏମିତି କୌଣସି ଧର୍ମ ନାହିଁ ଯାହା ପ୍ରଚାର ମାଧ୍ୟମରେ ଲୋକପ୍ରିୟ ନହୋଇଛି । ବୌଦ୍ଧଧର୍ମ ସେଥିରୁ ବାଦ୍ ପଡ଼ିନଥିଲା । ବୌଦ୍ଧଭିକ୍ଷୁମାନେ ସ୍ଵୀୟ ଧର୍ମର ବହୁଳ ପ୍ରସାର ସକାଶେ ସର୍ବଦା ଉଦ୍‌ବିଗ୍ନ ଥିଲେ । ପ୍ରତିଦ୍ଵନ୍ଦ୍ଵୀ ଜୈନଧର୍ମ ସେଥିସକାଶେ ତାଙ୍କୁ ପ୍ରରୋଚିତ କରିଥିଲା । ମଗଧ ସମ୍ରାଟ୍ ଭଳି ଜଣେ ସାର୍ବଭୌମ ରାଜାଙ୍କୁ ଦୀକ୍ଷିତ କରାଇ ପାରିଲେ ବୌଦ୍ଧଧର୍ମ ସାର୍ବଜନୀନତା ଲାଭ କରିବ ବୋଲି ସେମାନେ ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ । ତେଣୁ ସକୌଶଳେ କାରୁବାକୀଙ୍କୁ ପ୍ରୋତ୍ସାହିତ କରି ସ୍ଵୀୟ ପ୍ରୟୋଜନ ସିଦ୍ଧି କରିଦେଇଛନ୍ତି । ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରିଛନ୍ତି । ଅଶୋକ ସେହିଦିନୁ ବୌଦ୍ଧମାର୍ଗ ଅନୁସରଣ କରି ଲୋକଙ୍କୁ ନୀତିଶିକ୍ଷା ଦେବାରେ ମନ ବଳାଇଲେ । ତାଙ୍କ ଅଭିଷେକର ଦଶମ ବର୍ଷ ତାହା ଘଟିଥିଲା ବୋଲି ଅଭିଲେଖରୁ ଜଣାପଡ଼େ ଓ ସେହି ଦିନଠାରୁ ସେ 'ସବୁଦ୍ଧ' ବୋଲାଇଲେ । ଅନୁଶାସନରେ ଏହାମଧ୍ୟ ଲେଖାଅଛି, ଅଭିଷେକର ଦ୍ଵାଦଶ ବର୍ଷ ଯାଏଁ ତାଙ୍କ ବ୍ୟଞ୍ଜନ ପାଇଁ ଦୈନିକ କେବଳ ତିନୋଟି ଜୀବ ହତ୍ୟା କରାଯାଉଥିଲା—ଦୁଇଟି ମୟୂର ଓ ଗୋଟିଏ ମୃଗ । ଏଣୁ ଅବଗତ ହୁଏ—ଅହିଂସା ଧର୍ମରେ ଦୀକ୍ଷିତ ହେବାର ଦୁଇବର୍ଷ ପର୍ଯ୍ୟନ୍ତ ସେ ହିଂସାକୁ ସମ୍ପୂର୍ଣ୍ଣ ପରିତ୍ୟାଗ କରିନଥିଲେ । ସେହି ବର୍ଷ ଭାରତର ସର୍ବତ୍ର 'ଧର୍ମଲିପି' ବା ଅନୁଶାସନ ଖୋଦିତ ହୋଇଥିବା ତୃତୀୟ ଅନୁଶାନସନରେ ଲିପିବଦ୍ଧ । ଅଥଚ ପ୍ରଥମ ଅନୁଶାସନରେ ତିନୋଟି ଜୀବବଧ କଥାର ଉଲ୍ଲେଖ ଅଛି । ଏଣୁ ଅନୁମାନ ହୁଏ, ବୌଦ୍ଧ ମାର୍ଗ ଅନୁସରଣ କରିସୁଦ୍ଧା ଧର୍ମର ସମସ୍ତ ନୀତି ନିୟମ ସେ ପୁରାପୁରି ପାଳନ କରୁନଥିଲେ କିମ୍ବା ଚିରନ୍ତନ ଜୀବ ମାଂସାହାରୀଙ୍କ ପକ୍ଷେ ତାହା ସହସା ସମ୍ଭବ ହୋଇ ନଥିଲା । ଅଥବା ପରିମିତ ମାଂସାହାର ପାଇଁ ସଙ୍ଘପକ୍ଷରୁ ବିଶେଷ ଅନୁମତି ଦିଆଯାଇଥିଲା ।

ଯୁଦ୍ଧ ଭୂମିର ରକ୍ତସ୍ରୋତ ଦର୍ଶନରେ ହେଉ ବା ରମଣୀର ଭୋଗ ଲାଳସାରେ ହେଉ, ଜଣେ ଦିଗ୍‌ବିଜୟୀ ରାଜା ହଠାତ୍ ଅହିଂସାଧର୍ମରେ ଦୀକ୍ଷିତ ହୋଇପଡ଼ିବା ସାମାନ୍ୟ କଥା ନୁହେଁ । ବିଶ୍ୱରେ ଏହାର ପଟାନ୍ତର ନାହିଁ । ସେ ଦୃଷ୍ଟିରୁ ବିଚାରକଲେ ଅଶୋକଙ୍କ ପରି ଜଣେ ରାଜା 'ନ ଭୂତୋ ନ ଭବିଷ୍ୟତି' ସେଥିରେ ସନ୍ଦେହ ନାହିଁ । ସେ ପୁଣ୍ୟଶ୍ଳୋକ, ପ୍ରାତଃସ୍ମରଣୀୟ । କିନ୍ତୁ କଳିଙ୍ଗ ଦୃଷ୍ଟିରେ ? ତାଙ୍କୁ 'ଚେଙ୍ଗିଜ୍ ଖାଁ' ଛଡ଼ା କଣ କୁହାଯାଇପାରେ ? ଯେତେ ଧର୍ମଲିପି, ଅନୁଶାସନ, ମିଠାବାଣୀ, ହିତୋପଦେଶ ଶୁଣାଇଲେ ମଧ୍ୟ କଳିଙ୍ଗ କଣ ଭୁଲିପାରିବ ସେ ଦିନର ନିଷ୍ଠୁର ନର ସଂହାର ! ଲକ୍ଷ ଲକ୍ଷ ଲୋକଙ୍କ ପ୍ରାଣ ବଳି ! ପାଶୋରି ପାରିବ ଐଶ୍ୱର୍ଯ୍ୟପୂର୍ଣ୍ଣ ଦେଶର ବୀଭତ୍ସ ଧ୍ୱଂସ ଲୀଳା ! ଯାହାର ନୀଳ ସାଗର ବେଳାରେ ବିରାଟକାୟ ବାଣିଜ୍ୟ ପୋତ ବିଦେଶରୁ ଅପରିମେୟ ଧନରତ୍ନ ବୋହି ଆଣି ଦେଶକୁ କୁବେରପୁରୀ ସମାନ ଗଢ଼ିଥିଲେ, ଯାହାର କୋଣ କୋଣ ବ୍ୟାପି ସବୁଜ ବନାନୀ ସହସ୍ର ସହସ୍ର ଦୁର୍ଲ୍ଲଭ ଦ୍ରୁମ ରାଜିରେ ପରିପୂର୍ଣ୍ଣ ଥିଲା, ଯାହାର ଦିଗନ୍ତ ବିସ୍ତାରୀ ଶସ୍ୟଶ୍ୟାମଳ କ୍ଷେତ୍ରର କୃଷିଜାତ ଦ୍ରବ୍ୟ ଦ୍ୱୀପ ଦ୍ୱୀପାନ୍ତରକୁ ଅହର୍ନିଶ ପ୍ରେରିତ ହେଉଥିଲା, ଯେଉଁ ଦେଶର ନାରୀସମାଜ ମହାମୂଲ୍ୟ ଅଳଙ୍କାର ମଣ୍ଡିତ ହୋଇ ଚିତ୍ରବିଚିତ୍ର ଶୋଭା ଧାରଣ କରୁଥିଲେ, ଯାହାର ବିପଣୀ ବୀଥିକାରେ ବିଚିତ୍ର ମଣିମୁକ୍ତା ନିଃସଙ୍କୋଚରେ କ୍ରୟ ବିକ୍ରୟ ହେଉଥିଲା, ଯେଉଁ ଦେଶର ପୁଷ୍ପବାଟିକା ନାନା ଜାତି ସୁବାସିତ ପୁଷ୍ପର ସୌରଭରେ ଚତୁର୍ଦ୍ଦିଗ ଆମୋଦିତ କରୁଥିଲା, ମଦାଳସାଙ୍କ କଣ୍ଠନିଃସୃତ ସୁଲଳିତ ରାଗିଣୀର ମଧୁର ଗୁଞ୍ଜନରେ ଯେଉଁ ରାଜ୍ୟ ଦିବାନିଶି ଝଂକୃତ ହୋଇଉଠୁଥିଲା—ତାହାକୁ ଆଖିପିଛୁଳାକେ ନିଶ୍ଚିହ୍ନ କରିଦିଆଗଲା । ନୃତ୍ୟ ସଙ୍ଗୀତ ମୁଖର କଳିଙ୍ଗର ଆଦିମ ସଂସ୍କୃତି ସବୁ ଦିନ ପାଇଁ ପୃଥିବୀରୁ ବିଲୁପ୍ତ ହୋଇ ପଡ଼ିଲା । ପ୍ରଚଣ୍ଡ ବୀର୍ଯ୍ୟବନ୍ତ କଳିଙ୍ଗ ସେନାନୀ ଛାରଖାର ଏବଂ ଗଡ଼, ନଗର, ବସ୍ତି, ପାଟଣା, ଧ୍ୱସ୍ତବିଧ୍ୱସ୍ତ ହୋଇପଡ଼ିଲା । କଳିଙ୍ଗର ଭାଷା, କଳିଙ୍ଗର ଭୂଷା, କଳିଙ୍ଗର ସଭ୍ୟତା ହେଲା ଗବେଷଣାର ବସ୍ତୁ । ସେ ଅବସ୍ଥାରେ ଅଶୋକଙ୍କ ଧର୍ମଲିପି କଳିଙ୍ଗ ପ୍ରାଣରେ କି ପ୍ରକାର ସ୍ପନ୍ଦନ ସୃଷ୍ଟିକରିଥିବ ଅନୁମାନର ବିଷୟ ।

କଳିଙ୍ଗ ବିଜୟ ପରେ 'ସମ୍ରାଟ' ଅଶୋକ ଧର୍ମ୍ମଶାସନ ପ୍ରବର୍ତ୍ତନ କଲେ । ଦେଶରେ ଧର୍ମ୍ମଲିପି ଲେଖାଇଲେ । ପ୍ରଜାକଲ୍ୟାଣ ଲାଗି ଧର୍ମଯୁକ୍ତ, ରାଜୁକ, ମହାମାତ୍ରାଦି କର୍ମଚାରୀ ନିଯୁକ୍ତ କଲେ ସତ, କିନ୍ତୁ ଯନ୍ତ୍ରଣା ଦଗ୍ଧ କଳିଙ୍ଗବାସୀଙ୍କ ମନରେ ଶାନ୍ତିବାରି ସିଞ୍ଚି ପାରିଲେ ନାହିଁ; କିମ୍ବା ତାଙ୍କର ବିଶ୍ୱାସଭାଜନ ହୋଇପାରିଲେ ନାହିଁ । ବରଂ ସ୍ୱାଭିମାନୀ ମୁଷ୍ଟିମେୟ କଳିଙ୍ଗବାସୀ ଯେଉଁମାନେ ନିରୁପାୟ ହୋଇ ପ୍ରାଣବିକଳରେ ଅରଣ୍ୟରେ ଆତ୍ମଗୋପନ କରିଥିଲେ ସେମାନେ ସ୍ୱାର୍ଥପର ରାଜକର୍ମଚାରୀଙ୍କ ଅତ୍ୟାଚାର ସହ୍ୟ ନକରି ଗୋପନ ମାର୍ଗରେ ଆସି ଅପ୍ରତ୍ୟାଶିତ ଆକ୍ରମଣ କରୁଥିଲେ । ସେ ମଧ୍ୟରୁ କେତେକ ବନ୍ଦୀ ହୋଇ ବହୁମୂଲ୍ୟ ଉତ୍କୋଚ ବିନିମୟରେ ମୁକ୍ତିପାଉଥିଲେ । ମନେହୁଏ, ତାଦୃଶ ଅବାଞ୍ଛିତ କାର୍ଯ୍ୟକଳାପ ଯୁଦ୍ଧୋତ୍ତର କଳିଙ୍ଗରେ ସତର ବର୍ଷ ପର୍ଯ୍ୟନ୍ତ ଲାଗି ରହିଥିଲା । ସେଥିଯୋଗୁ

ଦୁଃଖକ୍ଲିଷ୍ଟ ପ୍ରଜାଙ୍କ ଅଧିକ ଉତ୍ସାହିତ ନ କରି ଧର୍ମ ମାର୍ଗରେ ରାଜାନୁଗତ କରାଇବା ପାଇଁ ଅଶୋକ ରାଜକର୍ମଚାରୀଙ୍କ ଲକ୍ଷ୍ୟରେ ଦୁଇଟି ସ୍ୱତନ୍ତ୍ର ଅନୁଶାସନ ଖୋଦନ କରାଇଥିଲେ । ଲୋକପ୍ରିୟ ପବିତ୍ର ସ୍ଥାନ ମାନଙ୍କରେ ନୀତି ଉପଦେଶ ଲେଖାଇ ସେମାନଙ୍କୁ ସତର୍କ କରାଯାଇଥିଲା । ତେଣୁ ଜଉ 'ତୋଷଳୀ' ଓ 'ସମାପ' ଉଭୟ ନଗରୀରେ ଦୁଇଟି ଅନୁଶାସନ ଲେଖାଥିବା ଦେଖୁ । ତା' ଛଡ଼ା ତୋଷଳୀରେ ଅବସ୍ଥିତ 'ଅଶ୍ୱତ୍ଥାମା' ନାମକ ପଥରହସ୍ତୀ ଦେହରେ କେତେକ ନୀତିବାଣୀ ଖୋଦିତ ହୋଇଥିଲା । ଉଦ୍ଦେଶ୍ୟ ହେଲା ହସ୍ତୀ କଳିଙ୍ଗ ଶବରଙ୍କ ପ୍ରିୟ ବସ୍ତୁ ରୂପେ ଆବହମାନ କାଳରୁ ସମ୍ମାନିତ । ତେଣୁ ସେଥିରେ ଲିଖିତ ଉପଦେଶ ସେମାନଙ୍କ ମନକୁ ସ୍ପର୍ଶ କରିପାରେ । ଅବଶ୍ୟ, କେବଳ ଶବର ନୁହେଁ ବୌଦ୍ଧ ଦୃଷ୍ଟିରେ ମଧ୍ୟ ହସ୍ତୀ ପବିତ୍ର ଜୀବ ରୂପେ ସ୍ୱୀକୃତି ଲାଭ କରିଥିଲା । ବୌଦ୍ଧ ରଚନାମାନଙ୍କରେ 'ଶ୍ୱେତହସ୍ତୀ'ର ମାହାତ୍ମ୍ୟ ବହୁଳ ବର୍ଣ୍ଣିତ । ସ୍ୱୟଂ ବୁଦ୍ଧଦେବ 'ଗଜାତ୍ମା' ରୂପେ ପରିଚିତ ଥିଲେ । ବୋଧହୁଏ ତାହା ଆଦିମ ଶାବରୀ ଧାରଣାରୁ ବୌଦ୍ଧଧର୍ମରେ ଅନୁପ୍ରବେଶ କରିଥିଲା ।

ଯୁଦ୍ଧ ସରିଗଲା, କଳିଙ୍ଗ ପରାଜିତ ହେଲା । ଚତୁର୍ଥ ଅଧିବାସୀ ପ୍ରାଣଭୟରେ ବଣ ପାହାଡ଼ରେ ଆଶ୍ରୟ ନେଲେ । ନାରୀ, ଶିଶୁ, ବୃଦ୍ଧ, ଅକର୍ମଣ୍ୟ ଭିଟାମାଟି ନଛାଡ଼ି ପଡ଼ି ରହିଲେ । ସେମାନଙ୍କୁ ସାନ୍ତ୍ୱନା ଦେଇ ସୁଶାସନ ପ୍ରତିଷ୍ଠା କରିବା ପାଇଁ ରାଜପୁରୁଷଙ୍କୁ ନିଯୁକ୍ତ କରାଗଲା । ଉତ୍ତରପଥରୁ ଚତୁର୍ବର୍ଣ୍ଣୀ ଆର୍ଯ୍ୟ ସମାଜରୁ ବିଶ୍ୱସ୍ତ କର୍ମଚାରୀ ବଛାଯାଇ ରାଜାଜ୍ଞା ପାଳନ ନିମିତ୍ତ ନିର୍ଦ୍ଦେଶ ଦିଆଗଲା । କିନ୍ତୁ ସେମାନେ କର୍ତ୍ତବ୍ୟ ପାଳନ କରିବା ପରିବର୍ତ୍ତେ ସ୍ଥାନୀୟ ଅଧିବାସୀଙ୍କ ଅସହାୟତାର ସୁଯୋଗନେଇ ଆପଣା ସ୍ୱାର୍ଥ ସାଧନରେ ଲାଗିପଡ଼ିଲେ । ରାଜାଜ୍ଞା ନାମରେ ପ୍ରଜାମନରେ ଭୟ ଜାତ କରାଇ ସେମାନଙ୍କୁ ବଶୀଭୂତ କରିବା ଆରମ୍ଭ କଲେ । ବୃତ୍ତିଭେଦରେ କୁଳ ଗଠନକୁ ପ୍ରୋତ୍ସାହିତ କରାଗଲା । କୁଳ 'ଜାତି' ନାମରେ ନାମିତ ହେଲା । ଜାତି-ବର୍ଣ୍ଣ-ଭେଦଶୂନ୍ୟ ପାଇକ କୁଳରେ ବୃତ୍ତିଭିତ୍ତିକ ଜାତିଭେଦ ପ୍ରଥାର ସୂତ୍ରପାତ ଘଟିଲା । ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସେମାନେ ସ୍ୱତନ୍ତ୍ର ଜାତିରୂପେ ପରିଚିତ ହେଲେ । କମାରପୁତ୍ର ସୁନାବ୍ୟବସାୟ କଲେ ମଧ୍ୟ 'ସୁନାରୀ' ମଧ୍ୟରେ ଗଣ୍ୟ ନ ହୋଇ 'କମାର' ନାମରେ ପରିଚିତ ହେଲା । ଜାତିଭେଦ ଯୋଗୁ ଉଚ୍ଚ ନୀଚ ଭାବନାର ବୀଜ ଅଙ୍କୁରିତ ହେଲା । ତଥାକଥିତ ଉଚ୍ଚ ବର୍ଣ୍ଣର ରାଜପ୍ରତିନିଧିମାନେ ଅର୍ଥଲୋଭରେ ସେଥିରେ ଇନ୍ଧନ ଯୋଗାଇବାକୁ ଲାଗିଲେ । ଚତୁର୍ବର୍ଣ୍ଣ ରୂପ କୂଟ ଜାଲରେ ସେମାନଙ୍କୁ ଆବଦ୍ଧ କରି ଦିଆଗଲା । ନିର୍ବୋଧ ପ୍ରଜାବର୍ଗ ସାମାଜିକ ପ୍ରତିଷ୍ଠା ଲୋଭରେ ପ୍ରଚୁର ମୁଦ୍ରା ବ୍ୟୟକରି ଉଚ୍ଚ ଜାତିରେ ଗଣ୍ୟ ହେବାପାଇଁ ଉତ୍କଣ୍ଠିତ ହୋଇ ଉଠିଲେ । ଅଧ୍ୟୟନ, ଅଧ୍ୟାପନ, ଅପେକ୍ଷାକୃତ ଶୁଦ୍ଧପୂତ ପୂଜାପାଠ, ବୃତ୍ତିନିଷ୍ଠ ପାଇକ ଗୋଷ୍ଠୀ 'ବ୍ରାହ୍ମଣ', ଶସ୍ତ୍ରଚାଳନାଦିରେ କୁଶଳ ବ୍ୟକ୍ତି 'କ୍ଷତ୍ରିୟ', କ୍ରୟବିକ୍ରୟକାରୀ 'ବୈଶ୍ୟ' ଏବଂ ଅବଶିଷ୍ଟ

ପାଟକ 'ଶୂଦ୍ର'ରୂପେ ଅନୁମୋଦନ ଲାଭକଲେ । ସେତକ ନୁହେଁ, ପ୍ରତିଷ୍ଠିତ ସଙ୍ଗତିସଂପନ୍ନ ବ୍ୟକ୍ତିଗଣ ସାଧୁ, ମହାଜନ, ସୌଦାଗର, ସାଧବ ପ୍ରଭୃତି ନାମରେ ବିଶେଷ ସମ୍ମାନର ଅଧିକାରୀହେଲେ । ଯେ ସମସ୍ତ ମୂଳରେ ଥିଲା ଚତୁର୍ବର୍ଣ୍ଣୀ ସମାଜର ସ୍ୱାର୍ଥସିଦ୍ଧି । କଳିଙ୍ଗର ପତନ ସଙ୍ଗେ ସଙ୍ଗେ ଉତ୍ତର ଆଡ଼ୁ ମାଗଧୀ ସଭ୍ୟତାର ଅବାରିତ ସ୍ରୋତ ଆସି ମୃତପ୍ରାୟ ଦେଶୀ ସଭ୍ୟତାକୁ ପୂରାପୂରି ଗ୍ରାସ କରିଦେଲା । ନଷ୍ଟାବଶିଷ୍ଟ ମୁଷ୍ଟିମେୟ ପ୍ରଜା ସ୍ୱକୀୟ ସ୍ୱାତନ୍ତ୍ର୍ୟ ରକ୍ଷା କରିବାକୁ ସମର୍ଥ ହୋଇ ପାରିଲେ ନାହିଁ । ପରାଜୟ ଗ୍ଲାନି ଯୋଗୁ ଓଡ଼ ପାଟକ କୁଳ ସ୍ୱକୀୟ ଭାଷା, ଭୂଷା, ସାମାଜିକତା ଅପକୃଷ୍ଟ ମନେକରି ନବାଗତଙ୍କ ଚଳଣି ଗ୍ରହଣି ଆପଣାର କରିନେଲେ । କଳିଙ୍ଗ ସଭ୍ୟତା ଓ ସଂସ୍କୃତିର ଆଶ୍ରୟ ସ୍ତମ୍ଭ ରୂପେ ଯେଉଁମାନେ ଆସି ରହିଥିଲେ ସେମାନଙ୍କ ଅଭାବ ହେତୁ ତାହା ଆଧାରଶୂନ୍ୟ ହୋଇ ପଡ଼ିଲା । ଯେହେତୁ ନର୍ତ୍ତକ, ଗାୟକ, ଲେଖକ, ଚିତ୍ରକର ପ୍ରଭୃତି ସମସ୍ତେ ସ୍ୱକୀୟ କଳାକୃତି ସାଙ୍ଗରେ ଧରି ଯୁଦ୍ଧ ଭୂମିରେ ଚିରନିଦ୍ରା ଲାଭ କରିଥିଲେ । ସବୁ ଭାସିଯାଇଥିଲା ରଣ ଭୂମିର ରକ୍ତନଦୀରେ, ଯାହା ଅବଶେଷ ଥିଲା ତାହା ଉତ୍ତରାଗତ ଆର୍ଯ୍ୟ ଓ ଦକ୍ଷିଣାଗତ ଦ୍ରାବିଡ଼ଙ୍କ କୁକ୍ଷିଗତହୋଇ ଆତ୍ମସତ୍ତା ହରାଇଲା । ଦେଶୀ ସଭ୍ୟତା ଚିରଦିନ ଲାଗି ପୃଥିବୀରୁ ବିଦାୟ ନେଲା । ତା'ସଙ୍ଗେ କଳିଙ୍ଗର ଭାଷା ଲୁହ, ଭୂଷା ଲୁହ, ଆଚାର ଲୁହ, ଉପାସନା ଲୁହ, ପରଂପରା ଖୋଜି ବସିଲେ ଅତୀତର ସେହି କ୍ଷୀଣ ଆଲୋକ ଶିଖାଟି ଆଖିରେ ନପଡ଼ି ରହେନାହିଁ ।

ପରାଜିତ ଦୃଷ୍ଟିରେ ବିଜିତ ଜାତି ଆଦର୍ଶ ବିବେଚିତ ହେବା ଅସ୍ୱାଭାବିକ ନୁହେଁ । ସୁତରାଂ ବଣ ଜଙ୍ଗଲର ଆତ୍ମଗୋପନକାରୀଙ୍କଠାରୁ ବିଚ୍ଛିନ୍ନ ଉପକୂଳବାସୀ ଜନତା ନବାଗତଙ୍କ ସହ ସମସଂସ୍କୃତିସଂପନ୍ନ ହେବାକୁ ଦ୍ୱିଧା ବୋଧ କଲେ ନାହିଁ । ଅପରପକ୍ଷେ ଆଗନ୍ତୁକ ଉଚ୍ଚବର୍ଣ୍ଣୀ ସମାଜ ମଧ୍ୟ ସ୍ଥାନୀୟ ଅଧିବାସୀଙ୍କ ସହ ସାମାଜିକ ସଂପର୍କ ସ୍ଥାପନ କରିବା ସ୍ୱାର୍ଥ ସାଧନର ଅନୁକୂଳ ମନେକଲେ । ଉଭୟର ସାଯୁଜ୍ୟ ମିଶ୍ରଣରେ ଓଡ଼-ସମାଜ ଏକ ଅଭିନବ ସଭ୍ୟତାସଂପନ୍ନ ଜାତିରୂପେ ଉଭାହେଲା ।

ସବୁଦିନ ସମାନ ଯାଏ ନାହିଁ । କଳିଙ୍ଗ ପରାଜିତ ହେଲା, ଯଦିଓ ବିଜୟୀ ଅଶୋକଙ୍କ ଭାଷାରେ ସେ 'ଅବିଜିତ' । ତଥାପି ଯୁଦ୍ଧୋତ୍ତର କଳିଙ୍ଗ ଆଉ କଳିଙ୍ଗ ହୋଇ ନଥିଲା । ତା'ବୋଲି ମଗଧ ସୁଦ୍ଧା ଯେ 'ମଗଧ' ହୋଇ ରହିଥିଲା, ତା' ବି ନୁହେଁ । କଳିଙ୍ଗ ଯୁଦ୍ଧରେ ମଗଧର ଯେଉଁ ଅପୂରଣୀୟ କ୍ଷତି ଘଟିଥିଲା ତାହା ପୂରଣ ହେବା ତେଣିକି ଆଉ ଅସାଧ୍ୟ ବ୍ୟାଧିପରି କ୍ରମେ କ୍ରମେ ବୃଦ୍ଧି ପ୍ରାପ୍ତ ହୋଇ ଚତୁରୁଦଧି ସୀମା ମଧ୍ୟର ଐଶ୍ୱର୍ଯ୍ୟଶାଳୀ ମଗଧ ସାମ୍ରାଜ୍ୟକୁ ତିଳେ ତିଳେ ଧ୍ୱଂସ କରିବାକୁ ଲାଗିଲା । ଅପରିମିତ ଧନ ଜନ କ୍ଷୟ, ସେନାବଳର ସମୂହ ଧ୍ୱଂସ ଏବଂ ରାଜନୀତି ସ୍ଥାନରେ ଧର୍ମନୀତି ପ୍ରବର୍ତ୍ତନ ଦ୍ୱାରା ମଗଧ ବୀର୍ଯ୍ୟହୀନ ହୋଇପଡ଼େ । ଐତିହାସିକମାନେ ଯାହା କହନ୍ତୁ ପଛେ, ମଗଧ ସାମ୍ରାଜ୍ୟର ପତନର ମୂଳହେତୁ ଯେ କଳିଙ୍ଗଯୁଦ୍ଧ ତାହା ଅସ୍ୱୀକାର କରିବାର ଉପାୟ ନାହିଁ । ସେହି

କାରଣରୁ ଅଶୋକଙ୍କ ମୃତ୍ୟୁ ପରେ କୁନାଲ, ଦଶରଥ, ସମ୍ପ୍ରତି ପ୍ରଭୃତି ସାତଜଣ ରାଜା ମଗଧ ଶାସନ କରି ଆସିଥିଲେ ମଧ୍ୟ କେହି ଆଠ ବର୍ଷରୁ ଅଧିକ କାଳ ରାଜତ୍ୱ କରି ପାରି ନ ଥିଲେ । ସେତିକି ନୁହେଁ, ମାତ୍ର ପଚାଶ ବର୍ଷ ଭିତରେ ସୁବିଶାଳ ମଗଧ ସାମ୍ରାଜ୍ୟ ସମ୍ପୂର୍ଣ୍ଣ ଧ୍ୱଂସପାଇଗଲା ।

ଏଣେ ନାନା ସ୍ଥାନରୁ ବୌଦ୍ଧ ଓ ଜୈନ ପ୍ରଚାରକମାନେ କଳିଙ୍ଗରେ ପ୍ରବେଶ କରି ବଣ ଜଙ୍ଗଲରୁ ପଲ୍ଲୀ ବସ୍ତି ପର୍ଯ୍ୟନ୍ତ ସର୍ବତ୍ର ମୂର୍ତ୍ତି, ସ୍ତମ୍ଭ, ସ୍ତୂପ ଗୃହାଦି ନିର୍ମାଣପୂର୍ବକ ସ୍ଥାନୀୟ ଅଧିବାସୀଙ୍କୁ ସ୍ୱ ସ୍ୱ ଧର୍ମରେ ଦୀକ୍ଷିତ କରିବାକୁ ଲାଗି ପଡ଼ନ୍ତି । ଅସହାୟତାର ସୁଯୋଗନେଇ ଅସହାୟ ପାଟକ କୁଳ ମଧ୍ୟରେ କଳେ-ବଳେ-କୌଶଳେ ନିଜ ନିଜ ପ୍ରଭାବ ବିସ୍ତାର କରନ୍ତି । ଜାତି-ବର୍ଣ୍ଣ-ଭେଦ ଶୂନ୍ୟ ସମ୍ପ୍ରଦାୟକୁ ଚାତୁର୍ବର୍ଣ୍ଣ୍ୟ ଗୋଷ୍ଠୀରେ ପରିଣତ କରିନଥିନ୍ତି । ଫଳରେ କଳିଙ୍ଗ ବ୍ରାହ୍ମଣ, କଳିଙ୍ଗ କ୍ଷତ୍ରିୟ, କଳିଙ୍ଗ ବୈଶ୍ୟ ଓ କଳିଙ୍ଗ ଶୂଦ୍ର ନାମରେ ଜାତିମାନ ଗଢ଼ିଉଠେ । କର୍ମର ତାରତମ୍ୟ ଭିତରେ ଶାସନି, ସାନ୍ତ, (ସାଧୁ ବା ସାଧକ) ହଳୁଆ (ହଳଧର), ଦାନୁଆ (ଦାନଗ୍ରାହୀ), ପାଢ଼ିଆ (ପଢ଼ିବା ଗୋଷ୍ଠୀ), ଦେଉଳିଆ (ଦେଉଳ ପୂଜାରୀ), ସାରୁଆ (ବ୍ୟବସାୟୀ), ଭଦ୍ରି (ଭଦ୍ରକର୍ମୀ), ପ୍ରଭୃତି ବିଭିନ୍ନ ବ୍ରାହ୍ମଣ-ଗୋଷ୍ଠୀ ସୃଷ୍ଟିହୁଏ । ଖଣ୍ଡାଏତ, ବାଣାଏତ, ସାଆନ୍ତ, ଦଳୁଆ, ପାଇକ ପ୍ରଭୃତି କ୍ଷତ୍ରିୟ ଏବଂ ସୁନାରି, ପାଟରା, କୁମୁଟି, କଂସାରି, ଚନ୍ଦରାଦି ବ୍ୟବସାୟୀ ଗୋଷ୍ଠୀ ବୈଶ୍ୟନାମରେ ପରିଚିତ ହୁଅନ୍ତି । ସେହିପରି ଇତର ବୃତ୍ତିଧାରୀ ଭଣ୍ଡାରି, ଗଉଡ଼, ଚଷା, ପାନ୍ଦରା, ମାଟିଆ ପ୍ରଭୃତି କୁଳ ଶୂଦ୍ର ଶ୍ରେଣୀରେ ଅନ୍ତର୍ଭୁକ୍ତ ହୁଅନ୍ତି । ଏବେ ସୁଦ୍ଧା ଦକ୍ଷିଣ ଓଡ଼ିଶା କାଳିଙ୍ଗୀ ଓ କୁମୁଟି ସମ୍ପ୍ରଦାୟ 'କଳିଙ୍ଗ କ୍ଷତ୍ରିୟ' ଓ 'କଳିଙ୍ଗ ବୈଶ୍ୟ'ଭାବେ ପରିଚୟ ଦେଇ ଗୌରବ ଅନୁଭବ କରନ୍ତି । ଏହା ସତ୍ତ୍ୱେ ପରଂପରାକ୍ରମେ ଚଳିଆସିଥିବା ପାଟକ କୁଳର ସାମାଜିକ ବନ୍ଧନ ବହୁକାଳ ଯାଏଁ ଅତୁଟ ରହିଥିଲା । ପରସ୍ପର ଜାତି ମଧ୍ୟରେ ଅନ୍ତର୍ବିବାହ ନିଷିଦ୍ଧ ନଥିଲା । ଅସବର୍ଣ୍ଣ ଦମ୍ପତି ସମାଜରେ ସ୍ୱତନ୍ତ୍ର ସ୍ୱୀକୃତି ଲାଭ କରୁଥିଲେ । ଉତ୍ତର କାଳର ବିଭିନ୍ନ ଜାତି ମଧ୍ୟରେ ବିଭିନ୍ନ ଶାଖା ସୃଷ୍ଟି ହେବା ମୂଳରେ ବୋଧହୁଏ ତାହାହିଁ କାରଣ ରୂପେ ରହି ଆସିଥିଲା । ଏଣୁ କହିହେବ, ଯୁଦ୍ଧୋତ୍ତର କଳିଙ୍ଗର ସାମାଜିକ ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଘଟି ଏକତା, ସଦ୍ଭାବ, ସୌହାର୍ଦ୍ଦ୍ୟ ଶିଥିଳ ହେବା ସଙ୍ଗେ ସଙ୍ଗେ ଏକ ନୂତନ ସାମାଜିକ ଚଳଣିର ଉଦ୍ଭବ ଘଟିଥିଲା । ତେଣେ ଦକ୍ଷିଣପଟୁ ଦ୍ରାବିଡ଼ୀୟ ଜନତା ପାର୍ବତ୍ୟ ଗୋଷ୍ଠୀ ମଧ୍ୟରେ ପ୍ରଭାବ ବିସ୍ତାର କରି ସ୍ଥାନୀୟ ପରମ୍ପରା ଓ ମୌଳିକ ରୀତି ମଧ୍ୟରେ ସ୍ୱକୀୟ ଭାବନାକୁ ଜଡ଼ିତ କରିନଥିନ୍ତି । ଅନ୍ୟ ଦିଗରେ ବୌଦ୍ଧ ସନ୍ୟାସୀଗଣ ନାନା ଉପାୟରେ ଉପକୂଳ ବାସୀଙ୍କୁ ବୌଦ୍ଧ ଧର୍ମ ପ୍ରତି ଆକୃଷ୍ଟ କରିବାକୁ ଯଥାସମ୍ଭବ ଯତ୍ନଶୀଳ ହୁଅନ୍ତି । ମାତ୍ର ବିଶ୍ୱାସସର୍ବସ୍ୱ କଳିଙ୍ଗବାସୀଙ୍କ ମନକୁ ତାହା ଆଶାନୁରୂପ ସ୍ପର୍ଶ କରିନଥିଲା । ବରଂ ଆଦିମଯୁଗରୁ ପ୍ରଚଳିତ ଜୈନ ଭାବନା ପ୍ରତି ସେମାନେ ବିଶେଷ ଅନୁରକ୍ତ ଥିଲେ । ଜନନାୟକମାନେ ସେହି ଧର୍ମରେ ଦୀକ୍ଷିତ ହେବାକୁ ପସନ୍ଦ

ମଣିଥିଲେ । ସଂଜୀବନୀ ମନ୍ତ୍ରରେ ଜୀବଦାନ ଦେଇପର କଳିଙ୍ଗର ପୂର୍ବଗୌରବକୁ ପୁନଃ ପ୍ରତିଷ୍ଠିତ କରିଥିବା ମହାମେଘବାହନ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖରୁ ତାହା ଅବଗତ ହୁଏ । ଖାରବେଳ ଥିଲେ ଅଦିବାସୀ ଐର (ଅହିର) ଶାଖା ଚେଦିକୁଳ ସମ୍ଭୂତ ଜୈନ ରାଜା । ଚେଦିବଂଶର ତୃତୀୟ ଉତ୍ତରାଧିକାରୀ ରୂପେ ସେ ସିଂହାସନ ଆରୋହଣ କରି ଥିଲେ । ତାଙ୍କବେଳକୁ କଳିଙ୍ଗ ମଗଧ ଶାସନରୁ ମୁକ୍ତହୋଇ ସ୍ୱାଧୀନ ରାଜ୍ୟରୂପେ ରହି ଆସିଥିଲା । ସୁତରାଂ, ମନେହୁଏ ଖାରବେଳଙ୍କ ଅନ୍ୟୂନ ତିନି ପୁରୁଷ ଆଗରୁ କଳିଙ୍ଗ ଆପଣାର ସ୍ୱାଧୀନତା ଘୋଷଣା କରିସାରିଥିଲା ଏବଂ ତାହାର ଶାସକବର୍ଗ ଜୈନ ଧର୍ମାବଲମ୍ବୀ ଥିଲେ ।

ହାତୀଗୁମ୍ଫା ଶିଳାଲେଖରେ ଉକ୍ତ ଅଛି—ଅଭିଷେକ ହେଲାମାତ୍ରେ ଖାରବେଳ ପ୍ରଥମେ କଳିଙ୍ଗର ନଷ୍ଟଭ୍ରଷ୍ଟ ଗୋପୁର, ପ୍ରାସାଦ, ଦୁର୍ଗ, ଜଳାଶୟାଦି ସଂସ୍କାର କରାଇବା ସହିତ ଉଦ୍ୟାନ ଉପବନାଦିର ପୁନଃ ନିର୍ମାଣ କରାଇଥିଲେ । ସେଥିପାଇଁ କୁଆଡ଼େ ପଞ୍ଚତିରିଶି ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା । ଏଥିରୁ ଅନୁମାନ ହୁଏ ତାଙ୍କ ପୂର୍ବପୁରୁଷ ରାଜାମାନେ ସେ ସବୁ କାର୍ଯ୍ୟରେ ମନୋନିବେଶ କରିନଥିଲେ । ନକରିଥିବା ହିଁ ସମ୍ଭାବନା । କାରଣ ତାଙ୍କ ସମୟର ମୁଖ୍ୟ ସମସ୍ୟା ଥିଲା ବିଖଣ୍ଡିତ କଳିଙ୍ଗର ଏକତ୍ରୀକରଣ, ଭଗ୍ନ ହୃଦୟ ପ୍ରଜାକୁଳର ମନୋବଳ ସଂପାଦନ, ନଷ୍ଟ ବିନଷ୍ଟ ଚତୁରଙ୍ଗ ବଳର ପୁନଃ ସଂଗଠନ । ଏଗୁଡ଼ିକୁ ସେମାନେ ଅଗ୍ରାଧିକାର ଦେଇଥିବେ, ଯେହେତୁ ସେଗୁଡ଼ିକ ହେଉଛି ରାଜ୍ୟର ମେରୁଦଣ୍ଡ । ତା'ଉପରେ ଦେଶର ଜିଇଁପଇଁ ନିର୍ଭର କରେ । ଏକେ ଅଖଣ୍ଡତା ବିନା ରାଜ୍ୟର ସ୍ଥିତି ସୁଦୃଢ଼ ନୁହେଁ, ଦ୍ୱିତୀୟରେ ନୈରାଶ୍ୟ ଦୂର କରି ପ୍ରଜା ମନରେ ନିର୍ଭୀକତା ସୃଷ୍ଟି ନକଲେ ଦେଶର କର୍ମକ୍ଷମତା ହ୍ରାସ ପାଏ । ତୃତୀୟତଃ ଦୃଢ଼ ସେନାବାହିନୀ ବିନା ରାଜଶକ୍ତି ଦୁର୍ବଳ ହୋଇପଡ଼େ । ଦେଶର ସର୍ବାଙ୍ଗୀନ ବିକାଶରେ ଏ ସବୁର ଭୂମିକା ଅପରିହାର୍ଯ୍ୟ । ସେହି ବିଚାରରେ ଦୂରଦର୍ଶୀ ରାଜାମାନେ ଉକ୍ତ ସମସ୍ୟା ଗୁଡ଼ିକର ସମାଧାନରେ ମନପ୍ରାଣ ଢାଳିଦେଇଥିଲେ । ଖାରବେଳଙ୍କ ବେଳକୁ ତାହା ଯଥାରୀତି ସଂପନ୍ନ ହୋଇ ରାଜ୍ୟର ସଂହତି ଓ ସଂଗଠନ ସୁଦୃଢ଼ ଥିଲା । ତେଣୁ ଅବଶିଷ୍ଟ କଲ୍ୟାଣକର କାର୍ଯ୍ୟାବଳୀ ପ୍ରତି ସେ ମନୋନିବେଶ କରିଥିଲେ । ରାଜତ୍ୱର ପ୍ରଥମ ବର୍ଷ ସଂସ୍କାର କାର୍ଯ୍ୟ ସମାପନ କରି ଦ୍ୱିତୀୟ ବର୍ଷରେ ଗୌରବସୂଚକ ଦିଗ୍‌ବିଜୟ ଯାତ୍ରା ଆରମ୍ଭ କଲେ । ଖ୍ରୀ:ପୂ ସପ୍ତମ ଶତାବ୍ଦୀରେ ଦକ୍ଷିଣ କଳିଙ୍ଗକୁ ବଳପୂର୍ବକ ଅଧିକାର କରି ନେଇଥିବା 'ଅଶ୍ମକ' ରାଜ୍ୟ ଉପରେ ପ୍ରଚଣ୍ଡ ଆକ୍ରମଣ ଚଳାଇ ଆନ୍ଧ୍ର ସାତକର୍ଣ୍ଣିଙ୍କୁ ସର୍ବ ପ୍ରଥମେ ପରାସ୍ତ କଲେ ଓ ତାଙ୍କ ରାଜ୍ୟ ସହିତ 'ଅଶ୍ମକ'କୁ କଳିଙ୍ଗ ସାମ୍ରାଜ୍ୟଭୁକ୍ତ କଲେ । ସେତେବେଳକୁ 'ଅଶ୍ମକ 'ସାତକର୍ଣ୍ଣୀ'ଙ୍କ ଅଧୀନସ୍ଥ ଥିଲା । କିଛିକାଳ ପରେ ଚତୁରଙ୍ଗ ସେନାକୁ ମଥୁରାବାଟେ ନେଇ 'ଗୋରଥଗିରି' ରାଜାଙ୍କୁ ପରାଜିତ କରି ମଗଧର ତତ୍କାଳ ରାଜଧାନୀ 'ରାଜଗୃହ' ଅବରୋଧ କଲେ । ସେଠାରୁ ବଳାତ୍କାରରେ ଜୈନ ଧର୍ମର ପରମାରାଧ୍ୟ ପଲ୍ଲବିତ 'କଳ୍ପବୃକ୍ଷ' ସାଙ୍ଗରେ

ଧନ ସ୍ୱରାଜ୍ୟକୁ ପ୍ରତ୍ୟାବର୍ତ୍ତନ କଲେ । କିଛିଦିନ ବିଶ୍ରାମ ନେଲା ଉତ୍ତାରୁ ବିଭିନ୍ନ ଜନହିତକର କାର୍ଯ୍ୟମାନ ସାରି ଅଭିଷେକର ଦ୍ୱାଦଶବର୍ଷ ଚରଣରେ ମଗଧରାଜ୍ୟ ଉପରେ ଭୀଷଣ ଆକ୍ରମଣ ଚଳାଇଲେ ଏବଂ ତତ୍କାଳ ମଗଧରାଜା ବୃହସ୍ପତି ମିତ୍ରଙ୍କୁ ପଦାନତ କରାଇ ବିଜୟର ସ୍ମାରକୀ ସ୍ୱରୂପ ମହାପଦ୍ମନନ୍ଦଙ୍କ ଦ୍ୱାରା ଅପହୃତ କଳିଙ୍ଗଜିନାସନକୁ କଳିଙ୍ଗକୁ ଫେରାଇ ଆଣିଲେ । ସ୍ମରଣ ଥାଇପାରେ ଖ୍ରୀ:ପୂ. ଚତୁର୍ଥ ଶତାବ୍ଦୀରେ ନନ୍ଦରାଜା ଉତ୍ତର କଳିଙ୍ଗକୁ ମଗଧ ଶାସନାଧୀନ କରିଥିଲେ ।

ଖାରବେଳଙ୍କ ଦିଗ୍‌ବିଜୟରୁ ଜଣାପଡ଼େ, ପୂର୍ବ ପରାଜୟର ପ୍ରତିଶୋଧ ନେବାକୁ କେବଳ ସେ ଉଦ୍ୟମ ଚଳାଇଥିଲେ ତା’ ନୁହେଁ, ଭାରତର ବିଭିନ୍ନ ପ୍ରାନ୍ତୀୟ ରାଜ୍ୟ ଜୟ କରି କଳିଙ୍ଗର ହୃତ ଗୌରବକୁ ପୁନଃ ପ୍ରତିଷ୍ଠିତ କରାଇବା ତାଙ୍କର ଲକ୍ଷ୍ୟ ଥିଲା । ସେଥିଦ୍ୱାରା ପରାଜୟ ଗ୍ଲାନି ମନରୁ ଦୂର କରି କଳିଙ୍ଗ ଏକ ଦୁଃସାହସିକ ସାରଜାତି ରୂପେ ପୁନର୍ବାର ମୁଣ୍ଡ ଟେକି ଉଠିଲା ସତ, କିନ୍ତୁ ସୁଦୀର୍ଘଯୁଗ କାଳରୁ ନିରବଚ୍ଛିନ୍ନ ବିକାଶ ଲାଭ କରି ଆସିଥିବା ଏକ ବିରାଟ ସଂସ୍କୃତି ଯାହା ଅଶୋକଙ୍କ ନରମେଧ ଯଜ୍ଞର ଲେଲିହାନ ଶିଖା ମଧ୍ୟରେ ଜଳିପୋଡ଼ି ଛାରଖାର ହୋଇଥିଲା ତାହା ଆଉ ଫେରିଲା ନାହିଁ । ବ୍ରାହ୍ମଣ୍ୟ ଏବଂ ଦ୍ରାବିଡ଼ ସଂସ୍କୃତିର ମଧ୍ୟବର୍ତ୍ତୀ ଯେଉଁ କଳିଙ୍ଗ ସଂସ୍କୃତି ସମାନ୍ତରାଳ ଭାବେ ସ୍ୱାତନ୍ତ୍ର୍ୟ ବିସ୍ତାର କରି ରହିଥିଲା ତାହା ଚିରକାଳ ପାଇଁ ବିସ୍ମୃତିର ଗର୍ଭରେ ଲୀନ ହୋଇପଡ଼ିଲା । ଦୁଇହଜାର ବର୍ଷର ସଂସ୍କୃତି ଦୁଇ ବର୍ଷ ଭିତରେ ମୂଳପୋଛ ହୋଇଗଲା । କାଳଚକ୍ରର ଆବର୍ତ୍ତନରେ ଅବଶ୍ୟ ଖାରବେଳଙ୍କ କଳିଙ୍ଗର ଭିତ୍ତିଭୂମି ଉପରେ ପରବର୍ତ୍ତୀ ଓଡ଼ିଆ ସଂସ୍କୃତି ରୂପ ବିରାଟ ସୌଧ ସମ୍ଭବ ହେଲା ସତ, କିନ୍ତୁ ଅପର ସଂସ୍କୃତିର ସମନ୍ୱୟରେ ତାହାର ସମ୍ପୂର୍ଣ୍ଣ ଘଟାନ୍ତର ଘଟିଲା ଏହା କେହି ଅସ୍ୱୀକାର କରିବେ ନାହିଁ । ତଥାପି ଆଶ୍ୱାସନାର କଥା, ପ୍ରାଗୈତିହାସିକ ଯୁଗରୁ ପୂଜା ପାଇ ଆସୁଥିବା କଳିଙ୍ଗର ଗଣଦେବତା ଜଗନ୍ନାଥଙ୍କ ଉପାସନା ମଧ୍ୟରେ ତାହାର ସଙ୍କେତ ଅଦ୍ୟାପି ଜୀବନ୍ତ ରହିଛି, ସେ ଥିଲା ଯାଏଁ ଯାହାର ବିଲୁପ୍ତି ଘଟିବାର ଆଶଙ୍କା ନାହିଁ । କାରଣ ଜଗନ୍ନାଥ ହେଉଛନ୍ତି ପ୍ରାକ୍ତନ କଳିଙ୍ଗ ସଂସ୍କୃତିର ମୂର୍ତ୍ତିମନ୍ତ ପ୍ରତୀକ ।

---

# ସୂଚକ ରଚନାବଳୀ

## ସଂସ୍କୃତ

ଅମରକୋଷ, ଅଷ୍ଟାଧ୍ୟାୟୀ ସୂତ୍ର, ଉତ୍ତରାଧ୍ୟୟନ ସୂତ୍ର, ଋଗ୍‌ବେଦ, ଐତରେୟ ବ୍ରାହ୍ମଣ, କପିଳ ସଂହିତା, କଥାସରିତ୍ସାଗର, କୂର୍ମପୁରାଣ, ଜାତକ କଥା, ତ୍ରିକାଣ୍ଡ କୋଷ, ପଦ୍ମପୁରାଣ, ବାୟୁ ପୁରାଣ, ବୃହତ୍ ସଂହିତା, ବୌଧାୟନ ଧର୍ମସୂତ୍ର, ବିଷ୍ଣୁ ପୁରାଣ, ବ୍ରହ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ବ୍ରହ୍ମାଣ୍ଡ ପୁରାଣ, ମହାଭାରତ, ମୁଦ୍ରାରାକ୍ଷସ ନାଟକ, ମତ୍ସ୍ୟପୁରାଣ, ମାର୍କଣ୍ଡେୟ ପୁରାଣ, ମନୁସ୍ମୃତି, ରଘୁବଂଶ, ଶକ୍ତିସଙ୍ଗମ ତନ୍ତ୍ର. ଶତପଥ ବ୍ରାହ୍ମଣ, ସ୍କନ୍ଦ ପୁରାଣ, ହରିବଂଶ ।

## ଇଂରେଜି

1. A Critical Study of the Geographical data in Early Puranas by Mr. M. R. Singh.
2. Aine-i-Akbari by Abul Fazal.
3. Ancient India as described by Ptolemy by M. C. Cridel (Ed. S. N. Majumdar)
4. Ancient History of India by L. P. Sarma.
5. An Early History of Orissa by A. C. Mittal.
6. Ancient Indian Historical Tradition—Parqitor.
7. Asoka by R. D. Bhandarkar.
8. Buddhism in Orissa by N. K. Sahu.
9. Castes and Tribes of Southern India. by E. Thurston.
10. Cultural Heritage of India—( R. K. Centenary Committee. )
11. Cultural Relations between India and South-East Asian Countries, 1915 by Dr. H. B. Sarkar.
12. English Sara Dictionary by G. V. Ramamurty.
13. Epigraphia India—Vol. XX VII.

14. History and Culture of Indian People.
by R. C. Majumdar Vol. II
15. History of Orissa by Dr. N. K. Sahu.
16. Hill Tribes of Jeypore by L. N. Sahu.
17. Indian Antiquity—Vol. IV—XLII, XLI
18. Indus Civilisation by M. Whuler.
19. Outlines of the History of Kalinga—
by R. C. Majumdar.
20. Practical Hand Book of Kandha Language
by Major J. H. Smith.
21. Political History of Ancient India—
by Dr H. C. Raychaudhury
22. Pre-Aryan and Pre-Dravidian by Levi.
23. Tribalism in India—by K. D. Chattopadhyay.
24. Tribes in Ancient India—by B. C. Ray

## ଓଡ଼ିଆ

୧। ଅଳଙ୍କାର ବୋଲ୍
୨। ହତ୍ରା ପ୍ରାକୃତ
୩। ଓଡ଼ିଶାର ଇତିହାସ—ଡଃ. ହରେକୃଷ୍ଣ ମହତାବ
୪। ଓଡ଼ିଶାର ଇତିହାସ—ଡଃ. ସତ୍ୟନାରାୟଣ ରାଜଗୁରୁ
୫। ଓଡ଼ିଆ ଭାଷାର ଇତିହାସ—ପଣ୍ଡିତ ବିନାୟକ ମିଶ୍ର
୬। ଓଡ଼ିଶାର ସାଂସ୍କୃତିକ ଇତିହାସ—ଓଡ଼ିଶା କଲଚରାଲ ଫୋରମ୍
୭। ଓଡ଼ିଶାର ସାମରିକ ସଂସ୍କୃତି— ,,
୮। ଓଡ଼ିଶାର ସଂସ୍କୃତି ଓ ଇତିହାସରେ ଯାଜପୁର—ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
(ବିରଜା ବକ୍ତୃତା ମାଳା-୧)
୯। ଦାରୁଦେବତା—ଡକ୍ଟର ବେଣୀମାଧବ ପାଢ଼ୀ
୧୦। ଧଉଳିର ଇତିହାସ—ଶ୍ରୀ କେଦାର ନାଥ ମହାପାତ୍ର
୧୧। ପ୍ରସ୍ତାବ ଚିନ୍ତାମଣି—ଶିଳାମ୍ବର ବିଦ୍ୟାଧର (ସଂ·ଡ. ସତ୍ୟନାରାୟଣ ରାଜଗୁରୁ)
୧୨। ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ
୧୩। ପାଲି ଧର୍ମପଦ—ଡକ୍ଟର ପ୍ରହ୍ଲାଦ ପ୍ରଧାନ

୧୪ । ଭାରତୀୟ ଜ୍ୟୋତିଷର ଇତିହାସ—ବାଇକୋଳି ମହାପାତ୍ର
୧୫ । ଶ୍ରୀ ଖାରବେଳ—କେଦାର ନାଥ ମହାପାତ୍ର
୧୬ । କଳିଙ୍ଗଦେଶ ଚରିତ୍ରମୁ ( ତେଲଙ୍ଗା )

## ପତ୍ରପତ୍ରିକା

୧ । ଅନାମ—୧୯୮୩, ମେ ସଂଖ୍ୟା
୨ । ଉତ୍କଳ ପ୍ରସଙ୍ଗ—୧୯୮୯ ମେ, ଅକ୍ଟୋବର-ନଭେମ୍ବର,
୧୯୬୮—ମେ ସଂଖ୍ୟା
୩. Orissa Review—1989, March, May, February
୪ । କୋଣାର୍କ—୧୯୮୪, ୫୧ ସଂଖ୍ୟା ( ଓଡ଼ିଶା ସାହିତ୍ୟ ଏକାଡେମୀ )
୫ । ପାଞ୍ଚଜନ୍ୟ—୧୯୮୫, ଜାନୁୟାରୀ ସଂଖ୍ୟା
୬. Indian Express—17-2-1990 (Land of Diversities)
୭ । ଭବତରଙ୍ଗିଣୀ—୧୯୮୭ ( ସେପ୍ଟେମ୍ବର )

